# ପୁଣ୍ୟପୀଠ ପାରଳା

## ପ୍ରଥମ ଭାଗ



ଲେଖକ - ଦିବାକର ପଟନାୟକ

ପ୍ରକାଶକ - ଭକ୍ତି ସଂଗୀତ ସଂସଦ,
ପାରଳାଖେମୁଣ୍ଡି·

# ପୁଣ୍ୟପୀଠ ପାରଳା



ଲେଖକ- ଦିବାକର ପଟନାୟକ, ଏମ୍.ଏ.
ରାଜଦାଣ୍ଡ,
ପାରଳାଖେମୁଣ୍ଡି ।

ମୂଲ୍ୟ - ୩୦ ଟଙ୍କା



ଲମ୍ବୋଦରଂ ପରମସୁନ୍ଦରମେକଦନ୍ତଂ, ରକ୍ତାମ୍ବରଂ ତ୍ରିନୟନଂ ପରମଂ ପବିତ୍ରମ୍
ଉଦ୍ୟଦିବାକର-କରୋଜ୍ଜ୍ୱଳକାୟକାନ୍ତଂ, ବିଘ୍ନେଶ୍ୱରଂ ସକଳ ବିଘ୍ନହରଂ ନମାମି
॥

# ଉତ୍ସର୍ଗ ପତ୍ର

ଶ୍ରୀଳ ପ୍ରଭୁ ଶ୍ୟାମାନନ୍ଦଙ୍କ ମତ ସଂସ୍ଥାପକ, ଶ୍ରୀଗୌରାଙ୍ଗଙ୍କ ପ୍ରବର୍ତ୍ତିତ ପ୍ରେମଧର୍ମ ଓ ନାମ ସଙ୍କୀର୍ତ୍ତନର ପ୍ରଚାରକ, ଶ୍ରୀରୂପାଦି ଗୋସ୍ୱାମୀମାନଙ୍କ ଗ୍ରନ୍ଥ ସାଧକ, ଶ୍ରୀରାଧାଙ୍କ ସ୍ୱହସ୍ତାଙ୍କିତ ବିନ୍ଦୁ ତିଳକ ଧାରକ, ଗଞ୍ଜାମ ଜିଲ୍ଲାନ୍ତର୍ଗତ ପଟ୍ଟୁଗ୍ରାମ ନିବାସୀ ପରମପୂଜ୍ୟ ଗୁରୁଦେବ ସ୍ୱର୍ଗତ ଭିକାରୀ ଚରଣ ଦାସ ଗୋସ୍ୱାମୀଙ୍କ ପଦାରବିନ୍ଦେ ଶତ ସହସ୍ର ପ୍ରଣାମ ଜଣାଇ *"ପୂଣ୍ୟପାଠ ପାରଳା"* ଶୀର୍ଷକ ପୁସ୍ତକ ଖଣ୍ଡିକ ଅତ୍ୟନ୍ତ ନମ୍ର ଓ ଭକ୍ତି ସହକାରେ ଅର୍ପଣ କରୁଛି ।

ଗୁରବେ ସର୍ବଲୋକାନାଂ ସର୍ବ ବିଘ୍ନ ବିନାଶନେ
ନିଧୟେ ସର୍ବ ବିଦ୍ୟାନାଂ ସର୍ବାତ୍ମକ ନମୋସ୍ତୁତେ ॥

ଆପଣଙ୍କ କୃପାଭିକ୍ଷୁ,
ଦିବାକର ପଟ୍ଟନାୟକ




Gopi Nath Gajapathi
PRESIDENT G.D.C.C
FORMER M.P



GAJAPATHI PALACE
P. O. PARALAKHEMUNDI
DISTRICT GAJAPATI
ORISSA STATE [illegible]
PHONE [illegible]

[illegible] APARTMENTS 5th FLOOR
NO 1 STERLING ROAD
NUNGAMBAKKAM
CHENNAI - [illegible]
MOBILE [illegible]

9th March, 2004

# FOREWORD

It is heartening to note that the Bhakti Sangeeta Sansad is bringing out a publication entitled, "Punyo Tirtho Parala" shortly, on the writings of Sri Dibakar Patnaik.

The book being published is an anthology of the lives and achievements pertaining to musicians, dramatists, cultural and literary personalities of Paralakhemundi. The narrations and anecdotes are topped by a vivid life-sketch on Maharaja Krushna Chandra Gajapathi of Paralakhemundi, popularly regarded as the creator of modern Orissa.

Sri Dibakar Patnaik has endeared himself to one and all with his pleasing and affable manners. His unflinching dedication to his profession will, I daresay, earn him more acclamations in the future.

I wish Dibakar Babu every success in his pains-taking endeavours.

Gajapathi

(GOPI NATH GAJAPATHI)

NATYACHARYA & MANCHASRI
*Satyanarayan Panda*
CINE-PLAYWRITE, POET
& DRAMATIST

JANGAM STREET
PARLAKHEMUNDI
GANJAM, Dt.
Date 30.10.1987.

I have the pleasure to Certify that I very well know Sri Dibakar Patnaik, residing at Palace Street, Parlakhemundi for the last fifteen years. He belongs to a respectable family. He is M.A. (Economics). He is very intelligent, calm-going, social, sincere and honest. He possesses winning manners, very active and dutiful. He is also a good writer in Oriya language. His literary activities are very appreciable. He is young & energetic and always thinks over development of the country and people. He is dedicated and capable to discharge the duties entrusted to his custody.

I wish him all success.

Jangam Street,
Parlakhemundi
Dt Ganjam.
761200.

Satyanarayan Panda
30.10.87.



ଶ୍ରୀପରମାତ୍ମନେ ନମଃ

## କିଞ୍ଚିତ କଥନ

"ପୂଣ୍ୟପୀଠ ପାରଳା" ପୁସ୍ତକଟି ଏହି ମାଟିର ମଣିଷ ଶ୍ରୀ ଦିବାକର ପଟନାୟକଙ୍କର ସାଧନା ପ୍ରସୂତ ଏକ ଗବେଷଣାତ୍ମକ ପ୍ରବନ୍ଧ ଗୁଛ । ଏହା ମୁଖ୍ୟତଃ ଏହି ସାଂସ୍କୃତିକ ପୀଠର ବରପୁତ୍ରମାନଙ୍କ ଜୀବନକୁ ଆଧାର କରି ଲିଖିତ । ବିଷ୍ଣୁପ୍ରସାଦ ମହାନ୍ତିଙ୍କ "ପାରଳାପ୍ରତିଭା" ପୁସ୍ତକ ପ୍ରକାଶିତ ହେବାର ଦୀର୍ଘଦିନ ପରେ, ନୂତନ ତଥ୍ୟ ସହ, ସେହିପରି ଏକ ପୁସ୍ତକ ଲୋକଲୋଚନକୁ ଆସିଛି । ଏହା ନିଶ୍ଚିତ ଭାବେ, ପାଠକ ଓ ଗବେଷକ ମାନଙ୍କୁ ଅନେକ ଖୋରାକ୍ ଯୋଗାଇବ, ଏଥିରେ ସନ୍ଦେହ ନାହିଁ ଲେଖକ ଦିବାକର ବାବୁ, ଆମ ସମୟର ଜଣେ ଶ୍ରେଷ୍ଠ ପ୍ରାବନ୍ଧିକ ଓ ସମାଲୋଚକ । ତାଙ୍କର ଲେଖା ସମୂହକୁ ପ୍ରକାଶ କରିବା ଦାୟିତ୍ୱ ନେଇଥିବାରୁ, ଆମେ ଆନନ୍ଦିତ । ଭବିଷ୍ୟତରେ ଏହିଭଳି କେତୋଟି ପୁସ୍ତକ ଛାପିବାର ଅଭିଳାଷ ରହିଛି । ନିଳାଦ୍ରୀବିହାରୀଙ୍କ କୃପା ହେଲେ, ସେସବୁ ସମ୍ଭବ ହେବ । ପୁସ୍ତକ ସମ୍ପର୍କରେ ମତାମତ ଜଣାଇବା ପାଇଁ ପାଠକ ମାନଙ୍କୁ ଆହ୍ୱାନ କରୁଛୁ ।

ଇଂ ଭାଗିରଥି ଦାଶ (ସଭାପତି)
ପୂର୍ଣ୍ଣଚନ୍ଦ୍ର ରଥ (ସମ୍ପାଦକ)
ଭକ୍ତିସଙ୍ଗୀତ ସଂସଦ, ପାରଳାଖେମୁଣ୍ଡି ।
ସଭ୍ୟ, ଓଡ଼ିଶା ସଙ୍ଗୀତ ନାଟକ ଏକାଡେ଼ମୀ,
ଭୁବନେଶ୍ୱର ।

# ଅଗ୍ରଲେଖ

ଶ୍ରୀଯୁକ୍ତ ଦିବାକର ପଟ୍ଟନାୟକଙ୍କ ଦ୍ୱାରା ଲିଖିତ ପାଣ୍ଡୁଲିପିଟିକୁ ଯତ୍ନର ସହିତ ପାଠ କଲି । ଲେଖକଙ୍କ ଅନୁରୋଧ ରକ୍ଷାକରି "ଅଗ୍ରଲେଖ" ଟି ପ୍ରସ୍ତୁତ କରିବାକୁ ହେଲା । ଅଗ୍ରଲେଖ ମହତଜନଙ୍କ ପାଣ୍ଡୁଲିପିର ଏକ ଆଲୋଚନାହିଁ ହୋଇଥାଏ । କିନ୍ତୁ, ପାଣ୍ଡୁଲିପିର ଅଗ୍ରଲେଖ ପ୍ରସ୍ତୁତ କଲାବେଳେ ମୁଁ ଦୟନୀୟ ମନେ କରୁଛି । କାରଣ ହେଲା, କୌଣସି ଧୂରୀଣ ସମାଜ ସ୍ୱୀକୃତ ଆଲୋଚକ ଭଲମନ୍ଦ ମିଶାଇ ଯାହା ଲେଖନ୍ତି, ତହିଁରେ ଲେଖକଟି ସମ୍ପର୍କରେ ବା ତାଙ୍କ କୃତି ସମ୍ପର୍କରେ କିଛି ଲେଖାନଥାଉ ପଛେ, ନିଜକୁ ହିଁ ଉପସ୍ଥାପିତ କରନ୍ତି । ଏ କ୍ଷେତ୍ରରେ କିନ୍ତୁ ତା ହେବନାହିଁ । ମୁଁ ଜୀବନୀ ଗୁଡ଼ିକ ଲେଖକଙ୍କ ସମ୍ପର୍କରେ ଯାହା କହିବି, ସବୁତକ ସତ କହିବି । ଯାହା ଅନୁଭବ କରିଛି, ତାହାହିଁ କହିବା ବେଳେ ଅଯଥା ପ୍ରଶଂସା ବା ନିନ୍ଦା ନଥିବ । "ଅଗ୍ରଲେଖ"ଟି ପଢ଼ିବା ପରେ - ପୁସ୍ତକଟିକୁ ପାଠକରି ପାଠକ ଦେଖିବ, ଏହିଟି ମୋତେ ଯେମିତି ଲାଗିଛି, ତାଙ୍କୁ ମଧ୍ୟ ସେମିତି ଲାଗିବ ।

ପାଣ୍ଡୁଲିପିଟିର ଜୀବନୀ ଗୁଡ଼ିକ ସମସ୍ତେ ତିନିଶହ ବର୍ଷ ମଧ୍ୟର ଚରିତ୍ର । ସମସ୍ତେ ଏଇ ପାରଳାଖେମୁଣ୍ଡିର ସତ, କିନ୍ତୁ ସମଗ୍ର ଓଡ଼ିଆ ଭାଷାଭାଷୀଙ୍କର ସ୍ମୃତିର ଧନ । ଏମାନେ ଏକ ସମୟରେ ସମଗ୍ର ଓଡ଼ିଶାର ନେତୃମଣ୍ଡଳୀର କେବଳ ପ୍ରିୟ ନଥିଲେ, ପୂଜ୍ୟ ମଧ୍ୟ ଥିଲେ । ଅଥଚ କାଳକ୍ରମେ ଏମାନେ ବିସ୍ମୃତ ହୋଇଯାଉଥିବା ଦୁର୍ଭାଗ୍ୟଜନକ । ଏହାର କାରଣ, ଏମାନେ ଆଜି ଚର୍ଚ୍ଚାର ବିଷୟ ହୋଇ ରହିନାହାନ୍ତି । ଓଡ଼ିଶାର ଭୌଗୋଳିକ ପରିସୀମା ମଧ୍ୟରେ ଏକ ସୀମିତ ଭୂମିଖଣ୍ଡର ନେତୃବର୍ଗ, ସାହିତ୍ୟିକ, ସମାଜ ସେବକ, ଶିକ୍ଷାବିତ୍ ଆଦି ସମଗ୍ର ଓଡ଼ିଆଙ୍କ ସମ୍ମୁଖରେ ବାରମ୍ବାର ଉପସ୍ଥାପିତ ହେଉଥିବା ବେଳେ, ଅନ୍ୟମାନେ ଉପେକ୍ଷିତ ହୋଇଯାଉଛନ୍ତି । ଏଭଳି ଏକ ସମୟରେ ଏଭଳି ବ୍ୟକ୍ତିତ୍ୱମାନଙ୍କୁ ପରିଚିତ କରାଇବାର ଦାୟିତ୍ୱ ନେବାପାଇଁ ଆଞ୍ଚଳିକ ଲେଖକ, ପ୍ରକାଶକ ଓ ଅନୁଷ୍ଠାନ ଯଦି ଆଗେଇ ନ ଆସନ୍ତି, ତେବେ କେବଳ ଯେ ପୂଜ୍ୟପୂଜାରେ ଅଭାବ ରହିବ ତାନୁହେଁ, ତାଫଳରେ ଆଞ୍ଚଳିକ ବିଚ୍ଛିନ୍ନତାବାଦ ଓ ବିଦ୍ୱେଷ ମୁଣ୍ଡ ଟେକିବ । ଏ ଦୃଷ୍ଟିରୁ ଏ ପୁସ୍ତକର ଲେଖକ ପ୍ରଶଂସ୍ୟ ଓ ଏହି ପୁସ୍ତକ ପ୍ରକାଶ କରିବାକୁ ଅଗ୍ରସର ହୋଇଥିବା "ଭକ୍ତିସଙ୍ଗୀତ ସଂସଦ" ବାସ୍ତବିକ ପ୍ରଶଂସାର ପାତ୍ର ଓ ଅନ୍ୟମାନଙ୍କର ଅନୁକରଣୀୟ ଅଟନ୍ତି ।

ସତ୍ୟହିଁ ସତ୍ୟ । ତଥ୍ୟହିଁ ତଥ୍ୟ । ସତ୍ୟ ଓ ତଥ୍ୟ ଏକତ୍ର କୌଣସି ଜୀବନୀକାର ଲେଖନୀରେ ସର୍ବତ୍ର ଫୁଟି ଉଠିବା ସହଜ ନୁହେଁ । କାରଣ ଲେଖକଙ୍କୁ ଏ କ୍ଷେତ୍ରରେ ମହତ ଜୀବନୀର ଜୀବନ ସହିତ ନିଜକୁ ହଜାଇ ଦେବାକୁ ହୋଇଥାଏ । ଦିବାକର ବାବୁ ଠିକ୍ ଏଇଆହିଁ କରିଛନ୍ତି । ଗୋପାଳକୃଷ୍ଣଙ୍କ ଜୀବନର ଆଲୋଚନା ବେଳେ "ଡ଼ାକିବି ରାଧାରମଣ ବୋଲିକି"କବିତାବୃତ୍ତି ଓ କେହି ତାଙ୍କୁ ଏକବିତାଟି ମାଗିବା ବେଳେ "ଆମ ସମୁଦ୍ରପେଟାକୁ ମାଗ" କହିବା, ମୃତ୍ୟୁ କାଳରେ ପତ୍ନୀଙ୍କ ସହିତ ତାଙ୍କ କଥୋପକଥନ, ଆୟୁର୍ବେଦରେ ତାଙ୍କ ପରିଚୟ ଦର୍ଶାଇ "ଶୁଶ୍ରୁତସଂହିତା"ର ଉଦାହରଣ ଗୁଡ଼ିକ ଲେଖକଙ୍କ ନିଷ୍ଠା ଓ ଆତ୍ମଲୀନ ଭାବହିଁ ଦର୍ଶାଏ । ସେଇଭଳି ଛୋଟ ଅଥଚ ପ୍ରାଣସ୍ପର୍ଶୀ ଉଦାହରଣ ମିଳେ, ଗଜପତି କୃଷ୍ଣଚନ୍ଦ୍ରଙ୍କ ପିଲାଦିନର କଥାରୁ । ଚୋଡ଼ଗଙ୍ଗଙ୍କ ପରି ଓଡ଼ିଶାର ଏକତ୍ରୀକରଣ ସହାୟକ, ବାଲ୍ୟଚାପଲ୍ୟ ମଧ୍ୟରେ ପାଠପାଇଁ

ଅମନଯୋଗୀ ଥିବା ଦେଖି, ବାଲ୍ୟଗୁରୁ ଶ୍ୟାମସୁନ୍ଦର ରାଜଗୁରୁ କହିଥିଲେ, "ପାଠ ପଢ଼ିବାକୁ ଭଲ ଲାଗୁନି, ମାତ୍ର ମୁନିଗା ଭଜା ଖାଇବାକୁ ଭଲ ଲାଗୁଛି, ଏମିତି ହେଲେ ତୁମେ କି ରାଜ୍ୟ ପାଳିବ?" ଜୀବନର ଏଇଭଳି ଅନେକ ଛୋଟ ଛୋଟ ଘଟଣାର ଅବତାରଣା ପୁସ୍ତକଟିର ପ୍ରତ୍ୟେକ ପୃଷ୍ଠାରେ ମହକ ସୃଷ୍ଟି କରୁଛି ।

ଭାଷା ଓ ଭାବକୁ ସମୃଦ୍ଧ କରିବାପାଇଁ ପାଣ୍ଡିତ୍ୟପୂର୍ଣ୍ଣ ଅବତାରଣା ବେଶ୍ ସୁପାଠ୍ୟ। ମହାରାଜା କୃଷ୍ଣଚନ୍ଦ୍ରଙ୍କ ଚରିତ୍ର ବର୍ଣ୍ଣନା କରିବାପାଇଁ ଏ ସଂସ୍କୃତ ଶ୍ଳୋକଟି ତାର ଉଦାହରଣ ହୋଇପାରେ -

" ବିପଦି ଧୈର୍ଯ୍ୟମଥାଭ୍ୟୁଦୟେ କ୍ଷମା
ସଦସି ବାକ୍ପଟୁତା ଯୁଧି ବିକ୍ରମଃ
ଯଶସି ଚାଭିରତି ବ୍ୟସନଂ ଶ୍ରୁତୌ
ପ୍ରକୃତି ସିଦ୍ଧ ମିଦଂହି ମହାତ୍ମନମ୍ ।। "

ବିପଦରେ ଧୈର୍ଯ୍ୟ, ଉନ୍ନତି କାଳରେ କ୍ଷମାଶୀଳ ଭାବ, ସଭାରେ ବାକ୍ପଟୁତା, ଯୁଦ୍ଧରେ ବିକ୍ରମ, ଯଶପ୍ରାପ୍ତିରେ ନିସ୍ପୃହତା ଓ ସତତ ସଦ୍‌ଗ୍ରନ୍ଥ ପାଠରେ ବିଳାସହିଁ ମହାତ୍ମାର ଲକ୍ଷଣ ।

ସତ୍ୟନାରାୟଣ ରାଜଗୁରୁଙ୍କ ସମ୍ପର୍କରେ ଉଲ୍ଲେଖ କଲାବେଳେ, କଳିଙ୍ଗ ନାମରେ ପରିଚିତ ଓଡ଼ିଶାର ଦକ୍ଷିଣାଞ୍ଚଳକୁ ତୈଲଙ୍ଗ ରାଜ୍ୟ ବୋଲି ଦର୍ଶାଇବାର ବିରୋଧ କରି, ଆନ୍ଧ୍ରରାଜା ମୁମୁଦିଚୋଳଙ୍କ ଅଭିଲେଖର ଉଦାହରଣ ଦେଇ, ଲେଖକ ସାଧାରଣ ପାଠକଙ୍କୁ ଏକ ଐତିହାସିକ ସତ୍ୟ ଦର୍ଶାଇଛନ୍ତି ।

"ପଶ୍ଚାତ୍ ପୁରସ୍ତାଦପି ଯସ୍ୟଦେଶୌ
ଖ୍ୟାତୌ ମହାରାଷ୍ଟ୍ର କଳିଙ୍ଗ ସଂଜ୍ଞୌ ।।
ଅବାଗୁଦକ୍ ପାଣ୍ଡ୍ୟକ କାନ୍ୟକୁବ୍ଜୌ
ଦେଶଃ ସ ତତ୍ରାସ୍ତି ତୈଲଙ୍ଗନାମା ।।"

ପଶ୍ଚିମରେ ମହାରାଷ୍ଟ୍ର, ପୂର୍ବରେ କଳିଙ୍ଗ, ଦକ୍ଷିଣରେ ପାଣ୍ଡ୍ୟ, ଉତ୍ତରରେ କାନ୍ୟକୁବ୍ଜ ଥିବା ଦେଶଟିର ନାମ ତୈଲଙ୍ଗ ରାଜ୍ୟ ।

ସମଗ୍ର ପୁସ୍ତକରେ ଦିବାକର ବାବୁ ସ୍ୱୀୟ ବହୁପାଠିତାର ପ୍ରମାଣ ଦେଇଛନ୍ତି । ତାଙ୍କ ପୁସ୍ତକରେ ପ୍ରଦତ୍ତ ଜୀବନୀ ଗୁଡ଼ିକର ଜୀବନକୁ ସ୍ପଷ୍ଟ ରୂପେ ପ୍ରମାଣିତ କରିବାପାଇଁ ଏହାର ସଦୁପଯୋଗ କରିଛନ୍ତି । ଗୋଟିଏ ଉଦାହରଣ ନିଆଯାଇପାରେ । ଏକ ସମୟରେ କେତେକ ନିନ୍ଦୁକ, ଗୋପୀନାଥ ନନ୍ଦଙ୍କ ଓଡ଼ିଆ ଭାଷାତତ୍ତ୍ୱର ସମାଲୋଚନା କରିଥିଲେ । ଗୋପବନ୍ଧୁଙ୍କ ପତ୍ରର ଏକ ସୂଚନା, ଗୋପୀନାଥଙ୍କ ମହତ୍ତ୍ୱ ପ୍ରକାଶ କରେ ।

"କିନ୍ତୁ ଏହା ପ୍ରାଣର କଥାଯେ, ଯେତେବେଳେ ଓଡ଼ିଶାର ଚାରିଆଡ଼କୁ ଚାହୁଁ, ସାହିତ୍ୟ କ୍ଷେତ୍ରରେ ଏକ ନୀରବ ସାଧକ ବୋଲି ଆପଣଙ୍କ ଉପରେ ଆଖି ପଡ଼େ । ଦୂରରୁ ମନେ ମନେ ଆମେମାନେ ନମସ୍କାର କରୁ । ଆପଣଙ୍କ ନିଷ୍ଠା ଓ ନିରଭିମାନତା ଆମମାନଙ୍କର ନିତ୍ୟ ସ୍ମରଣୀୟ ।"

ପୁସ୍ତକରେ ଆଧାରିତ ଜୀବନୀ ଗୁଡ଼ିକରେ,ଲେଖକ ସମସ୍ତ ମହନୀୟ ଜୀବନର ଜାତୀୟ ଭାବ, ଦେଶପ୍ରେମ, ସାହିତ୍ୟ, ସଙ୍ଗୀତ, ସଂସ୍କୃତି ପାଇଁ ସମସ୍ତ ଅବଦାନ ଟନ୍‌ଟନ୍ ଆଲୋଚନା କରିଛନ୍ତି । କୌଣସି ବିଭବ ଯେପରି ଛାଡ଼ିନଯାଏ, ସେଥିପ୍ରତି ଗଭୀର ଦୃଷ୍ଟି ରଖି ଉପସ୍ଥାପନା କରିଛନ୍ତି । ରଚନାର ଭାଷା ଅତ୍ୟନ୍ତ ସରଳ ଓ ମଧୁର ହୋଇ, ଲେଖକଙ୍କ ଭାବାବେଗକୁ ପ୍ରକାଶ କରୁଛି । ଜୀବନୀର ପ୍ରକାଶ ଶୈଳୀ ତାଙ୍କର ନିଜସ୍ୱ । ଏ ପୁସ୍ତକର ପାଠକ ଯେ କେବଳ ଜୀବନୀ ଗୁଡ଼ିକ ପଢ଼ିବେ ତାହୁହେଁ, ଏହାରି ମାଧ୍ୟମରେ ସେମାନେ ଓଡ଼ିଶାର ଅନେକ ସ୍ୱନାମଧନ୍ୟ କବି,ଲେଖକ, ଆଲୋଚକ, ରାଜନୀତିଜ୍ଞ, ଜନନାୟକ ମାନଙ୍କ ବୈଶିଷ୍ଟ ଅବଧାରଣା କରିବାକୁ ସମର୍ଥ ହେବେ । ଏଥିପାଇଁ ଦିବାକର ବାବୁ ଅନେକ ପରିଶ୍ରମ କରିଛନ୍ତି । ଏଥିପାଇଁ ବହୁ ସମୟ ପ୍ରଦାନ କରିଛନ୍ତି । ସେ ସାହିତ୍ୟ ଇତିହାସର ଗବେଷକ ନୁହନ୍ତି, କିନ୍ତୁ ଏ ପୁସ୍ତକଟି କେବଳଯେ ସାଧାରଣ ପାଠକଙ୍କୁ ପ୍ରେରଣା, ଧାରଣା ଓ ଜ୍ଞାନ ଯୋଗାଇବ ତାହୁହେଁ, ଏହା ମଧ୍ୟ ଗବେଷକ ମାନଙ୍କୁ ଅନେକ ସୂଚନା ପ୍ରଦାନ କରିବ । ସେ ଏଭଳି କେତେକ ତଥ୍ୟ ପୁସ୍ତକରେ ଦେଇଛନ୍ତି, ଯାହା ଅନ୍ୟତ୍ର ସହଜ ଉପଲବ୍ଧ ହେବନାହିଁ ।

ଉତ୍କଳୀୟତା ସୃଷ୍ଟି ଆଜି ଓଡ଼ିଆ ଭାଷାଭାଷୀଙ୍କ ପାଇଁ ଆବଶ୍ୟକ ହୋଇପଡ଼ିଛି । ଯେଉଁ ଭାଷା ସାହିତ୍ୟକୁ ଉପେନ୍ଦ୍ରଭଞ୍ଜ, କବିସୂର୍ଯ୍ୟ, ଫକୀରମୋହନ, ଗଙ୍ଗାଧର ସମୃଦ୍ଧ କଲାବେଳେ ଏକ ବୃହତ୍ତର ଓଡ଼ିଶାକୁ ଆଖିରେ ଦେଖିବାପାଇଁ ଚାହିଁଛନ୍ତି, ଆଶା କରିଛନ୍ତି, ସେହି ଆଶାକୁ ବିଖଣ୍ଡିତ କରି ଆମେ କୋଶଳ, କଳିଙ୍ଗ, କୋଙ୍ଗଦର ସ୍ୱପ୍ନ ଦେଖୁଛୁ । ମଞ୍ଜୁଷା, ଟେକୋଲି, ଇଛାପୁର ଆମ ଆଖିକୁ ଦେଖାଯାଉନାହିଁ । ଫୁଲଝର, ବସ୍ତର, ବିନ୍ଦ୍ରା ନୂଆଗଡ଼ ଆମେ ପାଶୋରି ଯାଉଛୁ । ଧଳଭୂମି, ବୀରଭୂମି, ମେଦିନୀପୁର ଆଉ ଫେରିବ ନାହିଁ । କିନ୍ତୁ ହାତରେ କଉଡ଼ି ଖେଳିବାକୁ, ଖରସୁଆଁ କେନ୍ଦୁ ସହଜରେ ହରେଇ ଦେଇ ଆମେ ଆଞ୍ଚଳିକତାର ସ୍ୱପ୍ନ ଦେଖୁଛୁ । ଯେଉଁ କାରଣ ଗୁଡ଼ିକ ଏଥିପାଇଁ ଦାୟୀ, ତାର ନିରାକରଣ ପାଇଁ ଆମର ଯତ୍ନ ନାହିଁ ।

ସ୍ୱାଭିମାନ ଯାହାସବୁ ଲୋଡ଼ା, ଜୀବନୀ ଗୁଡ଼ିକର ଆଲୋଚନା ବେଳେ ବିଭିନ୍ନ ସ୍ଥାନରେ ଲେଖକ ସୂଚାଇ ଦେଇଛନ୍ତି । ମୋଟ ଉପରେ କହିବାକୁ ଗଲେ, ଏହି ରକ୍ତମାଂସର ମନୁଷ୍ୟ ଗୁଡ଼ିକର ଅମର ସ୍ମୃତି, ସ୍ମୃତିଚାରଣ କରି ଓଡ଼ିଶାବାସୀ ଗୌରବାନ୍ୱୀତ ମନେ କରନ୍ତୁ , ଏହି କାମନା ଲେଖକ ସର୍ବତ୍ର ଫୁଟାଇଛନ୍ତି । ଗଳ୍ପ, ଇତିହାସ, କିମ୍ବଦନ୍ତୀର ମଧୁର ସଂଯୋଜନା ସହିତ, ଜୀବନୀ ଲେଖାକୁ ସତ୍ୟ ଓ ତଥ୍ୟ ସହିତ ଉପସ୍ଥାପନା କରିବାରେ ଦିବାକର ବାବୁ ସଫଳ ହୋଇଛନ୍ତି । ପୁସ୍ତକଟି ପାଠକ ମାନଙ୍କ ପାଖକୁ ଯାଉ, ସେମାନେ ଏହା ପାଠ କରନ୍ତୁ, ଲେଖକଙ୍କ ଶ୍ରମ ସାର୍ଥକ ହେଉ-ଏହାହିଁ କାମନା ।

ମୋତେ ଏ ଅଗ୍ରଲେଖା ପ୍ରସ୍ତୁତ କରିବାକୁ ସୁଯୋଗ ଦେଇଥିବାରୁ, ମୁଁ ଦିବାକର ବାବୁଙ୍କ ପ୍ରତି କୃତଜ୍ଞତା ଜ୍ଞାପନ କରୁଛି ।

*କାନ୍ତିପ୍ରସାଦ ମିଶ୍ର*
ମହାର ଶବିବା ପଡ଼ା
ଭବାନୀପାଟଣା ।



ସ୍ୱର୍ଗୀୟ ଶ୍ୟାମସୁନ୍ଦର ରାଜଗୁରୁ



ସ୍ୱର୍ଗୀୟ ଗୋପିନାଥ ନନ୍ଦଶର୍ମା



ସ୍ୱର୍ଗୀୟ ଗୋପାଳ କୃଷ୍ଣ ପଟ୍ଟନାୟକ

# ମୁଖବନ୍ଧ

ଅତ୍ୟନ୍ତ ସୌଭାଗ୍ୟର ବିଷୟ ଏହିଯେ, ପାରଳାର ଭକ୍ତିସଙ୍ଗୀତ ସଂସଦ ତାଙ୍କ ପ୍ରକାଶନ ଯୋଜନାରେ ପୂଣ୍ୟପୀଠ ପାରଳାର ସାଂସ୍କୃତିକ ଇତିହାସ ପ୍ରକାଶ କରିବା ଦାୟିତ୍ୱ ବହନ କରିଛନ୍ତି । ସେହି ଅବସରରେ ମୋର ଏହି ପୁସ୍ତକ ପ୍ରକାଶନ ନିମନ୍ତେ ବ୍ୟବସ୍ଥା କରି, ଅନୁଷ୍ଠାନର କର୍ମକର୍ତ୍ତାବୃନ୍ଦ ପାରଳାର ଐତିହ୍ୟକୁ ପୁନଃ ଉଦ୍‌ଘାଟିତ କରିଛନ୍ତି । ଏହା ପାରଳା ନିମନ୍ତେ କିଛି କମ୍ ଗୌରବର କଥା ନୁହେଁ । ତେଣୁ ପାଠକ ମାନଙ୍କୁ ବିଷୟବସ୍ତୁର ବିସ୍ତୃତ ବିବରଣ ଦେବା ପୂର୍ବରୁ, ପାରଳାର ଐତିହ୍ୟ ସମ୍ବନ୍ଧରେ ଏକ ବିହଙ୍ଗାବଲୋକନ କରାଇବା ଉଚିତ ମନେ କରୁଛି ।

ଐତିହାସିକ ଯୁଗର ପ୍ରାରମ୍ଭରୁ ପୁଣ୍ୟତୋୟା ମହେନ୍ଦ୍ରତନୟାର ଏହି ତଟଭୂମି ପାରଳାଖେମୁଣ୍ଡି, ପ୍ରତିରକ୍ଷା ଦିଗରୁ ଏକ ବଳିଷ୍ଠ କେନ୍ଦ୍ର ରୂପେ ପ୍ରସିଦ୍ଧି ଲାଭ କରିଥିଲା । ତଥାପି, ୧୭୬୮ ଖ୍ରୀଷ୍ଟାବ୍ଦରେ ପାରଳାଖେମୁଣ୍ଡିର ସ୍ୱାଧୀନତା ଅସ୍ତମିତ ହୋଇ, ଏହା ଇଂରେଜ୍ ସାମ୍ରାଜ୍ୟର ଏକ ଅଂଶ ରୂପେ ପରିଗଣିତ ହେଲା । କିନ୍ତୁ ସ୍ୱାଧୀନତାଯେ ଅତି ମହତ୍ ଏହି ବିବେଚନାରୁ ପାରଳାବାସୀ ଓହରି ନଥିଲେ । ଫଳରେ ପାରଳା ମହାରାଜାଙ୍କ ନେତୃତ୍ୱରେ ଏହି ଅଞ୍ଚଳର ଦୋରା ଏବଂ ବିଷୋଇ ମାନେ ଇଂରେଜ୍ ମାନଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥିଲେ । ସେହି ବିଦ୍ରୋହ ବିଭିନ୍ନ ପର୍ଯ୍ୟାୟରେ ପ୍ରାୟ ସତୁରି ବର୍ଷ କାଳ ଚାଲିଥିଲା । ବିଦ୍ରୋହ ଅଭିଯୋଗରେ ପାରଳାର ୧୫ଜଣ ପାଇକ ଫାଶୀ ଏବଂ ୨୮ ଜଣ ପାଇକ ଦ୍ୱୀପାନ୍ତରିତ ହୋଇଥିଲେ । କିନ୍ତୁ ସେମାନଙ୍କର ସ୍ୱାଧୀନଚେତା ଏବଂ ଦେଶପ୍ରେମ ପାରଳାଖେମୁଣ୍ଡି ଇତିହାସର ଭିତ୍ତି ପ୍ରସ୍ତର ସ୍ଥାପନ କରିଥିଲା । ଉଲ୍ଲେଖଯୋଗ୍ୟ ବିଦ୍ରୋହୀ ମାନଙ୍କ ମଧ୍ୟରେ ରାଧାକୃଷ୍ଣ ଦଣ୍ଡସେନା, ଲକ୍ଷ୍ମୀନୃସିଂହ ପାତ୍ର, ଦୁର୍ଗାଦାସ ଏବଂ ବିପ୍ରବିଶୀ ବିଶାଣୀଙ୍କ ନାମ ବାସ୍ତବିକ ସ୍ମରଣୀୟ ସେମାନଙ୍କ ମନୋବଳ ଏବଂ ଐକ୍ୟତା, ସମଗ୍ର ରାଷ୍ଟ୍ରୀୟ ଇତିହାସର ବିଷୟବସ୍ତୁ ଅଟେ ।

ତତ୍‌ପରେ ଓଡ଼ିଆ ଜାତି ପାଇଁ ଏକ ସ୍ୱତନ୍ତ୍ର ପ୍ରଦେଶ ଦାବୀ କରି ଓଡ଼ିଶାରେ ଯେଉଁ ଆନ୍ଦୋଳନ ହୋଇଥିଲା, ତାହାର ଜଣେ ଅଗ୍ରଗଣ୍ୟ ନେତା ଭାବେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଭୂମିକା ଅବିସ୍ମରଣୀୟ । ବାସ୍ତବରେ ତାହାଙ୍କ ସମୟୋପଯୋଗୀ ନେତୃତ୍ୱ ଯୋଗୁଁ ୧୯୩୬ ଖ୍ରୀଷ୍ଟାବ୍ଦ ଏପ୍ରେଲ୍ ପହିଲା ଦିନ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠିତ ହୋଇଥିଲା। ଫଳରେ ପ୍ରାୟ ଏକଶତ ସତୁରୀ ବର୍ଷ ପୂର୍ବେ ଦେଶକୁ ସ୍ୱାଧୀନ କରିବା ପାଇଁ ପାରଳାରେ ଯେଉଁ ବିଦ୍ରୋହର ଅୟମାରମ୍ଭ ହୋଇଥିଲା, ତାହାକୁ ଏଠାର ଜଣେ ପରବର୍ତ୍ତୀ ମହାରାଜା ସାର୍ଥକ ରୂପ ଦେବାରେ ସକ୍ଷମ ହୋଇଥିଲେ ।

ଯୁଗଯୁଗରୁ ପାରଳାର ଅମର କାହାଣୀ କେବଳ ଇତିହାସରେ ନୁହେଁ, ପାରଳାଖେମୁଣ୍ଡିର ସଂସ୍କୃତି ସହ ମଧ୍ୟ ଓତପ୍ରୋତ ଭାବେ ସମ୍ପୃକ୍ତ ହୋଇ ରହିଆସିଛି । ପାରଳା ରାଜବଂଶର ଜଣେ ଦକ୍ଷ ପୂର୍ବପୁରୁଷ ନରହରି ଦେବ, ଯବନ ସେନାପତି ମୁଲ୍ଲିକ୍ ଖାନ୍‌ଙ୍କ ମସ୍ତକକୁ ଛେଦନ କରି, ଏଥି ପୂର୍ବରୁ ପ୍ରୋକ୍ତ ଯବନ ସେନାପତି ଦ୍ୱାରା ନିହତ ଭାତୃଗଣଙ୍କ ବିୟୋଗର ପ୍ରତିଶୋଧ ନେଇଥିଲେ । ନରହରି ଦେବ ଯେଉଁ ଖଡ୍‌ଗ ଦ୍ୱାରା ମୁଲ୍ଲିକ୍ ଖାନ୍‌ଙ୍କ ମସ୍ତକକୁ ଛେଦନ କରିଥିଲେ, ତାହା ମୁଲ୍ଲିକମର୍ଦ୍ଦନ ଖଣ୍ଡା ନାମରେ ଏ ଅଞ୍ଚଳରେ ସୁପରିଚିତ । ସେହି ବିଜୟ ମଣ୍ଡିତ ଘଟଣାର ସ୍ମୃତିରେ ପ୍ରତିବର୍ଷ ଭାଦ୍ରବ ଶୁକ୍ଳ ଦ୍ୱାଦଶୀ ଦିନ ମହାରାଜାଙ୍କ ଇଷ୍ଟଦେବୀ ମାଣିକେଶ୍ୱରୀଙ୍କ ମନ୍ଦିରରେ ଗଜପତିଙ୍କ ଅଙ୍କ ଉତ୍ସବ ପାଳିତ ହୋଇଥାଏ । ସେହିଦିନ ମୁଲ୍ଲିକମର୍ଦ୍ଦନ ଖଣ୍ଡାକୁ ମାଣିକେଶ୍ୱରୀଙ୍କ ବିଗ୍ରହ ପାର୍ଶ୍ୱରେ ରଖି ଯଥୋପଚାରରେ ପୂଜା କରାଯିବା ପ୍ରଥା ବର୍ତ୍ତମାନ ଯାଏ ଚଳି ଆସୁଛି ।

ପାରଳାର ଗୌରବମୟ ଐତିହ୍ୟ ଏଠାର ମାତୃହୃଦୟର ମଧ୍ୟ ଏକ ସ୍ୱଚ୍ଛ ପ୍ରତିଫଳନ । ଏକଦା ଉତ୍କଳମଣି ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ ଏବଂ ଗୋଦାବରୀଶ ଏହାର ସତ୍ୟତା ଉପଲବ୍ଧ କରିଥିଲେ । ଉତ୍କଳମଣି ନିଜ ସହକର୍ମୀଙ୍କ ସହ ପାରଳା ଭ୍ରମଣରେ ଆସି ସ୍ଥାନୀୟ ପରିଛା ମଠରେ ଅବସ୍ଥାନ କରିଥାନ୍ତି । ସେମାନେ ମଧ୍ୟାହ୍ନ ଭୋଜନାନ୍ତେ ମଠ କୋଠାରେ ବିଶ୍ରାମ ନେଉଥିବା ସମୟରେ ତଳ ଅଗଣାରେ ଅନୂଢ଼ା ବାଳିକା ମାନଙ୍କ ଠାରୁ ଗୋଟିଏ ଗୀତ ଶୁଣିଥିଲେ । ମାଁ ତାର ଶିଶୁକୁ ଶୁଆଇଲା ବେଳେ ଉକ୍ତ ଗୀତ ଗାନ କରିଥାନ୍ତି । ବିଷୟଟି ବିସ୍ତୃତ ହେବ ଭାବି, ଗୀତଟି ଏଠାରେ ଉଲ୍ଲେଖ କରୁନାହିଁ, କିନ୍ତୁ ତାହାର ଭାବାର୍ଥ ନିମ୍ନରେ ପ୍ରଦାନ କରୁଛି ।

ମାଁ ଶିଶୁକୁ କହୁଛନ୍ତି - ତୁ ବଡ଼ ହେବୁ । ତୋର ମାଁ ମୁଣ୍ଡରେ ସିନ୍ଦୁର ଧାରା ସର୍ବଦା ପଡ଼ିଥାଉ । ନନା ମୁଣ୍ଡରେ ଆଶୀର୍ବାଦ ବର୍ଷୁ । ତାଣକରି ବାରମାସୀ କଳାଜୀରା ଧାନ ପଚାଇବୁ । ପାନଖାଇ ଶଗଡ଼ା ଖେଳି ଶ୍ରୀକୂର୍ମ ଦାସୀନାଚ ଦେଖୁଥିବୁ । ବୋଇତ ବଣିଜ କରିବୁ । କଳିଙ୍ଗର ରଜା ହୋଇ ରଜାରେ ଫୁଲମାଳ ପିନ୍ଧି ଯୋଡ଼ା ପାଟହାତୀରେ ବସି ମୋର ବାଟରେ ଯିବୁ ।

ପୁଅର ଭବିଷ୍ୟତ ପାଇଁ ମାଁଙ୍କର କି ଚମତ୍କାର ଭାବନା । ପାରଳାର ମାତୃଜାତି ନବଜାତ ଶିଶୁକୁ ଶୈଶବରୁହିଁ ଯେଉଁ ଜାତୀୟତାବୋଧରେ ଉଦ୍‌ବୁଦ୍ଧ କରିଥାନ୍ତି, ତାହା ଲକ୍ଷ୍ୟକରି ଉତ୍କଳମଣି ପ୍ରମୁଖ, ପାରଳାର ଐତିହ୍ୟକୁ ଭୂୟସୀ ପ୍ରଶଂସା କରିଥିଲେ। ଉତ୍କଳମଣି ଗୋପବନ୍ଧୁ ତାହାଙ୍କ ଉପାନ୍ତ ଗସ୍ତ ବେଳେ ପାରଳାରେ ନିହିତ ଏପରି ବହୁ ସାଂସ୍କୃତିକ ତଥ୍ୟ ସଂଗ୍ରହ କରିଥିଲେ। ସେ ତାଙ୍କ ସହକର୍ମୀଙ୍କ ସହ ସ୍ଥାନୀୟ ପରିଛା ମଠରେ ରହିଥିବା ବେଳେ ପାରଳାରେ ଜୀବନବୀମା ବ୍ୟବସ୍ଥାର ପ୍ରାଚୀନତା ସମ୍ବନ୍ଧରେ ଆଭାସ ପାଇଥିଲେ ।

ସେଦିନ ଥିଲା ମହାଳୟା ଅମାବାସ୍ୟା । ପାରଳାର କେତେକ କୁମାରୀ ଗୋଟିଏ ଗୋଟିଏ ଗଣ୍ଡୁଳି ଏବଂ କାଖରେ ଟଡ଼ା କଳସୀ ଧରି, "ଆସ ଗୋ ଗଙ୍ଗା ଯିବା, ଆସ ଗୋ ଗୟାଯିବା, ଆସଗୋ ପୁରୀ ଯିବା, ଆସ ଗୋ ଗୋଦାବରୀ ଯିବା" କହି ଦଳଦଳ ହୋଇ ପରିଛା ମଠରୁ ଆସି ସକାଳ ୮ରୁ ୧୨ଟା ଯାଏ ଖେଳିଗଲେ । ସେହି ସମୟ ମଧ୍ୟରେ ଉତ୍କଳମଣି ଲକ୍ଷ୍ୟ କରିଥିଲେ, ପଶ୍ଚିମ ଜୀବନ ଆସନା ଜଣେ ବୁଢ଼ୀ ସେଠାରୁ ଆସି ମଠର ପରିଚାଳକ ଅପନା ପରିଛାଙ୍କ ହାତରେ ଗୋଟିଏ ଗଣ୍ଡୁଳି ବଢ଼ାଇ ଦେଇ କହିଲେ, "ବାବୁ, ମୁଁ ତୀର୍ଥ ଯାଉଛି, ଫେରିଲେ ଏ ଗଣ୍ଡୁଳିଟି ନେଇଯିବି, ନ ଫେରିଲେ ମୋ ପିଲାପିଲିଙ୍କୁ ଦେଇଦେବେ। ଏହି ଗଣ୍ଡୁଳିରେ ବୁଢ଼ୀର ସଞ୍ଚିତ ସମ୍ପତ୍ତି ନିହିତ ।"

ସେହି ଦୃଶ୍ୟ ଦେଖି ପଣ୍ଡିତ ଗୋପବନ୍ଧୁ ତାହାର ତାତ୍ପର୍ଯ୍ୟ ନିଜ ସହକର୍ମୀଙ୍କୁ ବୁଝାଇବାକୁ ଯାଇ କହିଥିଲେ - "ଦେଖ, ଏ ଦେଶରେ ପ୍ରଚଳିତ ଜୀବନବୀମା ବିଦେଶରୁ ଆମଦାନୀ ନୁହେଁ, ଏହା ଓଡ଼ିଶାରୁ ତଥା ପାରଳାରୁ ଆମଦାନୀ ଅଟେ । ବର୍ତ୍ତମାନ ସପ୍ତପୁରୀ ଅମାବାସ୍ୟା ଗୋଟିଏ ସାଂସ୍କୃତିକ ପର୍ବରେ ପରିଣତ ହୋଇଥିଲେ ବି, ପିଲାଙ୍କ ଖେଳରେ ଏଥିର ଗୁଢ଼ ରହସ୍ୟ ପର୍ଯ୍ୟବେକ୍ଷିତ ହୋଇ ରହିଛି ।"

ପାରଳାଖେମୁଣ୍ଡିର ଐତିହ୍ୟ ଏଠାର ରାଜନୈତିକ ଏବଂ ସାଂସ୍କୃତିକ ଅଭ୍ୟୁଦୟ ଦ୍ୱାରା ମହିମାନ୍ୱିତ । ପାରଳାର ସାଂସ୍କୃତିକ ବିକାଶ ମୁଖ୍ୟତଃ ସ୍ଥାନୀୟ ରାଜବଂଶର ପୃଷ୍ଠପୋଷକତା ଯୋଗୁଁ ଏକ ଗାରିମାମୟ ଅଧ୍ୟାୟ ସୃଷ୍ଟି କରିଛି । ପାରଳାର ଭକ୍ତକବି ଗୋପାଳକୃଷ୍ଣ, ଓଡ଼ିଆ ନାଟ୍ୟ ସାହିତ୍ୟର ସ୍ରଷ୍ଟା ରଘୁନାଥ ପରିଛା, ପ୍ରାବନ୍ଧିକ ଶ୍ୟାମସୁନ୍ଦର ରାଜଗୁରୁ, ଭାଷାତତ୍ତ୍ୱବିତ୍ ଗୋପୀନାଥ ନନ୍ଦ, ସଙ୍ଗୀତଜ୍ଞ ରାଧାଚରଣ ଦେଓ, ବୀଣାବାଦକ ଭକ୍ତବତ୍ସଳ ପାତ୍ର, ଗାୟକ ଅପନା ପାଣିଗ୍ରାହୀ ପ୍ରଭୃତି ଅଲୌକିକ ପ୍ରତିଭା ଓଡ଼ିଶା ସାଂସ୍କୃତିକ ଇତିହାସର ଶ୍ରୀବୃଦ୍ଧି ସାଧନ କରିଛନ୍ତି । ଫଳରେ ବହୁ ପ୍ରାଚୀନ କାଳରୁ ଓଡ଼ିଶାର ବହୁ ବିଶିଷ୍ଟ କବି ମାନଙ୍କ ଦ୍ୱାରା ପୂଣ୍ୟପୀଠ ପାରଳାଖେମୁଣ୍ଡି ଜ୍ଞାନଚର୍ଚ୍ଚାର କେନ୍ଦ୍ରସ୍ଥଳ ଭାବେ ଆଦୃତ ଲାଭ କରିଛି । ଅଷ୍ଟାଦଶ ଶତାବ୍ଦୀରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଏବଂ ଉନବିଂଶ ଶତାବ୍ଦୀରେ କବିସୂର୍ଯ୍ୟ ବଳଦେବ ରଥ ପାରଳାଖେମୁଣ୍ଡି ଆସି, ଏଠାର କବିମାନଙ୍କ ପ୍ରତିଭାକୁ ଉଚ୍ଚ ପ୍ରଶଂସା କରିଥିବା ସମ୍ପର୍କରେ ଐତିହାସିକ ପ୍ରମାଣ ରହିଛି । ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ପଣ୍ଡିତ ଗୋପବନ୍ଧୁ ଦାସ, ଗୋପାଳଚନ୍ଦ୍ର ପ୍ରହରାଜ, ରାଧାନାଥ ରାୟ, ଫକୀରମୋହନ ସେନାପତି ପ୍ରଭୃତି ଓଡ଼ିଶାର ପ୍ରବୀଣ ସାହିତ୍ୟିକ ବୃନ୍ଦ ପାରଳାଖେମୁଣ୍ଡି ଆସି, ଏଠାର ସାଂସ୍କୃତିକ ପରମ୍ପରା ସମ୍ପର୍କରେ ଆଲୋଚନା କରିଥିବା ମଧ୍ୟ କାହାକୁ ଅଜଣା ନୁହେଁ ।

ପାରଳାର ସୀମିତ ଭୌଗଳିକ ସୀମା ମଧ୍ୟରେ ଯେଉଁ ମୌଳିକ ଚିନ୍ତାଶୀଳ କବି ଏବଂ ଲେଖକମାନେ ଜନ୍ମଗ୍ରହଣ କରି ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧି କରିଯାଇଥିଲେ, ତାହା ଆଜିମଧ୍ୟ ଶତମୁଖରେ ଉଦ୍‌ଘୋଷିତ । ମାୟାଧର ମାନସିଂହଙ୍କ ଭାଷାରେ- "ଉତ୍କଳର ଶେଷ ଦକ୍ଷିଣ ସୀମାନ୍ତରେ ଅବସ୍ଥିତ କ୍ଷୁଦ୍ର ସହର ପାରଳାଖେମୁଣ୍ଡିର ଓଡ଼ିଆ ସାହିତ୍ୟ ଓ ସଂସ୍କୃତିକୁ ଦାନ ସତ୍ୟରେ ଅତୁଳନୀୟ । " ପର୍ଯ୍ୟାୟକ୍ରମେ ଏହି ପୂଣ୍ୟପୀଠରେ ପ୍ରତିଭାର ଯେଉଁ ସ୍ଫୁରଣ ହୋଇ ଚାଲିଛି, ତାହା ଅନନ୍ୟ ଏବଂ ଅସାଧାରଣ । ସେଥିପାଇଁ ବୋଧେ ୧୯୧୩ ଖ୍ରୀଷ୍ଟାବ୍ଦରେ "ଉତ୍କଳ ଦୀପିକା"ର ଜୁନ୍ ୧୪ ସଂଖ୍ୟାରେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଯଥାର୍ଥରେ ଲେଖିଥିଲେ - "ଭାଷା, ଆଶା, ଶିକ୍ଷା, ସାହିତ୍ୟ, ସାମାଜିକତା ଇତ୍ୟାଦି ନାନାପ୍ରକାର ବନ୍ଧନରେ, ଏହା ଉତ୍କଳ ସହିତ ଅବିଚ୍ଛେଦ୍ୟ ଭାବରେ ସଂଶ୍ଳିଷ୍ଟ ରହିଅଛି ଏବଂ ଚିରକାଳ ରହିବ । "

ରାଜନୈତିକ ଘଟଣାବଳୀର ଅମର କାହାଣୀରେ ଜୀବନ୍ତ ଏବଂ ସାଂସ୍କୃତିକ ବିକାଶରେ ବଳିଷ୍ଠ, ପାରଳାଖେମୁଣ୍ଡିର ଏହି ଐତିହ୍ୟ ବିଷୟ ଚିନ୍ତା କଲେ ଦେହରେ ରୋମାଞ୍ଚ ଜାତ ହୁଏ । ଓଡ଼ିଆ ଜାତି ବିଶେଷ କରି ଏକବିଂଶ ଶତାବ୍ଦୀରେ ପଦାର୍ପଣ କରିଥିବା ପାରଳାର ଓଡ଼ିଆ ଭାଷୀ ଆଧୁନିକ ଯୁବ ସମ୍ପ୍ରଦାୟ, ସେହି ଗୌରବମୟ ଐତିହ ଦ୍ୱାରା ଅନୁପ୍ରାଣିତ ହୁଅନ୍ତୁ, ଏହା ବିଚାର କରି ପାରଳାର ବହୁ ବିଶିଷ୍ଟ କବି, ଲେଖକ, ଗାୟକ,ସଙ୍ଗୀତଜ୍ଞ ଏବଂ ଶିଳ୍ପୀଙ୍କ ଜୀବନ ବୃତ୍ତାନ୍ତ ଏହି ପୁସ୍ତକରେ ସନ୍ନିବେଶିତ କରାଯାଇଛି।

ବର୍ତ୍ତମାନର ପାରଳା ମହାରାଜା ଶ୍ରୀ ଗୋପୀନାଥ ଗଜପତି ମହୋଦୟ, ଏହି ପୁସ୍ତକର ପାଣ୍ଡୁଲିପିଟି ରାଜନବରରେ କିଛିଦିନ ରଖି, ଆମୂଳଚୂଳ ପାଠ କରି, ନିଜର ଅମୂଲ୍ୟ ମତ ପ୍ରଦାନ କରିଛନ୍ତି । ତାହାଙ୍କ ଅଶେଷ ଶ୍ରଦ୍ଧା ଏବଂ ଆନ୍ତରିକତା, ମୋ ଜୀବନର ଏକ ଅପାଶୋରା ଅନୁଭୂତି ଅଟେ । ଏହି ପୁସ୍ତକର ଅଗ୍ରଲେଖକ, ପୂଜ୍ୟ ଶ୍ରୀ କାଳିପ୍ରସାଦ ମିଶ୍ର ବାବୁଙ୍କୁ ମଧ୍ୟ, ମୁଁ କୃତଜ୍ଞତା ଜ୍ଞାପନ କରୁଛି । ସେ ଅଶେଷ ଶ୍ରମ ସ୍ୱୀକାର କରି, ପାଣ୍ଡୁଲିପିଟି ସଂଶୋଧନ କରିବା ସଙ୍ଗେ ସଙ୍ଗେ, ଏକ "ଅଗ୍ରଲେଖ" ଲେଖିଦେଇ ମୋତେ ଧନ୍ୟ କରିଛନ୍ତି ।

କିନ୍ତୁ ଯେକୌଣସି ପୁସ୍ତକର ଭବିଷ୍ୟତ ପାଠକଙ୍କ ଶ୍ରଦ୍ଧା ଏବଂ ଶୁଭେଚ୍ଛା ଉପରେହିଁ ନିର୍ଭର କରିଥାଏ । ତେଣୁ, ପାଠକଙ୍କ ଶ୍ରଦ୍ଧା ଏବଂ ଶୁଭେଚ୍ଛା ପ୍ରକାଶ ପାଇଲେହିଁ, ପରବର୍ତ୍ତୀ ସମୟରେ ପାରଳା ରାଜବଂଶର ଇତିହାସ ସହ ଅନ୍ୟ କେତେକ ତଥ୍ୟପୂର୍ଣ୍ଣ ସନ୍ଦର୍ଭ ଉପସ୍ଥାପନ କରିବାକୁ ଇଚ୍ଛା କରିଅଛି । ଓଡ଼ିଶାର ସୁଧୀବର୍ଗ ବିଶେଷ କରି ଯୁବ ସମ୍ପ୍ରଦାୟ ମଧ୍ୟରେ ଏହି ପୁସ୍ତକ ଆଦୃତ ହେଉ, ଏହାହିଁ ମୋର ଆନ୍ତରିକ କାମନା ।

ରାଜଦାଣ୍ଡ, ଦିବାକର ପଟ୍ଟନାୟକ
ପାରଳାଖେମୁଣ୍ଡି ।

# ସୂଚିପତ୍ର

# ମହାମାନବ ମହାରାଜା କୃଷ୍ଣଚନ୍ଦ୍ର ଗଜପତି

ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତି, ୧୮୯୨ ଖ୍ରୀଷ୍ଟାବ୍ଦ ବୈଶାଖ ମାସ କୃଷ୍ଣପକ୍ଷ ଅମାବାସ୍ୟା ତିଥିରେ, ସଂସ୍କୃତି, ଐତିହ୍ୟ ଏବଂ ପରମ୍ପରାର ପରାକାଷ୍ଠାରେ ପୁଷ୍ଟ ପାରଳାଖେମୁଣ୍ଡିର ଗଙ୍ଗବଂଶରେ ଜନ୍ମଗ୍ରହଣ କରିଥିଲେ । ଏହାଙ୍କ ପିତାଙ୍କ ନାମ ଶ୍ରୀଗୌରଚନ୍ଦ୍ର ଗଜପତି ଏବଂ ମାତାଙ୍କ ନାମ ଶ୍ରୀମତି ବିଷ୍ଣୁପ୍ରିୟା ଦେବୀ ।

ସେ ମହାରାଜା ଚୋଡ଼ଗଙ୍ଗ ଦେବଙ୍କ ପରି ସ୍ୱୀୟ ଉତ୍ତର ଜୀବନର କାର୍ଯ୍ୟକଳାପ ଦ୍ୱାରା, ବିଚ୍ଛିନ୍ନ ଓଡ଼ିଆ ଭାଷି ଅଞ୍ଚଳ ଗୁଡ଼ିକର ସମିଶ୍ରଣରେ ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିଥିଲେ । ସର୍ବଭାରତୀୟ ସ୍ତରରେ ଓଡ଼ିଆ ଜାତିକୁ ଉନ୍ନତ କରି, ତାକୁ ଏକ ସ୍ୱତନ୍ତ୍ର ସ୍ଥାନ ଦେବାରେ ତାଙ୍କର ଯେଉଁ ଅବଦାନ, ତାହା ଓଡ଼ିଶା ଇତିହାସରେ ଏକ ସ୍ୱତନ୍ତ୍ର ଅଧ୍ୟାୟ ସୃଷ୍ଟି କରିଛି ।

ବାଲ୍ୟକାଳରୁ ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ତାଙ୍କ ପ୍ରତି କାହାର ଅଗୌରବ ସମ୍ଭାଷଣ ସହ୍ୟ କରିପାରୁନଥିଲେ । ଗଙ୍ଗବଂଶର ରାଜପୁରୁଷ ପୌରୁଷ ଯେପରି ରକ୍ତ ସ୍ୱରୂପ ତାଙ୍କ ଧମନିରେ ପ୍ରବାହିତ ହେଉଥିଲା । ଦିନକର ଘଟଣା । ଶ୍ୟାମସୁନ୍ଦର ରାଜଗୁରୁ ରାଜକୁମାରଙ୍କର ଅଙ୍କ ପ୍ରତି ଆଦୌ ଶ୍ରଦ୍ଧା ନଥିବା ଗୃହଶିକ୍ଷକ ଅପନ୍ନା ପଣ୍ଡାଙ୍କ ଠାରୁ ଶୁଣିପାରି, ସେ ଉଦ୍ୟାର୍ଶ କୃଷ୍ଣଚନ୍ଦ୍ରଙ୍କୁ ବଜ୍ର ନିର୍ଘୋଷ ସ୍ୱରରେ କହିଥିଲେ, "ପାଠ ପଢ଼ିବାକୁ ଭଲ ଲାଗୁନି, ମାତ୍ର ମୁନିଗା ଭଜା ଖାଇବାକୁ ଭଲ ଲାଗୁଛି । ଏମିତି ହେଲେ ତମେ କି ରାଜ୍ୟ ପାଳିବ ?" ଏହା ରାଜକୁମାରଙ୍କ ପ୍ରତି ଯଥେଷ୍ଟ ଶାସନ । ଶିକ୍ଷକ ଚାଲିଗଲେ । ତାପରେ ସେ ଅଶ୍ରୁସିକ୍ତ ନୟନ, ଗଦ୍‌ଗଦ୍‌କଣ୍ଠ ଏବଂ ଅଭିମାନ ଭରା ହୃଦୟରେ ନିଜ କର୍ଣ୍ଣ ଭୂଷଣର ହିରାଖଣ୍ଡ ବାହାର କରି ଗିଳି ଦେଇଥିଲେ । ବିଧିପ୍ରେରିତ ଭାବେ, ଅନ୍ତଃପୁରର ଜଣେ ଦାସୀ ତାହା ଦେଖିବାରୁ, ଘଟଣାଟି ରାଜନବରରେ ରାଷ୍ଟ୍ର ହୋଇଯାଇଥିଲା । ମହାରାଜାଙ୍କ ଆଦେଶରେ ସଙ୍ଗେ ସଙ୍ଗେ ଡ଼ାକ୍ତର ପ୍ୟାରେଲାଙ୍କୁ ଡକାଯାଇ ଉଚିତ ପ୍ରତିକାର କରାଗଲା । ଫଳରେ ବାଳକ କୃଷ୍ଣଚନ୍ଦ୍ରଙ୍କ ପ୍ରାଣରକ୍ଷା ହୋଇଥିଲା ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତି ସ୍ଥାନୀୟ ହାଇସ୍କୁଲର ଛାତ୍ର ଥିବା ସମୟରେ ୧୯୦୪ ଖ୍ରୀଷ୍ଟାବ୍ଦରେ ତାଙ୍କର ପିତୃବିୟୋଗ ଘଟିଥିଲା । ସେ ନାବାଳକ ଥିବାରୁ ପାରଳାଖେମୁଣ୍ଡି ଜମିଦାରୀ କୋର୍ଟ ଅଫ୍ ୱାର୍ଡସ୍ ଅଧୀନରେ ରହିଲା ଏବଂ ଉଚ୍ଚଶିକ୍ଷା ପାଇଁ ତାଙ୍କୁ ମାଡ୍ରାଜର ନିଉଙ୍ଗଟନ୍ କଲେଜକୁ ପଠାଯାଇ ସେଠାରେ ଜଣେ ବିଶିଷ୍ଟ ଶିକ୍ଷାବିତ୍ କେମୋରିନ୍ ମରିସନ୍‌କୁ ତାଙ୍କର ଅଭିଭାବକ ଏବଂ ଗୃହଶିକ୍ଷକ ଭାବେ ନିଯୁକ୍ତ କରାଯାଇଥିଲା ।

ନିଉସ୍କଟନ୍ କଲେଜରୁ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇ ସେ ୧୯୧୩ ଖ୍ରୀଷ୍ଟାବ୍ଦରେ ପାରଳାଖେମୁଣ୍ଡି ଫେରି ଆସିଥିଲେ । କିନ୍ତୁ ନିଜ ପିତାଙ୍କ ମୃତ୍ୟୁ ପରଠାରୁ ମାନ୍ଦ୍ରାଜ୍‌ରେ ମରିସନ୍ ସାହେବଙ୍କ ଠାରୁ ସେ ଯେଉଁ ପିତୃତୁଲ୍ୟ ସ୍ନେହ ଏବଂ ପ୍ରେରଣା ପାଇଥିଲେ, ତାହା ତାଙ୍କ ମନରୁ ବିସ୍ମୃତ ହୋଇନଥିଲା । ସେ ମରିସନ୍ ସାହେବଙ୍କ ବ୍ୟକ୍ତିତ୍ୱ ଦ୍ୱାରା ଏତେଦୂର ପ୍ରଭାବିତ ହୋଇଥିଲେଯେ, ୧୯୧୬ ଖ୍ରୀଷ୍ଟାବ୍ଦରେ ପୂଜ୍ୟପୂଜାର ଆଦର୍ଶ ସ୍ୱରୂପ ମରିସନ୍ ଏଜ୍‌ୱେନ୍‌ସନ୍ ନାମକ ଏକ ରମଣୀୟ ଦୋତାଲା ପ୍ରାସାଦ (ବର୍ତ୍ତମାନ କୃଷ୍ଣଚନ୍ଦ୍ର ଗଜପତି କଲେଜ୍‌ର ସାଇନ୍‌ସ୍ ସେକ୍‌ସନ୍) ଭୋୟା ପାହାଡ଼ର ପାଦ ଦେଶରେ ତୋଳାଇଥିଲେ । ମୋଗଲ୍ ସମ୍ରାଟ୍ ଶାହାଜାହାନ୍ ନିଜ ପ୍ରିୟତମାଙ୍କ ସ୍ମୃତିରକ୍ଷା ପାଇଁ ତାଜମହଲ ସୌଧ ନିର୍ମାଣ କରିଥିବା ବିଷୟ ଇତିହାସରେ ଲିପିବଦ୍ଧ, କିନ୍ତୁ କୌଣସି ରାଜା ଶିକ୍ଷାର ପ୍ରସାର ପାଇଁ ନିଜ ଶିକ୍ଷକଙ୍କ ସ୍ମୃତିକୁ ଉଜ୍ଜିବୀତ କରି ରଖିବା ନିମନ୍ତେ ଶିକ୍ଷକଙ୍କ ନାମରେ ଏକ ପ୍ରାସାଦ ନିର୍ମାଣ କରିଥିବା ଇତିହାସର ଅତ୍ୟନ୍ତ ବିରଳ । ៖

୧୯୧୩ ଖ୍ରୀଷ୍ଟାବ୍ଦରେ ତାଙ୍କର ଅଭିଷେକ ଉତ୍ସବ ରାଜନଅରରେ ଅନୁଷ୍ଠିତ ହୋଇଥିଲା । ସେହିଦିନ କୋର୍ଟ ଅଫ୍ ୱାର୍ଡସ୍ ଠାରୁ ମହାରାଜା, ପାରଳାଖେମୁଣ୍ଡି ଜମିଦାରୀର ପରିଚାଳନା ଭାର ଗ୍ରହଣ କରିଥିଲେ । ସେହିବର୍ଷହିଁ ଖରସୁଆଁ ରାଜକନ୍ୟାଙ୍କ ସହ ତାଙ୍କର ବିବାହ, ଅନ୍ୟ ଏକ ବିଶିଷ୍ଟ ଘଟଣା ।

କିନ୍ତୁ ୧୯୨୧ ଖ୍ରୀଷ୍ଟାବ୍ଦ ନଭେମ୍ବର ମାସରେ ରାଣୀଙ୍କ ଅକାଳ ବିୟୋଗ ମହାରାଜାଙ୍କୁ ଦାରୁଣ ଆଘାତ ଦେଇଥିଲା । ସେଣୁ ପୁନଃବିବାହ ପ୍ରସଙ୍ଗକୁ ପ୍ରତ୍ୟାଖ୍ୟାନ କରି, ପ୍ରଜାଙ୍କ ଅଭ୍ୟୁତ୍ଥାନ ପାଇଁ ସେ ନିଜକୁ ବିନିଯୋଗ କରି, କର୍ମ ଯୋଗୀ ଭାବେ ସମୟ ବିତାଇବାକୁ ଶପଥ ନେଇଥିଲେ ।

ଚାରିତ୍ରିକ ଏବଂ ବୌଦ୍ଧିକ ପରିବେଶ ମଧ୍ୟରେ ବିଦ୍ୟାର୍ଥୀ ମାନଙ୍କ ଜୀବନ ଗଢ଼ି ତୋଳିବାକୁ ପାରଳାଖେମୁଣ୍ଡି ଠାରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ବିଭିନ୍ନ ପଦକ୍ଷେପ ଗ୍ରହଣ କରିଥିଲେ । ବିଶିଷ୍ଟ ଶିକ୍ଷାବିତ୍ ମାନଙ୍କୁ ନିଜ ଶିକ୍ଷାନୁଷ୍ଠାନ ମାନଙ୍କରେ ଅଧ୍ୟାପକ ଭାବେ ନିଯୁକ୍ତ କରି, ବିଦ୍ୟାଶିକ୍ଷା ନିମନ୍ତେ ଆଗତ ଛାତ୍ରମାନଙ୍କ ରହଣି ପାଇଁ ସେ ଏକ ଛାତ୍ରାବାସ ନିର୍ମାଣ କରିଥିଲେ । ମହାରାଜାଙ୍କ ବଦାନ୍ୟତାର ଅମୃତମୟ ସ୍ପର୍ଶ ପାଇ ବିନାଶର୍ତ୍ତରେ ବହୁ ଗରୀବ ଛାତ୍ର ଏଠାର ଶିକ୍ଷାନୁଷ୍ଠାନ ମାନଙ୍କରେ ଶିକ୍ଷାଲାଭ କରିଛନ୍ତି । ପିତୃବ୍ୟ ପଦ୍ମନାଭ ଦେବଙ୍କ ନାମରେ ବୋଟିଏ ପାଣି ଗଡ଼ି ସେଥିର ସୁଧରେ

ମହାରାଜା କୃଷ୍ଣଚନ୍ଦ୍ର ଗଜପତି କୃତୀଛାତ୍ରଛାତ୍ରୀ ମାନଙ୍କୁ ବୃତ୍ତିଦାନର ବ୍ୟବସ୍ଥା କରୁଥିଲେ । ଏପରିକି ମହାରାଜାଙ୍କ ପୃଷ୍ଠପୋଷକତା ପାଇ, ଏଠାରୁ ବହୁ କୃତୀଛାତ୍ର ସୁଦୂର ମାଡ୍ରାସ୍ ପ୍ରଭୃତି ଅଞ୍ଚଳରେ ଉଚ୍ଚଶିକ୍ଷା ଲାଭ କରିଛନ୍ତି । ଏଥିରେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ମହାରାଜାଙ୍କର କୌଣସି ପାତ୍ରଅନ୍ତର ବିଚାର ନଥିଲା । ମହାରାଜାଙ୍କ ଏତାଦୃଶ ଶିକ୍ଷାନୁରାଗ, ଶିକ୍ଷାର ପ୍ରସାର ନିମନ୍ତେ ଏକ ବିରାଟ ଅବଦାନ । ପୁଣି ଯେଉଁ ସମୟରେ ନାରୀ ଜାତି ଶିକ୍ଷାର ମୂଲ୍ୟବୋଧକୁ ବୁଝିପାରୁନଥିଲେ, ସେହି ସମୟରେ ନାରୀଶିକ୍ଷାକୁ ପ୍ରୋତ୍ସାହନ ଦେବାପାଇଁ, ସେ ସ୍ଥାନୀୟ ବାଳିକା ବିଦ୍ୟାଳୟର ଛାତ୍ରୀମାନଙ୍କୁ ବିନାଖର୍ଚ୍ଚରେ ଶିକ୍ଷା ଦେବାର ବ୍ୟବସ୍ଥା କରିଥିଲେ । ଆର୍ଯ୍ୟ ପରମ୍ପରା ଦିନକୁ ଦିନ ଅବନତି ହେଉଥିବାରୁ ପ୍ରାଚୀନ ସଂସ୍କୃତ ଶିକ୍ଷାର ପ୍ରସାର ନିମନ୍ତେ, ସ୍ଥାନୀୟ ସଂସ୍କୃତ କଲେଜର ଛାତ୍ରମାନଙ୍କୁ ମଧ୍ୟ ବିନାଖର୍ଚ୍ଚରେ ଶିକ୍ଷା ଦିଆଯାଉଥିଲା ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ଛାତ୍ରମାନଙ୍କ ମାନସିକ ଅଭିବୃଦ୍ଧି ସଙ୍ଗେ ସଙ୍ଗେ ସେମାନଙ୍କ ଶାରିରୀକ ଦିଗ ପ୍ରତି ମଧ୍ୟ ଦୃଷ୍ଟି ରଖୁଥିଲେ । ସେ ଛାତ୍ରାବସ୍ଥାରେ ନିଜକୁ ଜଣେ ଦକ୍ଷ ଖେଳାଳୀ ଭାବେ ପ୍ରତିଷ୍ଠିତ କରି, ପରେ ସେଥିପ୍ରତି ସ୍ଥାନୀୟ ଛାତ୍ରମାନଙ୍କୁ ମଧ୍ୟ ଉତ୍ସାହିତ କରିଥିଲେ । ମୁଖ୍ୟତଃ କ୍ରିକେଟ୍, ବେଡ୍‌ମିଣ୍ଟନ୍ ଏବଂ ଟେନିସ୍ ପ୍ରତି ମହାରାଜାଙ୍କ ପୃଷ୍ଠପୋଷକତା ଅଦ୍ୟାପି କେତେକଙ୍କ ମାନସପଟରୁ ବିସ୍ମୃତ ହୋଇନାହିଁ ।

ମହାରାଜାଙ୍କ ପୃଷ୍ଠପୋଷକତା ଏବଂ ପ୍ରେରଣା ଦ୍ୱାରା ମଧ୍ୟ, ବହୁ କବି,ଲେଖକ, ଗାୟକ, ସଙ୍ଗୀତଜ୍ଞ ଏବଂ ଅଭିନେତା ସ୍ଥାନୀୟ ପଦ୍ମନାଭ ରଙ୍ଗାଳୟରେ ନିଜ ନିଜର ଦକ୍ଷତା ଏବଂ ପ୍ରତିଭାର କ୍ଷେତ୍ର ପ୍ରସାରିତ କରିପାରିଥିଲେ । ଏତଦ୍‌ବ୍ୟତୀତ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ବହୁ ପ୍ରାଚୀନ ପାଣ୍ଡୁଲିପି ସଂଗ୍ରହ କରି ସ୍ଥାନୀୟ ଗଜପତି ପ୍ରେସ୍‌ରେ ପ୍ରକାଶ କରିଛନ୍ତି । ମହାରାଜାଙ୍କ ଆଗ୍ରହ ବିନା ସେହି ପୁସ୍ତକ ଗୁଡ଼ିକ ଲୋକଲୋଚନକୁ ଆସିବା ସମ୍ଭବ ହୋଇନଥାନ୍ତା । ବାଣୀଭଣ୍ଡାରକୁ ସମୃଦ୍ଧି କରିବା ନିମନ୍ତେ, ମହାରାଜାଙ୍କ ଏତାଦୃଶ ଆଗ୍ରହ, ପ୍ରାଚୀନ ଗଙ୍ଗବଂଶ ପରମ୍ପରାର ଏକ ଉଜ୍ଜ୍ୱଳ ନିଦର୍ଶନ ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଗମନାଗମନ ଏବଂ ବାଣିଜ୍ୟ ବ୍ୟବସାୟର ସୁବିଧା ନିମନ୍ତେ ନୌପଡ଼ା-ପାରଳାଖେମୁଣ୍ଡି ରେଲ୍‌ୱେକୁ ଗୁଣୁପୁର ପର୍ଯ୍ୟନ୍ତ ବିସ୍ତୃତ କରାଇଥିଲେ । ଏଠାରେ ଉଲ୍ଲେଖଯୋଗ୍ୟଯେ, ଭାରତବର୍ଷରେ ସେ ଏକମାତ୍ର ଜମିଦାର ଯେକି ଗୋଟିଏ ରେଲ୍‌ୱେ ସଂସ୍ଥାର ଅଧିକାରୀ ଥିଲେ । ନିଜ ଇଷ୍ଟେଟ୍‌ରେ କୃଷିର ଉନ୍ନତି ନିମନ୍ତେ ଜଣେ ଇଞ୍ଜିନିୟର୍‌ଙ୍କୁ ନିଯୁକ୍ତି ଦେଇ ଜଳସେଚନର ପ୍ରସାର ପାଇଁ ମଧ୍ୟ ବିବିଧ ବ୍ୟବସ୍ଥା କରିଥିଲେ । ତରୁଣ ମାନଙ୍କୁ ବୈଷୟିକ ଜ୍ଞାନ ଦେବାପାଇଁ ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ଗୋଟିଏ ଶିଳ୍ପ ବିଦ୍ୟାଳୟ ମଧ୍ୟ

ସ୍ଥାପନ କରିଥିଲେ । ଏତଦ୍‌ବ୍ୟତୀତ, ଆବାସ ଏବଂ ଭୋଜନ ସହ, ପ୍ରତିଦିନ ଅତିଥି ଏବଂ ଅଭ୍ୟାଗତ ମାନଙ୍କୁ ସ୍ଥାନୀୟ ଧର୍ମଶାଳାରେ ତୃପ୍ତ କରାଉଥିଲେ । ଏସବୁ କଲ୍ୟାଣକର କାର୍ଯ୍ୟକ୍ରମ ମହାରାଜାଙ୍କୁ ତାଙ୍କ ରାଜ୍ୟରେ ଏକ ସୁବର୍ଣ୍ଣ ଯୁଗର ସ୍ରଷ୍ଟା ଭାବେ ଆଦୃତ କରିଛି ।

କିନ୍ତୁ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ କାର୍ଯ୍ୟାବଳୀ ମଧ୍ୟରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ତାହାଙ୍କ ଅବଦାନ ସର୍ବଶ୍ରେଷ୍ଠ ବିବେଚିତ ହୁଏ । ରାଜ୍ୟଭାର ଗ୍ରହଣର ଠିକ୍ ପରବର୍ଷ ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ ପାରଳାଖେମୁଣ୍ଡି ଠାରେ କରିବାପାଇଁ ମହାରାଜା ଆହ୍ୱାନ ଦେଇଥିଲେ । ୧୯୧୪ ଖ୍ରୀଷ୍ଟାବ୍ଦ ଡ଼ିସେମ୍ବର ୨୪ ତାରିଖରେ ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ ଜୟପୁର ମହାରାଜା ବିକ୍ରମଦେବ ବର୍ମାଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଥିଲା । ଆଗନ୍ତୁକ ମାନଙ୍କ ପାଇଁ ବସା, ଆହାର ଏବଂ ଯାତାୟତରେ ସର୍ବମୋଟ ଖର୍ଚ୍ଚ ଦଶହଜାର ଟଙ୍କା, ସ୍ୱୟଂ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ବହନ କରିଥିଲେ । ଏହା ମହାରାଜାଙ୍କ ଦେଶପ୍ରେମ ଓ ସଙ୍ଗଠନ ଶକ୍ତିର ଏକ ଉଜ୍ଜ୍ୱଳ ପ୍ରତିଫଳନ । ତେବେଧି, ଚାରୋଟି ବିଭିନ୍ନ ପ୍ରଦେଶରେ ବିଚ୍ଛିନ୍ନ ହୋଇ ରହିଥିବା ଓଡ଼ିଆ ଭାଷାଭାଷି ଅଞ୍ଚଳ ଗୁଡ଼ିକର ଏକତ୍ରିକରଣ ପାଇଁ ସେ ନିଜର ସମସ୍ତ ଶକ୍ତି ଉତ୍ସର୍ଗ କରିଥିଲେ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଦେଶମିଶ୍ରଣ ଅଧ୍ୟାୟର ପ୍ରଥମ ଫଳକ ସ୍ୱରୂପ, ଫିଲିପ୍ ଡ଼ଫ୍ କମିଟି ନିକଟରେ ତାଙ୍କର ନେତୃତ୍ୱ ଏବଂ ପ୍ରସ୍ତାବ ବାସ୍ତବିକ ସ୍ମରଣୀୟ । ୧୯୨୨ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଏବଂ ବିହାର ବ୍ୟବସ୍ଥାପକ ସଭାର ପ୍ରସ୍ତାବ କ୍ରମେ, ଓଡ଼ିଶା ପ୍ରଦେଶରେ ଗଞ୍ଜାମ ଏବଂ ବିଶାଖାପାଟଣା ଜିଲ୍ଲାର ଲୋକଙ୍କ ଏକତ୍ରିକରଣ ପାଇଁ ମତାମତ ଜାଣିବା ଉଦ୍ଦେଶ୍ୟରେ କେନ୍ଦ୍ର ସରକାର, ତତ୍କାଳୀନ ଆଇ.ସି.ଏସ୍ ଅଫିସର୍ ସି.ଏଲ୍.ଫିଲିପ୍ ଏବଂ ଏ.ସି.ଡ଼ଫ୍‌ଙ୍କୁ ନିଯୁକ୍ତି ଦେଇ ଏକ କମିଟି ଗଠନ କରିଥିଲେ । ମହାରାଜାଙ୍କ ନେତୃତ୍ୱ ପ୍ରତି ଏହି କମିଟି ଏତେ ଦୂର ପ୍ରଭାବିତ ହୋଇଥିଲେଯେ, ତାହାଙ୍କ ମତାମତକୁ ଉଚ୍ଚ ସମ୍ମାନ ଦେଇ, ତଦନୁଯାୟୀ କମିଟିର ରିପୋର୍ଟ ପଠାଇଥିଲେ । କମିଟିର ଜଣେ ସଭ୍ୟ ଫିଲିପ୍ ସାହେବ, ମହାରାଜାଙ୍କ ପ୍ରସ୍ତାବ ଏବଂ ନେତୃତ୍ୱର ଉଚ୍ଚ ପ୍ରଶଂସା କରି, ଥରେ ଗୋଟିଏ ସାଧାରଣ ସଭାରେ କହିଥିଲେ - "Our recommendation in the Committee report of 1924 was mostly guided by the views and wishes of the Maharaja of Parlakhemundi." ଏଠାରେ ଉଲ୍ଲେଖଯୋଗ୍ୟଯେ, ମଣ୍ଟେଗୁ ଚେମ୍ସଫୋର୍ଡଙ୍କ ରିପୋର୍ଟ ଅନୁଯାୟୀ, ଭାଷା ସୂତ୍ରରେ ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ପ୍ରଥମେ ଏହି କମିଟି ନିକଟରେ ପ୍ରସ୍ତାବ ଦେଇଥିଲେ । ମହାରାଜାଙ୍କ ଏହି ପ୍ରସ୍ତାବ ଓଡ଼ିଶା ଆନ୍ଦୋଳନକୁ ଏକ ନୂତନ ରୂପ ଦେଇଥିଲା ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଅସାଧାରଣ ବ୍ୟକ୍ତିତ୍ୱ ଫଳରେ ହିଁ କେନ୍ଦ୍ର ସରକାରଙ୍କ

ଦ୍ୱାରା ନିଯୁକ୍ତ ସାଇମନ୍ କମିସନ୍ ସାରା ଭାରତରେ କେବଳ ଓଡ଼ିଆ ମାନଙ୍କ ଠାରୁ ବିପୁଳ ଉତ୍ସାହ ଏବଂ ସମ୍ମାନ ପାଇଥିଲେ । ଅଟ୍ଲି ସବ୍ କମିଟିର ପ୍ରସ୍ତାବ କ୍ରମେ, ୧୯୨୮ ଖ୍ରୀଷ୍ଟାବ୍ଦରେ ଭାରତରେ ସୀମା ସଂଶୋଧନ ପାଇଁ ଏହି ସାଇମନ୍ କମିଶନ୍ ଗଠନ କରାଯାଇଥିଲା । ଏଠାରେ ଉଲ୍ଲେଖଯୋଗ୍ୟଯେ, ଭାରତ ସାରା କଂଗ୍ରେସ୍ ନେତୃବର୍ଗଙ୍କ ଆହ୍ୱାନ କ୍ରମେ ସାଇମନ୍ କମିଶନ୍ ବିରୋଧରେ ପ୍ରତିବାଦ ମାନ ହେଉଥିବା ସମୟରେ, ମହାରାଜାଙ୍କ ନେତୃତ୍ୱରେ ସାଇମନ୍ କମିଶନ୍ ପ୍ରତି ଓଡ଼ିଶାର କଂଗ୍ରେସ୍ କର୍ମୀଙ୍କ ମାନସିକ ପରିବର୍ତ୍ତନ ଘଟାଇଥିଲା । ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ଦେଶାତ୍ମବୋଧରେ ଉଦ୍ବୁଦ୍ଧ ହୋଇ, ଓଡ଼ିଶାର କଂଗ୍ରେସ୍ କର୍ମୀଙ୍କୁ ଆହ୍ୱାନ ଦେଇ କହିଥିଲେ - "Now or never is the problem we are facing. Should we afford to miss the chance of getting justice from the Government? Certainly not. We must have to guard our own interest, or else none will help us." ମହାରାଜାଙ୍କ ଏହି ଓଜସ୍ୱିନୀ ଭାଷଣ ଏବଂ ସମୟୋପଯୋଗୀ ନେତୃତ୍ୱ, ଓଡ଼ିଆ ମାନଙ୍କର ଜାତୀୟ ସ୍ୱାର୍ଥ ପାଇଁ ଜନମତ ଜାଗ୍ରତ କରିବାରେ ସକ୍ଷମ ହୋଇଥିଲା । ଫଳରେ, ଓଡ଼ିଆ ମାନଙ୍କ ପାଇଁ ଭାଷା ସୂତ୍ରରେ ଏକ ପ୍ରଦେଶ ଗଠନ କରାଯିବା ସପକ୍ଷରେ ସାଇମନ୍ କମିଶନ୍ ମତ ଦେଇଥିଲେ ।

୧୯୩୦ ଖ୍ରୀଷ୍ଟାବ୍ଦରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଜଷ୍ଟିସ୍ ପାର୍ଟିର ସଭ୍ୟ ଭାବେ ମାନ୍ଦ୍ରାଜ୍ ବ୍ୟବସ୍ଥାପକ ସଭାକୁ ଗଞ୍ଜାମ ଜିଲ୍ଲାରୁ ନିର୍ବାଚିତ ହୋଇଥିଲେ । ଏହି ଅବସରରେ ଜଣେ ବିଶିଷ୍ଟ ପ୍ରତିନିଧି ଭାବେ, ଭାରତରେ ନୂତନ ସମ୍ବିଧାନ ପ୍ରଣୟନ ପାଇଁ, ଲଣ୍ଡନ୍‌ରେ ହେବାକୁ ଥିବା ଗୋଲ୍‌ଟେବୁଲ୍ ବୈଠକରେ ଯୋଗ ଦେବାକୁ ତାଙ୍କୁ ନିମନ୍ତ୍ରିତ କରାଯାଇଥିଲା । ଓଡ଼ିଆ ମାନଙ୍କ ଦାବୀ ବ୍ରିଟିଶ୍ ପାର୍ଲାମେଣ୍ଟ୍‌ରେ ଉପସ୍ଥାପନ କରିବା ପାଇଁ ମହାରାଜାଙ୍କ ନିକଟରେ ଏହା ଥିଲା ଏକ ଅପୂର୍ବ ସୁଯୋଗ ।

୧୯୩୦ ନଭେମ୍ବର ୧୨ ତାରିଖରୁ ୧୯୩୧ ଜାନୁୟାରୀ ୧୯ ତାରିଖ ପର୍ଯ୍ୟନ୍ତ ପ୍ରଥମ ଗୋଲ୍‌ଟେବୁଲ୍ ବୈଠକ ଅନୁଷ୍ଠିତ ହେଉଥାଏ । କିନ୍ତୁ ମହାରାଜା ଲଣ୍ଡନ୍‌ରେ ପହଞ୍ଚିବା ପୂର୍ବରୁ ବୈଠକ ପାଇଁ କାର୍ଯ୍ୟକ୍ରମର ଚିଠା ପ୍ରସ୍ତୁତ ହୋଇସାରିଥିଲା । ତେଣୁ ଓଡ଼ିଆ ମାନଙ୍କର ଏକ ସ୍ୱତନ୍ତ୍ର ପ୍ରଦେଶ ପାଇଁ ଦାବୀ ଗୋଲ୍‌ଟେବୁଲ୍ ବୈଠକରେ ଉପସ୍ଥାପନ କରିବାପାଇଁ ସେ କେତେକ ବାଧାବିଘ୍ନର ସମ୍ମୁଖୀନ ହୋଇଥିଲେ । କିନ୍ତୁ ମହାରାଜାଙ୍କ ବ୍ୟକ୍ତିଗତ ପ୍ରଭାବ ଦ୍ୱାରା ସେସବୁ ବାଧାବିଘ୍ନ ଅଚିରେ ଦୂରିଭୂତ ହୋଇଥିଲା । ସଭାପତିଙ୍କ ସ୍ୱତନ୍ତ୍ର ଆଦେଶ ହେବା ଫଳରେ, ମହାରାଜା ଓଡ଼ିଶା ପ୍ରଦେଶ ଗଠନ ପାଇଁ ଏକ ପ୍ରସ୍ତାବ ବୈଠକରେ ଆଗତ କରିଥିଲେ । ଏହା ଗୋଲ୍‌ଟେବୁଲ୍ ବୈଠକରେ ଉପସ୍ଥିତ ସମସ୍ତ ସଭ୍ୟଙ୍କୁ ଆଚମ୍ବିତ କରିଥିଲା । ଏହି ଅବସରରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଏକ ଭାଷଣ ଦେଇ କହିଥିଲେ :-"We want a Province

of our own on the basis of language and race to be ourselves a homogeneous unit with feelings of contentment and peace, to realise and be benefited by the projected reforms of India, by both Indian and British politicians, who look forward to the day, when the United States of India will consist of small federated States, based on common language and race. Without a separate province for the ten millions of Oriyas, let me tell you, Sir, that all your labours at this conference to develop Parliamentary institutions in provinces with autonomous power will prove on the contrary, seriously injurious to the Oriyas. X X X"ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସପକ୍ଷରେ ମହାରାଜାଙ୍କ ଦ୍ୱାରା ଉପରୋକ୍ତ ଅକାଟ୍ୟ ଯୁକ୍ତି, ଗୋଲ୍‌ଟେବୁଲ୍ ବୈଠକରେ ଉପସ୍ଥିତ ବ୍ରିଟିଶ୍ ନେତୃବୃନ୍ଦଙ୍କୁ ମଧ୍ୟ ପ୍ରଭାବିତ କରିଥିଲା । ଫଳରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରାଯିବାକୁ ବୈଠକ ଶେଷରେ ସର୍ବସମ୍ମତି କ୍ରମେ ସ୍ଥିର କରାଯାଇଥିଲା।

ଏହି ବିଜୟ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ କ୍ଷତ୍ରିୟୋଚିତ୍ ବୀରଭଙ୍ଗୀ, ବାକ୍‌ପଟୁତା ଏବଂ ବିଚାରଶକ୍ତିର ଏକ ଉଜ୍ଜ୍ୱଳତମ ନିଦର୍ଶନ । ଏହି ପରିପ୍ରେକ୍ଷୀରେ ମହାରାଜାଙ୍କ ନେତୃତ୍ୱର ଉଚ୍ଚ ପ୍ରଶଂସା କରି କଟକ ଠାରେ ହୋଇଥିବା ଉତ୍କଳ ସମ୍ମିଳନୀର ଏକ ବିଶେଷ ଅଧିବେଶନରେ ଉତ୍କଳଗୌରବ ମଧୁସୂଦନ ଦାସ୍ ବକ୍ତବ୍ୟ ଦେଇ କହିଥିଲେ -"We have all been long agitating for our cause by petitons, memorandum, deputation and resoluton. All these availed us nothing. But the personal influence of the Maharaja of Parlakhemundi over Sir Samual Hoare, the Secretary of State and other members of the Round Table Conference worked wonders, as a result of which we have got the announcement of the seperate province for the Oriyas." ଥରେ ଗୋଟିଏ ଭୋଜି ସଭାରେ, ତତ୍‌କାଳିନ ସେକ୍ରେଟାରି ଅଫ୍ ଷ୍ଟେଟ୍ ସାର୍ ସାମୁଏଲ୍ ହୋର୍ ମଧ୍ୟ ମହାରାଜାଙ୍କ ଭୂମିକା ସନ୍ଦର୍ଭରେ ଆଲୋକପାତ କରିବାକୁ ଯାଇ କହିଥିଲେ -"The Maharaja of Parlakhemundi put the case of the Orissa Province at the First Round Table Conference in 1931 and laid stress on it with the result that the British Government came to the conclusion that the time had come to reunite the Oriya speaking areas under their own separate Province and

the Oriya representaton, who pressed their case."ବାସ୍ତବରେ ପ୍ରଥମ ରୋଲ୍‌ଟେବୁଲ୍ ବୈଠକରେ ମହାରାଜାଙ୍କ ବଳିଷ୍ଠ ନେତୃତ୍ୱ ଯୋଗୁଁହିଁ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ଆଶା ସୁଦୃଢ଼ ହୋଇଥିଲା ।

ପ୍ରଥମ ରୋଲ୍‌ଟେବୁଲ୍ ବୈଠକ ପରେ, ୧୯୩୧ ଖ୍ରୀଷ୍ଟାବ୍ଦରେ ସେପ୍‌ଟେମ୍ବର ମାସ ୧୮ ତାରିଖ ଦିନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ସୀମା ନିରୂପଣ ପାଇଁ ସରକାରଙ୍କ ଦ୍ୱାରା ଗୋଟିଏ କମିଟି ଗଠନ କରାଯାଇଥିଲା । ସେହି କମିଟିରେ ଚେୟାର୍‌ମ୍ୟାନ୍ ରୂପେ ଜଣେ ଆଇ.ସି.ଏସ୍ ଅଫିସର୍ ସାର୍.ସାମୁଏଲ୍ ଓଡ଼େନେଲ୍ ନିଯୁକ୍ତ ହୋଇଥିଲେ । ଆସାମର ଟି.ଆର୍.ଫୁକାନ୍ ଏବଂ ବମ୍ବେର ଏଚ୍.ଏମ୍.ମେହେଟ୍ଟା କମିଟିର ଅନ୍ୟତମ ସଭ୍ୟ ଥିଲେ । ଓଡ଼ିଆଙ୍କ ପକ୍ଷରୁ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଏବଂ ତେଲେଙ୍ଗାଙ୍କ ପକ୍ଷରୁ ସି.ଭି,ଏସ୍.ନରସିଂହ ରାଜୁଙ୍କୁ କମିଟିର ସହଯୋଗୀ ସଭ୍ୟ ରୂପେ ମନୋନୀତ କରାଯାଇଥାଏ । ଗଞ୍ଜାମ ଜିଲ୍ଲାର ଗୋପାଳପୁର ଠାରେ ଓଡ଼େନେଲ୍ କମିଟି ପକ୍ଷରୁ ସାକ୍ଷ୍ୟ ଗ୍ରହଣ କରାଯିବାକୁ ଠିକ୍ ହୋଇଥାଏ । ମହାରାଜାଙ୍କ ନିର୍ଦ୍ଦେଶରେ ପାରଳାଖେମୁଣ୍ଡି ଏବଂ ଜୟପୁର ଜମିଦାରୀର ବହୁ ବିଶିଷ୍ଟ ମୁଖପାତ୍ର ସାକ୍ଷ୍ୟ ଦେବାକୁ ଆସିଥିଲେ । ଏପରିକି କେତେକ ବିଶିଷ୍ଟ ମୁଖପାତ୍ର ତେଲେଙ୍ଗା ହୋଇ ସୁଦ୍ଧା, ସେମାନେ ଓଡ଼ିଶାରେ ରହିବା ସପକ୍ଷରେ ମତ ଦେଇଥିଲେ । କମିଟିର ଦୁଇଜଣ ଭାରତୀୟ ସଭ୍ୟ ମୁଖପାତ୍ରମାନଙ୍କ ସଂଖ୍ୟାଗରିଷ୍ଠ ମତକୁ ଗ୍ରହଣ କରି ଓଡ଼ିଶାପ୍ରଦେଶରେ ପାରଳାଖେମୁଣ୍ଡି ଏବଂ ଜୟପୁର ଜମିଦାରୀ ମିଶ୍ରଣକୁ ସମ୍ମତି ଜଣାଇଥିଲେ। କିନ୍ତୁ କମିଟିର ଚେୟାର୍‌ମ୍ୟାନ୍ ସାର୍.ସାମୁଏଲ୍ ଓଡ଼େନାଲ୍, କେତେକ ମୁଷ୍ଟିମେୟଙ୍କ କୁମନ୍ତ୍ରଣା ଏବଂ ଚକ୍ରାନ୍ତ ଦ୍ୱାରା ଭାରତୀୟ ସଭ୍ୟଦ୍ୱୟଙ୍କ ମତକୁ ଆଗ୍ରାହ୍ୟ କରି, ଏକପକ୍ଷ ଭାବେ ରିପୋର୍ଟରେ ପାରଳାଖେମୁଣ୍ଡି ଏବଂ ଜୟପୁର ଜମିଦାରୀକୁ ପ୍ରସ୍ତାବିତ ଓଡ଼ିଶା ପ୍ରଦେଶରୁ ବାଦ୍ ଦେଇଥିଲେ । ସେହି ପରିସ୍ଥିତିରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ଦକ୍ଷିଣ ଓଡ଼ିଶାବାସୀଙ୍କୁ ଆଶ୍ୱାସନା ଦେଇ, ବହୁ ବାଧାବିଘ୍ନର ସମ୍ମୁଖୀନ ହୋଇ ସୁଦ୍ଧା ନିଜର କର୍ମପଥରୁ ଓହରି ଯାଇନଥିଲେ ।

୧୯୩୨ ଖ୍ରୀଷ୍ଟାବ୍ଦ, ଅଗଷ୍ଟ ମାସରେ ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁର ଠାରେ ଉତ୍କଳ ସମ୍ମିଳନୀର ଏକ ଜରୁରୀ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଏହି ଅଧିବେଶନରେ, ସୀମା ସରହଦ୍ ସମ୍ପର୍କୀୟ ରିପୋର୍ଟକୁ ବିରୋଧ କରି ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ନେତୃତ୍ୱରେ ଏକ ପ୍ରତିନିଧି ଦଳ ଭାରତରେ ବଡ଼ଲାଟ ଲର୍ଡ୍ ଓ୍ୱିଲିଙ୍ଗଡ଼ନ୍‌ଙ୍କୁ ସାକ୍ଷାତ କରିବାକୁ ସ୍ଥିର କରାଯାଇଥିଲା । ୧୯୩୨ ଖ୍ରୀଷ୍ଟାବ୍ଦ ସେପ୍‌ଟେମ୍ବର ମାସ ୧୨ ତାରିଖ ଦିନ ପ୍ରତିନିଧି ଦଳର ନେତା ଭାବେ, ମହାରାଜା ବଡ଼ଲାଟଙ୍କ ସହ ସିମଳା ଠାରେ ଆଲୋଚନା କରିଥିଲେ । ଏହି ଆଲୋଚନାରେ ବଡ଼ଲାଟଙ୍କ ମନୋଭାବ ଖୁବ୍ ଉତ୍ସାହପ୍ରଦ ଥିଲା । ନିଃସନ୍ଦେହ ଭାବେ ତାହା ମହାରାଜାଙ୍କ ବ୍ୟକ୍ତିତ୍ୱର ତୁଳନୀୟ ଶକ୍ତି ମାତ୍ର । ମହାରାଜାଙ୍କ ଯୁକ୍ତିର ସତ୍ୟତା ଉପଲବ୍‌ଧି କରି, ବଡ଼ଲାଟ,

ସେକ୍ରେଟାରି ଅଫ୍ ଷ୍ଟେଟ୍‌ଙ୍କ ନିକଟକୁ ପ୍ରସ୍ତାବିତ ଓଡ଼ିଶାପ୍ରଦେଶରେ ପାରଳାଖେମୁଣ୍ଡି ଏବଂ ଜୟପୁର ଜମିଦାରୀର ମିଶ୍ରଣ ସମ୍ବନ୍ଧରେ ପୁନର୍ବିଚାର କରିବାକୁ ଏକ ସରକାରୀ ପତ୍ର ଲେଖି ଜଣାଇଥିଲେ । ନିଶ୍ଚିତ ଭାବେ, ଏହା ଦକ୍ଷିଣ ଓଡ଼ିଶାବାସୀଙ୍କ ମନରେ ଆଶାର ସଞ୍ଚାର କରିଥିଲା ।

କିନ୍ତୁ କିଛିମାସ ପରେ ଦକ୍ଷିଣ ଓଡ଼ିଶାବାସୀଙ୍କ ଆଶା ପୁଣି ଏକ ନିରାଶାରେ ପରିଣତ ହୋଇଥିଲା । ଭାରତର ବଡ଼ଲାଟ ଲର୍ଡ ୱିଲିଙ୍ଗଡ଼ନ୍‌ଙ୍କ ପ୍ରସ୍ତାବର ପୁନର୍ବିଚାରତ ଦୂରର କଥା, ୧୯୩୩ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ୧୨ ତାରିଖ ଦିନ ପାରଳାଖେମୁଣ୍ଡି ଏବଂ ଜୟପୁର ଜମିଦାରୀ ବାଦ୍ ଦେଇ ଓଡ଼ିଶାପ୍ରଦେଶ ଗଠନ ବିଷୟ ଶ୍ୱେତପତ୍ରରେ ପ୍ରକାଶ ପାଇଲା । ଏହି ଜରୁରୀ ପଦକ୍ଷେପ ମୂଳରେ, କେତେକ ସ୍ୱାର୍ଥାନ୍ୱେଷୀ ବ୍ୟକ୍ତିଙ୍କ ସ୍ୱାର୍ଥରକ୍ଷା ଉଦ୍ୟମଯେ ନିହିତ ଥିଲା, ତାହା ନିଃସନ୍ଦେହ । କିନ୍ତୁ ଏହି ବିଘ୍ନ ଖଣ୍ଡନ ପାଇଁ ମହାରାଜାଙ୍କ ପରବର୍ତ୍ତୀ ପର୍ଯ୍ୟାୟ ଆନ୍ଦୋଳନ, ତାଙ୍କ ଜୀବନର ଏକ ଅବିସ୍ମରଣୀୟ ଘଟଣା ।

କଟକର କେଇଁଥର କୋଠିରେ ଉତ୍କଳ ସମ୍ମିଳନୀର ଏକ ସ୍ୱତନ୍ତ୍ର ଅଧିବେଶନ ଡ଼କାଯାଇଥିଲା । ପାରଳାଖେମୁଣ୍ଡି ଏବଂ ଜୟପୁର ଜମିଦାରୀ ବାଦ୍ ଦେଇ ଘୋଷିତ ଓଡ଼ିଶାପ୍ରଦେଶକୁ ଗ୍ରହଣ କରାଯିବ କି ନାହିଁ ଏହି ସମ୍ବନ୍ଧରେ ସମ୍ମିଳନୀରେ ଆଲୋଚନା ହୋଇଥିଲା । ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଅଭିମତ ପ୍ରକାଶ କରି କହିଥିଲେ -"ଘୋଷିତ ପ୍ରଦେଶକୁ ଗ୍ରହଣ କଲାପରେ ଆନ୍ଦୋଳନ କରି ବିଚ୍ଛିନ୍ନାଞ୍ଚଳକୁ ଓଡ଼ିଶା ସହିତ ମିଶାଇବାକୁ ଯେଉଁମାନେ କଳ୍ପନା କରୁଛନ୍ତି, ତାହା ସେମାନଙ୍କର କଳ୍ପନାରେହିଁ ରହିଯିବ । ପ୍ରଦେଶ ଗ୍ରହଣ କଲାପରେ, ଇଞ୍ଚେ ସୁଦ୍ଧା ଭୂମି ବିଚ୍ଛିନ୍ନାଞ୍ଚଳରୁ ଆଣି ନିଜ ପ୍ରଦେଶରେ ମିଶାଇବା ସାମର୍ଥ କେଉଁ ପୁରୁଷ ସିଂହର ଥିଲେ, ସେ ଛାତିରେ ହାତ ଦେଇ ତାହା ଏଠାରେ କହିପାରିବେ କି? " ମହାରାଜାଙ୍କର ଏହି ବିରତ୍ୱବଞ୍ଚକ ଭାଷଣ ଫଳରେ, ଘୋଷିତ ଓଡ଼ିଶା ପ୍ରଦେଶକୁ ଗ୍ରହଣ କରାଯାଇନଥିଲା । ମହାରାଜା ପୁଣି ଲଣ୍ଡନ୍ ଯାଇ ପୂର୍ଣ୍ଣାଙ୍ଗ ପ୍ରଦେଶ ପାଇଁ ଚେଷ୍ଟା କରିବାକୁ ସମ୍ମିଳନୀରେ ଏକ ପ୍ରସ୍ତାବ ଆଗତ କରାଯାଇଥିଲା ।

ସମ୍ମିଳନୀର ପ୍ରସ୍ତାବ ଗ୍ରହଣ କରି, ଆଶା ଏବଂ ଆଶଙ୍କା ମଧ୍ୟରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ମନଟି ସର୍ବଦା ବିଚଳିତ ହେଉଥାଏ । ଦିନେ ଇଷ୍ଟଦେବୀ ମାଣିକେଶ୍ୱରୀ ମହାରାଜାଙ୍କୁ ସ୍ୱପ୍ନରେ ଦେଖାଦେଇ କହିଥିଲେ, "ବାବୁ, ପୁଣି ଯାଇ ଚେଷ୍ଟା କର, କାର୍ଯ୍ୟ ସଫଳ ହେବ ।" ଏହି ଶୁଭ ସ୍ୱପ୍ନ ଭଙ୍ଗ ହେବାପରେ, ବାଧାବିଘ୍ନ ସତ୍ତ୍ୱେ, ନିଜ ବିଜୟର ନିଶ୍ଚିତ ସମ୍ଭାବନା ଥିବା ମନେ କରି, ଘୋଷିତ ପ୍ରଦେଶରେ ବିଚ୍ଛିନ୍ନାଞ୍ଚଳର ମିଶ୍ରଣ ପାଇଁ ୧୯୩୩ ଖ୍ରୀଷ୍ଟାବ୍ଦ ମଇ ମାସରେ ମହାରାଜା କ୍ଷତ୍ରିୟୋଚିତ ବିରୋଲ୍ଲାସରେ ଲଣ୍ଡନ ଯାତ୍ରା କରିଥିଲେ ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଲଣ୍ଡନ୍ ଯିବା ପରେ, କଟକର କେଉଁଝର କୋଠୀରେ ଗୃହିତ ପ୍ରସ୍ତାବ ବିରୁଦ୍ଧରେ ଘୋଷିତ ପ୍ରଦେଶର ସପକ୍ଷବାଦିଙ୍କ ମଧ୍ୟରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା । ଜୟପୁର ଏବଂ ପାରଳାଖେମୁଣ୍ଡି ବାଦ୍ ଦେଇ ଘୋଷିତ ଓଡ଼ିଶା ପ୍ରଦେଶ ଗ୍ରହଣ କରାଯିବ ବୋଲି ଦଳେ ସେକ୍ରେଟାରି ଅଫ୍ ଷ୍ଟେଟ୍‌ଙ୍କ ନିକଟକୁ ସ୍ମାରକପତ୍ର ମାନ ପଠାଉଥିବା ବେଳେ, ଅନ୍ୟ ଦଳେ ଜୟପୁର ମହାରାଜା ଓଡ଼ିଶାରେ ତାଙ୍କ ଜମିଦାରୀ ମିଶିବା ପାଇଁ ରାଜି ନୁହନ୍ତି ବୋଲି କେବଲ୍ ମାନ ପଠାଉଥାନ୍ତି । ଅନ୍ୟଦିଗରେ,ମାନ୍ଦ୍ରାଜ୍ ପ୍ରଦେଶରେ ଥିବା ଅଣ ଓଡ଼ିଆ ମାନଙ୍କ ପକ୍ଷରୁ ମଧ୍ୟ ଚାପ ପଡୁଥାଏ । ଲଣ୍ଡନରେ ଏକକି ସେହି ବିଷମ ପରିସ୍ଥିତିର ସମ୍ମୁଖୀନ ହୋଇ, ମହାଭାରତ ଯୁଦ୍ଧରେ ଅଭିମନ୍ୟୁଙ୍କ ଭଳି ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଯେଉଁ ଆତ୍ମବିଶ୍ୱାସ, ଧୈର୍ଯ୍ୟ ଏବଂ ବୀରତ୍ୱ ପ୍ରଦର୍ଶନ କରିଥିଲେ, ତାହାର ଦୃଷ୍ଟାନ୍ତ ଅନ୍ୟତ୍ର ବିରଳ ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତି କୌଣସି ଅଧାପନ୍ତରିଆ ଉଦ୍ୟମକୁ ପସନ୍ଦ କରୁନଥିଲେ । ଜିଦ୍ ଧରି କାର୍ଯ୍ୟ ହାସଲ କରିବା ତାଙ୍କର ଏକ ମହତ୍ ଗୁଣ ଥିଲା । ଏପରିକି "ଜୟପୁର ଏବଂ ପାରଳାଖେମୁଣ୍ଡି ଜମିଦାରୀର ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଗୁଡ଼ିକ ଓଡ଼ିଶାରେ ନମିଶିଲେ, ସେ ସ୍ୱଦେଶକୁ ଫେରିବେ ନାହିଁ" ବୋଲି ଲଣ୍ଡନ୍ ଠାରେ ଦୃଢ଼ମତ ଦେଇଥିଲେ । ମହାରାଜାଙ୍କ ଏହି କୋଠର ନିର୍ଣ୍ଣୟ ଏବଂ ନିଷ୍ପାପର ଉଦ୍ୟମ ବ୍ରିଟିଶ୍ କର୍ତ୍ତୃପକ୍ଷଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା । ଫଳରେ ଜଏଣ୍ଟ୍ ସିଲେକ୍ଟ୍ କମିଟିରେ ଓଡ଼ିଶା ପ୍ରସଙ୍ଗର ପୁନର୍ବିଚାର କରାଯାଇଥିଲା । ବିଧିପ୍ରେରିତ ଭାବେ ମହାରାଜାଙ୍କ ଜଣେ ସହଯୋଗୀ ଲର୍ଡ ଲିଙ୍ଲିଥ୍‌ଗୋ ସେହି କମିଟିର ଚେୟାର୍‌ମ୍ୟାନ୍ ଥାଆନ୍ତି । ସେହି ଅବସରରେ ମହାରାଜା ନିଜର ବ୍ୟକ୍ତିଗତ ପ୍ରଭାବ ବିସ୍ତାର କରିବାକୁ ସୁଯୋଗ ପାଇଥିଲେ ଓଡ଼ିଆ ଭାଷା ଏବଂ ଲୋକସଂଖ୍ୟା ଭିତ୍ତିରେ ଜୟପୁର ଏବଂ ପାରଳାଖେମୁଣ୍ଡି ଜମିଦାରୀର ଏକ ମାନଚିତ୍ର ପ୍ରସ୍ତୁତ କରି ଏକ ସ୍ମାରକ ପତ୍ର ସହ, ମହାରାଜା ତାହା ଜଏଣ୍ଟ୍ ସିଲେକ୍ଟ୍ କମିଟିରେ ଉପସ୍ଥାପନ କରିଥିଲେ । ମହାରାଜାଙ୍କ ଦାବି କମିଟିର ସମସ୍ତ ସଭ୍ୟଙ୍କ ଦ୍ୱାରା ଯୁକ୍ତିଯୁକ୍ତ ବିବେଚିତ ହୋଇଥିଲା । ଫଳରେ, କେତେକ ଗୋଷ୍ଠୀଙ୍କ ବିରୋଧ ସତ୍ତ୍ୱେ ଜୟପୁର ଏବଂ ପାରଳାଖେମୁଣ୍ଡି ଜମିଦାରୀର ଓଡ଼ିଆ ଭାଷାଭାଷି ଅଞ୍ଚଳ ଘୋଷିତ ଓଡ଼ିଶା ପ୍ରଦେଶରେ ସ୍ଥାନ ପାଇଲା । ଏହା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ବିରାଟ ବ୍ୟକ୍ତିତ୍ୱ ଯୋଗୁଁହିଁ ସମ୍ଭବ ହୋଇପାରିଥିଲା ।

୧୯୩୬ ଖ୍ରୀଷ୍ଟାବ୍ଦ ଏପ୍ରେଲ୍ ପହିଲା ଦିନ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠିତ ହେଲା । ତାପରେ ୧୯୩୫ ଭାରତ ଶାସନ ଆଇନ୍ ଅନୁଯାୟୀ ଯେଉଁ ସାଧାରଣ ନିର୍ବାଚନ କରାଯାଇଥିଲା, ସେଥିରେ କଂଗ୍ରେସ୍ ଦଳ ସଂଖ୍ୟା ଗରିଷ୍ଠତା ଲାଭକଲା । କିନ୍ତୁ କଂଗ୍ରେସ୍ ଦଳ ରାଜ୍ୟପାଳଙ୍କ ସ୍ୱତନ୍ତ୍ର କ୍ଷମତାକୁ ବିରୋଧ କରି, ଓଡ଼ିଶାର ମନ୍ତ୍ରୀମଣ୍ଡଳ ଗଠନ କରିବାକୁ ରାଜି ହୋଇନଥିଲେ । ଫଳରେ ନେସେନାଲିଷ୍ଟ୍ ପାର୍ଟିର ନେତା ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ଜାତି

ପ୍ରତି ନିଜର କର୍ତ୍ତବ୍ୟ ଦୃଷ୍ଟିରୁ ୧୯୩୭ ଖ୍ରୀଷ୍ଟାବ୍ଦ ଏପ୍ରେଲ୍ ପହିଲା ଦିନ ଓଡ଼ିଶାର ପ୍ରଥମ ମନ୍ତ୍ରୀମଣ୍ଡଳ ଗଠନ କରିଥିଲେ । ଏହି ମନ୍ତ୍ରୀମଣ୍ଡଳର ଅନ୍ୟ ଦୁଇଜଣ ମନ୍ତ୍ରୀ ଥିଲେ - ମାନ୍ଧାତା ଗୋରାଚାନ୍ଦ ପଟ୍ଟନାୟକ ଏବଂ ଲତିଫୁର୍ ରହମାନ୍ । କିନ୍ତୁ ମନ୍ତ୍ରୀମଣ୍ଡଳ ପୁନର୍ଗଠିତ ହେବା ଫଳରେ, ୧୯୩୭ ଖ୍ରୀଷ୍ଟାବ୍ଦ ଜୁଲାଇ ୧୩ ତାରିଖ ଦିନ ଏହି ମନ୍ତ୍ରୀମଣ୍ଡଳର ଅବସାନ ଘଟିଲା । ତଥାପି ଏଠାରେ ଉଲ୍ଲେଖଯୋଗ୍ୟ, ଏହି ମନ୍ତ୍ରୀମଣ୍ଡଳ ସମୟରେହିଁ ଓଡ଼ିଶାରେ ବିଶ୍ୱବିଦ୍ୟାଳୟ ଖୋଲିବା ପାଇଁ ମହାରାଜାଙ୍କ ଦ୍ୱାରା ସର୍ବପ୍ରଥମ ଚେଷ୍ଟା କରାଯାଇଥିଲା ।

କଂଗ୍ରେସ୍ ଦଳର ଦାବୀ ସରକାର ମାନି ନେବା ଫଳରେ, ଓଡ଼ିଶାର ଦ୍ୱିତୀୟ ମନ୍ତ୍ରୀମଣ୍ଡଳ ଶ୍ରୀଯୁକ୍ତ ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ ଗଠନ କରାଯାଇଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ କଂଗ୍ରେସ୍ ଦଳ ପକ୍ଷରୁ ଅସହଯୋଗର ଆହ୍ୱାନ କ୍ରମେ, ଏହି ମନ୍ତ୍ରୀମଣ୍ଡଳର ମଧ୍ୟ ଅବସାନ ଘଟିଥିଲା । କିନ୍ତୁ ପଣ୍ଡିତ ନୀଳକଣ୍ଠ ଦାସ୍ ପ୍ରଭୃତି କେତେକ କଂଗ୍ରେସ୍ କର୍ମୀ, ଓଡ଼ିଶାର ଜାତୀୟ ସ୍ୱାର୍ଥକୁ ଅଗ୍ରାଧିକାର ଦେଇ, କଂଗ୍ରେସ୍ ଦଳ ପକ୍ଷରୁ ଆହୂତ ଅସହଯୋଗକୁ ସମର୍ଥନ କରିନଥିଲେ । ଫଳରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ନେତୃତ୍ୱରେ ୧୯୪୧ ଖ୍ରୀଷ୍ଟାବ୍ଦ ନଭେମ୍ବର ୩ ତାରିଖରେ ଓଡ଼ିଶାର ତୃତୀୟ ମନ୍ତ୍ରୀମଣ୍ଡଳ ଗଠନ କରାଯାଇଥିଲା । ଏହି ମନ୍ତ୍ରୀମଣ୍ଡଳର ଅନ୍ୟଦୁଇଜଣ ମନ୍ତ୍ରୀ ଥିଲେ - ଗୋଦାବରୀଶ୍ ମିଶ୍ର ଏବଂ ମୌଲବୀ ଶୋଭନ ଖାଁ । ଏହିପରି ଭାବେ, ୧୯୪୪ ଖ୍ରୀଷ୍ଟାବ୍ଦ ଜୁନ୍ ମାସ ପର୍ଯ୍ୟନ୍ତ, ଓଡ଼ିଶା ଶାସନକଳର ସମସ୍ତ ଅସ୍ୱାଭାବିକ ପରିସ୍ଥିତି ସତ୍ତ୍ୱେ, ମହାରାଜାଙ୍କ ନେତୃତ୍ୱହିଁ ଓଡ଼ିଆ ଜାତିର ପ୍ରାଣରେ ନବଜୀବନ ସଞ୍ଚାର କରିଥିଲା।

ଏହି ମନ୍ତ୍ରୀମଣ୍ଡଳ ସମୟର ଶ୍ରେଷ୍ଠ ଅବଦାନ ଗୁଡ଼ିକ ମଧ୍ୟରେ କଟକର କେନ୍ଦ୍ରୀୟ ଧାନ ଗବେଷଣା ପ୍ରତିଷ୍ଠାନ ଅନ୍ୟତମ। ଆଜି ସେହି ଗବେଷଣା ପ୍ରତିଷ୍ଠାନ, ଓଡ଼ିଶାକୁ ଭାରତ ମାନଚିତ୍ରରେ ଏକ ସାର୍ଥକ ସ୍ଥାନ ପ୍ରଦାନ କରିପାରିଛି ।

କଟକର ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ୍ କଲେଜ୍ ଏହି ସମୟର ଅନ୍ୟତମ ଶ୍ରେଷ୍ଠ ଅବଦାନ । ଓଡିଶାରେ ମେଡ଼ିକାଲ୍ କଲେଜ୍ ନଥିବା ସମୟରେ, ଏହା ମହାରାଜାଙ୍କ ମନ୍ତ୍ରୀମଣ୍ଡଳର ଏକ ସମୟୋପଯୋଗୀ ପଦକ୍ଷେପ ।

ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା, ମହାରାଜାଙ୍କ ସ୍ୱପ୍ନର ଅନ୍ୟ ଏକ ସାର୍ଥକ ରୂପାୟନ । ଏହା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟର ଏକ ଉଜ୍ଜ୍ୱଳ କୀର୍ତ୍ତି ସ୍ତମ୍ଭ କହିଲେ ଅତ୍ୟୁକ୍ତି ହେବ ନାହିଁ । ୧୯୪୩ ଖ୍ରୀଷ୍ଟାବ୍ଦ ଜୁନ୍ ମାସ ୩୦ ତାରିଖରେ ଓଡ଼ିଶା ବିଶ୍ୱବିଦ୍ୟାଳୟ ବିଲ୍, ବିଧାନସଭାରେ ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା । ସେହିଦିନ ବିଧାନସଭା ଗୃହରେ ମହାରାଜା ଯେଉଁ ବକ୍ତବ୍ୟ ଦେଇଥିଲେ,ସେଥିରୁ ତାଙ୍କ ଦୂରଦୃଷ୍ଟି ଏବଂ ବିଚକ୍ଷଣତାର ସ୍ପଷ୍ଟ ପରିଚୟ

ମିଳେ । ବାସ୍ତବରେ ମହାରାଜାଙ୍କ ପରି ଶିକ୍ଷାନୁରାଗୀ ଅନ୍ୟତ୍ର ବିରଳ । ଏହାର ନିଦର୍ଶନ ସ୍ୱରୂପ, ମୁଖ୍ୟମନ୍ତ୍ରୀ ଥିବା ସମୟରେ, ମହାରାଜା ନିଜର ସମସ୍ତ ଦରମା ଏବଂ ଗୁପ୍ତଖର୍ଚ୍ଚ, ଉତ୍କଳ ବିଶ୍ୱବିଦ୍ୟାଳୟର ବିକାଶ ପାଇଁ ଦାନ କରିଥିଲେ । ମହାରାଜାଙ୍କ ଏତାଦୃଶ ନିଃସ୍ୱାର୍ଥପର ସେବା ଏବଂ ତ୍ୟାଗ ଓଡ଼ିଆ ଜାତିର ମାନସପଟରୁ କଦାପି ବିସ୍ମୃତ ହେବନାହିଁ ।

ଏଠାରେ ସ୍ମରଣ କରାଯାଇପାରେ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଯେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ, ରାଷ୍ଟ୍ରଖର୍ଚ୍ଚରେ ନିଜ ଇଷ୍ଟେଟ୍ ପାଇଁ କିଛି କରିନଥିଲେ । କାରଣ, ମୁଖ୍ୟମନ୍ତ୍ରୀ ଭାବେ କେବଳ ପାରଳାଖେମୁଣ୍ଡି ନୁହଁ, ସେ ଥିଲେ ସମଗ୍ର ଓଡ଼ିଶାର ସେବକ । ଦିନକର ଘଟଣା । ପାରଳାଖେମୁଣ୍ଡି ନିକଟସ୍ଥ କାଶୀନଗରର ଗୋଟିଏ ସଭାରେ ଯୋଗ ଦେବାପାଇଁ ମହାରାଜା ନିଜ କାର୍‌ରେ ଯାଉଥାନ୍ତି । ତାଙ୍କ ସଙ୍ଗରେ ବସିଥାନ୍ତି ଐତିହାସିକ ସତ୍ୟନାରାୟଣ ରାଜଗୁରୁ । ରାସ୍ତାର ଅବସ୍ଥା ଖରାପ ଥିବା ଯୋଗୁଁ କାର୍‌ଟି ଢ଼ଳିଢ଼ଳି ଯାଉଥାଏ । ସ୍ୱୟଂ ମହାରାଜା ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାଉଥାଉ ନିଜ ଘର ପାଖ ରାସ୍ତାର ଅବସ୍ଥା ଏହିପରି ଥିବାରୁ, ରାଜଗୁରୁ ସେଥିପ୍ରତି ମହାରାଜାଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ମହାରାଜା ହସିଦେଇ ପ୍ରଶ୍ନ କରିଥିଲେ - "ଏହି ରାସ୍ତାରେ ଗାଡ଼ି ଚାଲୁଛି, କିନ୍ତୁ ଓଡ଼ିଶାରେ ଅନେକ ରାସ୍ତା ଅଛି, ଯେଉଁଠି ଗୋଡ଼ବି ଚାଲିବନି, କାହାକୁ ଆଗ ସଜାଡ଼ିବା ?" ଏହାଶୁଣି ରାଜଗୁରୁ, ମସ୍ତକ ନତ କରି ନୀରବ ରହିଥିଲେ। ସେହିଦିନ ସେ ବୁଝିଥିଲେ, କୌଣସି ଆଞ୍ଚଳିକତା ଏବଂ ପାତ୍ରଅପାତ୍ର ବିଚାର ଠାରୁ ମହାରାଜାଙ୍କ ଆଦର୍ଶ କିପରି ବହୁ ଊର୍ଦ୍ଧ୍ୱରେ । ଓଡ଼ିଆ ଜାତିର ସେବା ପାଇଁ ପ୍ରେରଣାହିଁ ମହାରାଜାଙ୍କୁ ଏହି ନୈତିକ ଶକ୍ତିର ଅଧିକାରୀ କରିଥିଲା ।

ଜଣେ ଭାରତୀୟ ଭାବେ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ଦେଶସେବାର ଉଚ୍ଚତମ ଆଦର୍ଶ ମଧ୍ୟ ଦେଶବାସୀଙ୍କ ସମ୍ମୁଖରେ ଉପସ୍ଥାପିତ କରିଥିଲେ । ପାରଳାଖେମୁଣ୍ଡି ଇଷ୍ଟେଟ୍‌ର ଦାୟିତ୍ୱ ଗ୍ରହଣ କରିବା ପ୍ରାରମ୍ଭରେ, ପ୍ରଥମ ବିଶ୍ୱଯୁଦ୍ଧ (୧୯୧୪-୧୯୧୮)ର ବିଭିଷିକା, ମହାରାଜାଙ୍କୁ ଦେଶସେବା ପାଇଁ ଆହ୍ୱାନ ଦେଇଥିଲା । ଫଳରେ, ସେ ଯୁଦ୍ଧଭୂମି ପାଇଁ ସୈନିକ ସଂଗ୍ରହ କରିବାକୁ ସମୟୋଚିତ୍ ପଦକ୍ଷେପ ଗ୍ରହଣ କରିଥିଲେ । ସ୍ୱୟଂ ମହାରାଜା ମଧ୍ୟ ଅବୈତନିକ କମିଶନର୍ ଭାବେ ବ୍ରିଟିଶ୍ ସେନା ବାହିନୀର ଅନ୍ତର୍ଭୁକ୍ତ ହୋଇଥିଲେ । ସେହି ସମୟରେ ଯୁଦ୍ଧପାଣ୍ଠିକୁ ମହାରାଜାଙ୍କର ୩ ଲକ୍ଷ ୧୦ ହଜାର ଟଙ୍କା ଦାନ ବାସ୍ତବିକ ସ୍ମରଣୀୟ । ମହାରାଜାଙ୍କର ଏହି କ୍ଷତ୍ରିୟୋଚିତ୍ ଦାମିକତା ଏବଂ ବଦାନ୍ୟତା ସମସ୍ତ ଦେଶବାସୀଙ୍କୁ ମୁଗ୍ଧ କରିଥିଲା ଦ୍ୱିତୀୟ ବିଶ୍ୱଯୁଦ୍ଧ (୧୯୩୯-୧୯୪୫) ସମୟରେ ମଧ୍ୟ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଯୁଦ୍ଧପାଣ୍ଠିକୁ ଏକଲକ୍ଷ ଟଙ୍କା ଦାନ କରିଥିଲେ । ସେହି ସମୟରେ ଯୁଦ୍ଧ ବିମାନର ଆବଶ୍ୟକତା ଜରୁରୀ ମନେ ହେବାରୁ, ପୁଣି ଯୁଦ୍ଧପାଣ୍ଠିକୁ ମହାରାଜାଙ୍କ ପାଞ୍ଚହଜାର ପାଉଣ୍ଡ ମୂଲ୍ୟର ଅର୍ଥଦାନ ଦେଶବାସୀଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା । କେବଳ ସେତିକି ନୁହେଁ, ବିଶ୍ୱଯୁଦ୍ଧ ଜନୀତ ଅସ୍ୱାଭାବିକ ପରିସ୍ଥିତି

ସମ୍ଭାଳିବା ପାଇଁ ହମ୍‌ଗାର୍ଡ୍ ସଂସ୍ଥାର ନେତୃତ୍ୱ ନେଇ, ମହାରାଜା ଲିଲିଫ୍ କାର୍ଯ୍ୟ ପରିଚାଳନା କରିଥିଲେ । ସେବାପାଇଁ କର୍ମ ଏବଂ ତ୍ୟାଗର ଏହି ଯେଉଁ ସମନ୍ୱୟ ହୋଇଥିଲା, ତାହା ମହାରାଜାଙ୍କ ଦେଶପ୍ରେମର ଏକ ଜ୍ୱଳନ୍ତ ଉଦାହରଣ ।

ଚୀନର ଭାରତ ଆକ୍ରମଣ (୧୯୬୨) ବେଳେ ମଧ୍ୟ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ବଦାନ୍ୟତାର ଅମୃତମୟ ସ୍ପର୍ଶ ଦେଶବାସୀ ଅନୁଭବ କରିପାରିଥିଲେ । ଦେଶପ୍ରତି ଏହିପରି ବିପଦ ସୃଷ୍ଟି କରାଯାଇଥିବା ସମୟରେ, ଯୁଦ୍ଧପାଣ୍ଠିକୁ ସୁବର୍ଣ୍ଣ ଦାନ ମହାରାଜାଙ୍କ କର୍ମମୟ ଜୀବନର ଏକ ଅବିସ୍ମରଣୀୟ ଘଟଣା । ଦାନବୀର ଭାବେ ଦେଶ ପାଇଁ ମହାରାଜାଙ୍କ ଏହିସେବା ଦେଶବାସୀଙ୍କ ମାନସପଟରୁ କଦାପି ବିସ୍ମୃତ ହେବନାହିଁ ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ମହତ୍‌ଦାନ ଫଳରେ ବୈଳୁନ୍ଦ କୃଷି ଗବେଷଣା କେନ୍ଦ୍ର ଅଦ୍ୟାପି ମୂକସାକ୍ଷୀ ଭାବେ ବିଦ୍ୟମାନ । ୧୯୨୬ ଖ୍ରୀଷ୍ଟାବ୍ଦରେ ଲର୍ଡ୍ ଲିନ୍‌ଲିଥ୍‌ଗୋଙ୍କ ଅଧ୍ୟକ୍ଷତାରେ ଯେଉଁ ରଏଲ୍ ଏଗ୍ରିକଲ୍‌ଚର୍ କମିଶନ୍ ଗଠନ କରାଯାଇଥିଲା, ମହାରାଜା ସେଥିରେ ଜଣେ ସଭ୍ୟ ଭାବେ ମନୋନୀତ ହୋଇଥିଲେ । ପରିଶେଷରେ ଦରମା ଏବଂ ଭ୍ରମଣଖର୍ଚ୍ଚ ବାବଦରେ କେନ୍ଦ୍ର ସରକାରଙ୍କ ଠାରୁ ମହାରାଜା ଏକଲକ୍ଷ ବାରହଜାର ଟଙ୍କା ପାଇଥିଲେ । କିନ୍ତୁ ନିଃସ୍ୱାର୍ଥପର ଦେଶସେବାର ଆଦର୍ଶ ଉପସ୍ଥାପିତ କରି, ସେ ସମସ୍ତ ଅର୍ଥ ବୈଳୁନ୍ଦ ଠାରେ କୃଷି ଗବେଷଣା କେନ୍ଦ୍ର ପ୍ରତିଷ୍ଠା ନିମନ୍ତେ ଦାନ କରିଥିଲେ । ଆଜିର ସେହି ପ୍ରତିଷ୍ଠିତ ଗବେଷଣା କେନ୍ଦ୍ର ମହାରାଜାଙ୍କ ଦୂରଦୃଷ୍ଟିର ଏକ ସାର୍ଥକ ରୂପାୟନ ମାତ୍ର ।

ମହାରାଜା କୃଷ୍ଣଚନ୍ଦ୍ରଙ୍କ ଗଜପତି, କୋଏମ୍ବାଟୁର୍ କୃଷି କଲେଜର ପରାମର୍ଶଦାତା ଏବଂ ପରିଦର୍ଶକ ଭାବେ ମନୋନୀତ ହୋଇଥିଲେ । ସେ ମଧ୍ୟ ମାନ୍ଦ୍ରାଜର ସିମ୍ପସନ୍ ଏଣ୍ଡ୍ କୋ ଓ ମେଟୁର୍ ଇଣ୍ଡଷ୍ଟ୍ରି ଏବଂ ପୁନାର ମନ୍‌ଜୁର୍ ଷ୍ଟୁଡ୍ ଫାର୍ମରେ ନିର୍ଦ୍ଦେଶକ ଭାବେ କାର୍ଯ୍ୟଭାର ଗ୍ରହଣ କରିଥିଲେ । ଏପରି ଭାବେ ଭାରତର ବିଭିନ୍ନ ଅନୁଷ୍ଠାନ ସହ ସଂଶ୍ଳିଷ୍ଟ ଥାଇ ମହାରାଜା ଯେଉଁ ପରାମର୍ଶ ଏବଂ ନିର୍ଦ୍ଦେଶ ଦେଉଥିଲେ, ତାହା ଗ୍ରହଣଯୋଗ୍ୟ ବିବେଚିତ ହେଉଥିଲା । କୃଷି ଏବଂ ଶିଳ୍ପର ପ୍ରସାର ପାଇଁ, ସେହି ଅଗାଧ ପାଣ୍ଡିତ୍ୟକୁ ଲକ୍ଷ୍ୟକରି, ବ୍ରିଟିଶ୍ ସରକାର ୧୯୩୮ ଖ୍ରୀଷ୍ଟାବ୍ଦ-ଇଣ୍ଡୋ-ବ୍ରିଟିଶ୍ ଟ୍ରେଡ୍ ନେଗସିଏସନ୍‌ରେ ତାଙ୍କୁ ଜଣେ ସଭ୍ୟ ରୂପେ ମନୋନୀତ କରିଥିଲେ ।

ନିଜ ଇଷ୍ଟେଟ୍‌ରେ ମଧ୍ୟ କୃଷି ଏବଂ ଶିଳ୍ପର ବିକାଶ ପାଇଁ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ବିଶେଷ ଗୁରୁତ୍ୱ ଦେଉଥିଲେ । କୃଷିକୁ ଜୀବନାଦର୍ଶ ଭାବେ ଗ୍ରହଣ କରି, ମହାରାଜା ବ୍ୟକ୍ତିଗତ ଭାବେ ଗୋଟିଏ ହମ୍‌ଫାର୍ମ ପ୍ରତିଷ୍ଠା କରିଥିଲେ । ଉନ୍ନତ ବିହନ ଏବଂ ଆଧୁନିକ କୃଷି ପ୍ରଣାଳୀର ବିନିଯୋଗ କରି, ମହାରାଜା ନିଜେ ତାହାର ପରିଚାଳନା କରୁଥିଲେ । ଶିଳ୍ପକୁ ଜୀବନର ଅନ୍ୟତମ

ଆଦର୍ଶ ଭାବେ ଗ୍ରହଣ କରି, ପୁଣି ଠାରେ ବ୍ୟକ୍ତିଗତ ଭାବେ ଗୋଟିଏ ଲବଣ କାରଖାନା ପ୍ରତିଷ୍ଠା କରିଥିଲେ । ମହାରାଜାଙ୍କ ଏହି ଜୀବନାଦର୍ଶରୁ ସୂଚିତ ହୁଏ, ସେ ଜଣେ ବ୍ୟକ୍ତି ନୁହନ୍ତି, କୃଷି ଏବଂ ଶିଳ୍ପର ବିକାଶ ପାଇଁ ସେ ଥିଲେ ଗୋଟିଏ ବିରାଟ ଅନୁଷ୍ଠାନ ।

ଜଣେ ଆଦର୍ଶ ରାଜା ଭାବେ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ବୃନ୍ଦାବନ ପେଲେସ୍ ନାମରେ ଏକ ରାଜପ୍ରାସାଦ ମଧ୍ୟ ନିର୍ମାଣ କରିଥିଲେ । ମହେନ୍ଦ୍ରତନୟା ପାଦଦେଶରେ ନୈସର୍ଗିକ ଶୋଭା ମଧ୍ୟରେ ମର୍ମର ପ୍ରସ୍ତର ଏବଂ କାଷ୍ଠକାମରେ ସୁସଜ୍ଜିତ ପାରଳାଖେମୁଣ୍ଡିର ସେହି ରମଣୀୟ ରାଜପ୍ରାସାଦ, ମହାରାଜାଙ୍କ କୀର୍ତ୍ତି ସମୂହର ମୂକସାକ୍ଷୀ ରୂପେ ଅଦ୍ୟାପି ବିଦ୍ୟମାନ ।

ଅଲୌକିକ କୀର୍ତ୍ତି ସ୍ଥାପନ କରି, ବିଭିନ୍ନ ଅନୁଷ୍ଠାନ ଦ୍ୱାରା ବହୁ ପଦପଦବୀରେ ଭୂଷିତ ହେଲେ ସୁଦ୍ଧା, ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ପାରିବାରିକ ଜୀବନ ଦୁଃଖ ଏବଂ ଜଞ୍ଜାଳ ମଧ୍ୟ ଦେଇ ଗତି କରିଥିଲା । ମହାରାଜା ଯୌବନରେ ବିପତ୍ନୀକ ହୋଇ, ପରେ ଜ୍ୟେଷ୍ଠକନ୍ୟା ଏବଂ ଜ୍ୟେଷ୍ଠପୁତ୍ରଙ୍କୁ ମଧ୍ୟ ହରାଇଥିଲେ । ତାପରେ ୧୯୫୨ ଖ୍ରୀଷ୍ଟାବ୍ଦରୁ ସରକାରଙ୍କ ଦ୍ୱାରା ଜମିଦାରୀର ଉଚ୍ଛେଦ କରାଯାଇଥିଲା । ଏହିପରି ପରିସ୍ଥିତିରେ ମଧ୍ୟ, ଧୈର୍ଯ୍ୟ ଏବଂ ଦାମ୍ଭିକତାର ସହ, ମହାରାଜା ନିଜ ବଂଶର ଗୌରବ ଏବଂ ରାଜ ସମ୍ମାନ ରକ୍ଷା କରିପାରିଥିଲେ । ଭଗବତ୍ ବିଶ୍ୱାସହିଁ ତାଙ୍କୁ ସମସ୍ତ ସମସ୍ୟାର ସମାଧାନ ନିମନ୍ତେ ପଥ ପ୍ରଦର୍ଶନ କରିପାରିଥିଲା । ମହାରାଜା କୃଷ୍ଣଚନ୍ଦ୍ର ଗଜପତି ପ୍ରତିଦିନ ମାହେନ୍ଦ୍ର ବେଳାରେ ଶଯ୍ୟା ତ୍ୟାଗକରି ନିତ୍ୟକର୍ମ ସମାପନାନ୍ତେ, ପ୍ରଥମେ ଦେବାର୍ଚ୍ଚନାରେହିଁ ମନ ବଳାଉଥିଲେ । ତାପରେ ହମ୍‌ଫାର୍ମ ଯାଇ, ସେଠାରେ କୃଷିକ୍ଷେତ୍ର ଏବଂ ଉଦ୍ୟାନ ବୁଲି ଦେଖିବା ତାଙ୍କର ଅନ୍ୟତମ ନିତ୍ୟନୈମିତ୍ତିକ କର୍ମ ଥିଲା । ଏପରିକି କର୍ମମୟ ଜୀବନର ଶେଷ ଦିନ ପର୍ଯ୍ୟନ୍ତ ଏହି କର୍ମ ନିଘଣ୍ଟରୁ ମହାରାଜାଙ୍କ ବିଚ୍ୟୁତି ଘଟିନଥିଲା ।

ଓଡ଼ିଆ ଜାତିର ଦାବୀ ଉପସ୍ଥାପନ କରିବାକୁ ଲଣ୍ଡନ୍ ଯାଇଥିବା ସମୟରେ ମଧ୍ୟ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବାର୍ଚ୍ଚନା କାର୍ଯ୍ୟରୁ ବିରତ ହେଉନଥିଲେ । ଦେବାର୍ଚ୍ଚନା ସମୟରେ, ମହାରାଜା ପଟ୍ଟବସ୍ତ୍ର ପରିଧାନ କରି, କଣ୍ଠରେ ତୁଳସୀ ମାଳି ଧାରଣ କରୁଥିଲେ । କିନ୍ତୁ ସେ ଯେତେବେଳେ ଇଂରେଜୀରେ ଭାଷଣ ଦେଉଥିଲେ, ସେତେବେଳେ ମହାରାଜାଙ୍କ ସାହେବୀ ବେଶଭୂଷା ଏବଂ ବାକ୍‌ପଟୁତାରୁ, ସେ ଜଣେ ଭାରତୀୟ ବୋଲି ଚିହ୍ନିବା କଷ୍ଟକର । ସର୍ବାପେକ୍ଷା ଆଶ୍ଚର୍ଯ୍ୟର ବିଷୟ ଏହିଯେ, ମହାରାଜା ଉଭୟ ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ସଂସ୍କୃତିର ଉର୍ଦ୍ଧ୍ୱରେ ରହି, ଜୀବନରେ ମାଦକ ଦ୍ରବ୍ୟ ସେବନ କରିବାତ ଦୂରର କଥା, ଗୋଟିଏ ପାନ ମଧ୍ୟ କେବେ ମୁହଁରେ ଦେଉନଥିଲେ । ରାଜକୁଳର ଐଶ୍ୱର୍ଯ୍ୟ ମଧ୍ୟରେ ବଢ଼ି ଏବଂ ସାହେବ ମାନଙ୍କର ସଂସ୍ପର୍ଶରେ ଆସି ମଧ୍ୟ, ମହାରାଜାଙ୍କର ଏହିପରି ସଂଯମ ଏବଂ ଧର୍ମପରାୟଣତା ଅନ୍ୟତ୍ର ବିରଳ ।

ଏହିପରି ଭାବେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନିଜର ଦୀର୍ଘ କର୍ମମୟ ଜୀବନ ମଧ୍ୟରେ ବହୁ ଆଦର୍ଶ ଦେଶବାସୀଙ୍କ ସମ୍ମୁଖରେ ଉପସ୍ଥାପିତ କରି ୧୯୭୪ ଖ୍ରୀଷ୍ଟାବ୍ଦ ମଇ ମାସ ୨୫ ତାରିଖ ଦିନ ଇହସଂସାରରୁ ଚିରଦିନ ପାଇଁ ବିଦାୟ ନେଇଥିଲେ । ସେହିଦିନ ପାରଳାଖେମୁଣ୍ଡି ରାଜନଅରର ଏକ ନିଭୃତ ବିଶ୍ରାମ କକ୍ଷରେ ମହାରାଜାଙ୍କ ଜୀବନ ଦୀପଟି ଲିଭିଯାଇଥିଲା ସତ, କିନ୍ତୁ ତାହା ସମଗ୍ର ଓଡ଼ିଶାରେ ଅନ୍ଧକାରର ଛାୟା ସୃଷ୍ଟି କରିଥିଲା । ନିତ୍ୟ ନୈମିତ୍ତିକ କାର୍ଯ୍ୟ ସ୍ୱାଭାବିକ ରୀତିରେ ସାରି, ମଧ୍ୟାହ୍ନ ଭୋଜନ କରୁଥିବା ସମୟରେ ମହାରାଜାଙ୍କ ଏହି ବିୟୋଗ ରାଜ୍ୟବାସୀଙ୍କୁ ଦୁଃଖରେ ମ୍ରିୟମାଣ କରିଦେଇଥିଲା । ଲୋତକପୂର୍ଣ୍ଣ ଚକ୍ଷୁରେ ହଜାର ହଜାର ପ୍ରଜା ତାଙ୍କ ପ୍ରିୟରାଜାଙ୍କ ମରଶରୀର ଦେଖିବାକୁ କିପରି ଆତୁର ହୋଇଯାଇଥିଲେ ଏବଂ ତାଙ୍କୁ ଦେଖିବା ମାତ୍ରେ କିପରି ଦୁଃଖରେ ଅଭିଭୂତ ହୋଇପଡୁଥିଲେ, ସେହି ଦୃଶ୍ୟ ଯେ ଦେଖିଛି, ତାହା ତାହାର ମାନସପଟରୁ କଦାପି ବିସ୍ମୃତ ହେବନାହିଁ । ମହାଯାତ୍ରା ବେଳର ସେହି ଦୃଶ୍ୟ ମହାରାଜାଙ୍କ ଜନପ୍ରିୟତା, ବଦାନ୍ୟତା ଏବଂ ଦେଶସେବାର ଏକ ପ୍ରକୃଷ୍ଟ ପରିମାପକ ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ବହୁମୁଖୀ ଦେଶସେବା ମଧ୍ୟରେ, ମୁଖ୍ୟତଃ ଓଡ଼ିଶା ପ୍ରଦେଶ ଗଠନରେ ତାଙ୍କର ଅବଦାନ ପାଇଁ ସେ ସମଗ୍ର ଓଡ଼ିଆ ଜାତିର ନମସ୍ୟ । ଏହି ସତ୍ୟକୁ ଉପଲବ୍ଧି କରି ଓଡ଼ିଆ ଗଠିତ ଫିଲିପ୍ ଡ୍ଫ୍ କମିଟିର ଜଣେ ସଦସ୍ୟ ସି.ଏଲ୍.ଫିଲିପ୍. ୧୯୩୩ ଖ୍ରୀଷ୍ଟାବ୍ଦରେ କଟକ ଠାରେ ଏକ ସାଧାରଣ ସଭାରେ କହିଥିଲେ -"I am leaving orissa and shall watch its progress, but cannot forget that Maharaja has placed Orissa as a single and complete unit on the Map of India."

ମହାରାଜାଙ୍କ ସମ୍ବନ୍ଧରେ ଅନୁରୂପ ମତ ବ୍ୟକ୍ତ କରି ୧୯୭୪ ଖ୍ରୀଷ୍ଟାବ୍ଦ ମଇ ମାସ ୨୭ ତାରିଖରେ "ସମାଜ" ପତ୍ରିକାର ସମ୍ପାଦକ ମଧ୍ୟ ଯଥାର୍ଥରେ ଲେଖିଥିଲେ -" ଓଡ଼ିଶା ପ୍ରଦେଶର ପ୍ରତିଷ୍ଠା ପାଇଁ କୂଟନୈତିକ ପ୍ରଚେଷ୍ଟା ଚଳାଇବା ସଙ୍ଗେ ସଙ୍ଗେ ଅକାତରରେ ବିପୁଳ ଅର୍ଥ ବ୍ୟୟ କରିବାକୁ ମଧ୍ୟ ପଛଘୁଞ୍ଚା ଦେଇନଥିଲେ । ସେତେବେଳେ ସେହି ଚରମ ମୁହୂର୍ତ୍ତରେ ସେ ଯଦି ଏଭଳି ପ୍ରାଣମୂର୍ଚ୍ଛା ଉଦ୍ୟମ କରିନଥାନ୍ତେ, ତେବେ ସ୍ୱାଧୀନ ଭାରତର ମାନଚିତ୍ରରେ ଆଜି ଓଡ଼ିଶାକୁ ଏକ ସ୍ୱତନ୍ତ୍ର ଅଙ୍ଗ ରାଜ୍ୟ ରୂପେ ଦେଖିବାର ସୌଭାଗ୍ୟ ଆମକୁ ମିଳିଥାନ୍ତା କି ନାହିଁ, ତାହା ସନ୍ଦେହର ବିଷୟ । ଏହି ଦୃଷ୍ଟିରୁ ଗଜପତି କୃଷ୍ଣଚନ୍ଦ୍ରଙ୍କୁ ସ୍ୱତନ୍ତ୍ର ଓଡ଼ିଶା ରାଜ୍ୟର ନିର୍ମାତା ଓ ସ୍ରଷ୍ଟା ବୋଲି ଯାହା କୁହାଯାଏ, ସେଥିରେ ଲେଶମାତ୍ର ଅତିରଞ୍ଜନ ନାହିଁ । "

ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ କର୍ମମୟ ଜୀବନହିଁ ନବ ଓଡ଼ିଶାର ଇତିହାସ । ମହାରାଜାଙ୍କ କର୍ମମୟ ଜୀବନର ଏହି ବିଶ୍ଳେଷଣରୁ ଜଣାଯାଏ, ସେ ଜଣେ ବ୍ୟକ୍ତି ନଥିଲେ , ସେ ଥିଲେ ଜଣେ ମହାମାନବ । ମହାମାନବର ଲକ୍ଷଣ ବର୍ଣ୍ଣନା କରି ଭର୍ତ୍ତୃହରି ଲେଖିଅଛନ୍ତି -

“ ବିପଦି ଧୈର୍ଯ୍ୟମଥାଭ୍ୟୁଦୟେ କ୍ଷମା
ସଦସି ବାକ୍ପଟୁତା ଯୁଧି ବିକ୍ରମଃ
ଯଶସି ଚାଭିରତି ର୍ବ୍ୟସନଂ ଶ୍ରୁତୌ
ପ୍ରକୃତି ସିଦ୍ଧ ମିଦଂହି ମହାତ୍ମନମ୍ ।। ”

ଅର୍ଥାତ୍ ବିପଦ ବେଳେ ଯେ ଧୈର୍ଯ୍ୟ ହରାନ୍ତି ନାହିଁ, ଅଭ୍ୟୁଦୟ ବେଳେ କ୍ଷମାର୍ପଣ କରନ୍ତି, ସଭାସ୍ଥଳରେ ଯେ ବାକ୍ପଟୁ, ଯୁଦ୍ଧରେ ଯେ ବିକ୍ରମୀ, ଯଶରେ ଯେ ନିସ୍ପୃହ, ବେଦ ବାକ୍ୟରେ ଯାହାର ଅଭିରୁଚି, ସେହିଁ ପ୍ରକୃତରେ ମହାମାନବ ପଦବାଚ୍ୟ ହୁଅନ୍ତି । ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଠାରେ ଏ ସମସ୍ତ ଗୁଣଯେ ନିହୀତ ଥିଲା, ତାହା ଏଠାରେ କହିବା ବାହୁଲ୍ୟମାତ୍ର । ଓଡ଼ିଆ ଜାତିର ଅଭ୍ୟୁଦୟ ପାଇଁ ତାଙ୍କର ନିଃସ୍ୱାର୍ଥପର ସେବା ଏବଂ ଦେଶମିଶ୍ରଣ ଆନ୍ଦୋଳନରେ ଧୈର୍ଯ୍ୟ, ବିକ୍ରମ ଏବଂ ବାକ୍ପଟୁ ପ୍ରଦର୍ଶନ - ମହାରାଜାଙ୍କ ସେହି ମହାମାନବ ଗୁଣାବଳୀର ପରିଚୟ ପ୍ରଦାନ କରେ ।






# ଉତ୍କଳକବି ଗୋପାଳକୃଷ୍ଣ ପଟ୍ଟନାୟକ

ଉତ୍କଳକବି ଗୋପାଳକୃଷ୍ଣ ପଟ୍ଟନାୟକ ମହେନ୍ଦ୍ରତନୟାର ଉତ୍ତର ତୀରରେ ପାରଳାଖେମୁଣ୍ଡି ଠାରେ ୧୭୮୪ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ। ଏହାଙ୍କ ପିତାଙ୍କ ନାମ ବନବାସୀ ପଟ୍ଟନାୟକ ଏବଂ ମାତାଙ୍କ ନାମ ଲଳିତା ଦେବୀ। ଶୁଣାଯାଏ, ଉତ୍କଳକବିଙ୍କ ପୂର୍ବପୁରୁଷ ମାନେ କଟକ ଜିଲ୍ଲାର ଯାଜପୁର ଠାରେ ବସତି ସ୍ଥାପନ କରିଥିଲେ ଏବଂ ସେଠାରେ ତାଙ୍କ ଗୃହର ନାମ ଥିଲା- କଂସାକବାଟୀ। କିନ୍ତୁ ପରବର୍ତ୍ତୀ ସମୟରେ ଏହାଙ୍କର କୌଣସି ବଂଶଧର ରାଜପୃଷ୍ଠପୋଷକତା ଲାଭକରି ପାରଳାଖେମୁଣ୍ଡି ଚାଲି ଆସିଥିଲେ।

ଉତ୍କଳକବିଙ୍କ ପିତା ବନବାସୀ ପଟ୍ଟନାୟକ, ସେହି ପ୍ରସିଦ୍ଧ କାୟସ୍ଥକୁଳ ସମ୍ଭୂତ ଜଣେ ରାଜପଣ୍ଡିତ। ତାଙ୍କ ବିବାହର ଦଶଟି ବର୍ଷ ବିତିଯାଇଛି ନିଃସନ୍ତାନ ଭାବରେ। ତେଣୁ ମନଟି ସର୍ବଦା ଦୁଃଖପୂର୍ଣ୍ଣ। ଅନ୍ୟପକ୍ଷରେ ଲଳିତା ଦେବୀଙ୍କ ମନୋଭାବ ଠିକ୍ ଏହାର ଅନୁରୂପ। ଦିନେ ଲଳିତା ଦେବୀ ବୃନ୍ଦାବତୀଙ୍କ ସେବା କରୁଥିବା ସମୟରେ ଚକ୍ଷୁରୁ ଲୋତକ ବୁହାଇଥିଲେ। ତାହା ଦେଖି ତାଙ୍କ ମାତା କହିଥିଲେ - "ଦେବତା ପୂଜା ଓ ବ୍ରାହ୍ମଣ ସେବା ସମୟରେ ଆଖିରୁ ଲୁହ ବୁହାଇବା ନିଷେଧ ଅଟେ। ତୋର କଣ ଅଭାବ ଅଛି, ନିଜ ପତି ତ ମହାରାଜାଙ୍କ ସଭାସଦ୍ ପଣ୍ଡିତ ଅଟନ୍ତି। ଧନର ତ କିଛି ଅଭାବ ନାହିଁ। ତେବେ କାନ୍ଦିକାନ୍ଦି ପୂଜା କରିବା କି ପ୍ରୟୋଜନ ?" ଏହାଶୁଣି ଲଳିତା ଦେବୀ ଗଦ୍‌ଗଦ୍ କଣ୍ଠରେ କହିଥିଲେ- "ବୃନ୍ଦାରାଣୀଙ୍କ କରୁଣା ତ ଏ ପର୍ଯ୍ୟନ୍ତ ହେଉନାହିଁ, ସବୁଥିଲେ କଣ ହେବ, ଘରଟୁ ସନ୍ତାନ ବିନା ଅନ୍ଧକାର। ଏହି ଅଭାବ ହେତୁ ଅନ୍ୟସ୍ତ୍ରୀର ମୁଖ ଦେଖିବାକୁ ମୋତେ ଲଜ୍ଜା ଲାଗୁଛି।" ଏହା ଶୁଣି ମାତା କନ୍ୟାର ଚକ୍ଷୁରୁ ଅଶ୍ରୁ ପୋଛି ଦେଇ ଆଶ୍ୱାସନା ଦେଇ କହିଥିଲେ - "ନିଶ୍ଚୟ ଶ୍ରୀ ବୃନ୍ଦାବତୀ ତୁମକୁ କରୁଣା କରିବେ।" କିଛି ସମୟ ପରେ ବନବାସୀ ପଟ୍ଟନାୟକ, ଇଷ୍ଟଦେବ ଶ୍ରୀରସିକରାଜଙ୍କ ଦର୍ଶନାନ୍ତେ ଚରଣାମୃତ ସେବନ କରି ଗୃହକୁ ଫେରିଥିଲେ। କିନ୍ତୁ ଶ୍ରୀମଦ୍ ଭାଗବତରୁ ଏକ ଅଧ୍ୟାୟ ପଠନ ପରେ ଭୋଜନ ସାରି ରାଜକାର୍ଯ୍ୟରେ ବ୍ୟସ୍ତ ହେବା ତାଙ୍କ ନିୟମିତ କର୍ମ ଥିଲା। ଅନ୍ୟପକ୍ଷରେ ନିଜ ପତିଙ୍କ ଚରଣୋଦକ ପାନ କଲାପରେ ହିଁ ଭୋଜନ କରିବା ଲଳିତା ଦେବୀଙ୍କ ଦୈନନ୍ଦିନ କର୍ତ୍ତବ୍ୟ ଥିଲା। ପ୍ରତିଦିନ ପରି ସେହିଦିନ ମଧ୍ୟ ଚରଣ ଧୌତ କରିବା ସମୟରେ, ବନବାସୀ ପଟ୍ଟନାୟକ ତାଙ୍କ ମୁଖ ଶୁଖିଥିବା କାରଣ ପଚାରି ବୁଝିଥିଲେ। ତାପରେ ସେ ସାନ୍ତ୍ୱନା ଦେଇ କହିଥିଲେ - "ମୁଁ ମଧ୍ୟ ଏହି ଦୁଃଖ

ମୋଚନାର୍ଥେ ଶ୍ରୀ ରାଧା ରସିକରାଜ ପ୍ରଭୁଙ୍କ ଅଭୟ ପୟରେ ନିତ୍ୟ ଜଣାଏ । କିନ୍ତୁ ପୂର୍ବକୃତ କର୍ମ ପରେ ଅବଶ୍ୟ ଆମ ମନୋବାଞ୍ଛା ପୂରଣ ହେବ ।"

ଏହାର ଠିକ୍ ମାସକ ପରେ ଦିନକର କଥା । ପ୍ରତିଦିନ ପରି ବନବାସୀ ପଟ୍ଟନାୟକ ଶୟନ କରିଛନ୍ତି । ତାଙ୍କ ଚରଣ ପାଖରେ ଲଳିତା ଦେବୀ ମଧ୍ୟ ଶୟନ କରିଛନ୍ତି । ଅର୍ଦ୍ଧରାତ୍ର ବେଳ । ହଠାତ୍ ତାଙ୍କ ଶୟନ ମନ୍ଦିରର ଝରକା ଶବ୍ଦାୟମାନ ହେଲା । ତେଣୁ ଚୋରଙ୍କ ଉପଦ୍ରବ ଭାବି ବନବାସୀ ପଟ୍ଟନାୟକ ବାହାରକୁ ଆସିଥିଲେ ! କିନ୍ତୁ କେଉଁଠି କିଛି ନଦେଖି ପୁଣି ଶଯ୍ୟା ମନ୍ଦିରକୁ ବାହୁଡିଥିଲେ । ସେତେବେଳେ ଲଳିତାଦେବୀ ଶଯ୍ୟା ତଳେ ଠିଆ ହୋଇ ବିଚାରଗ୍ରସ୍ତ ଥିବା ଦେଖି, ତାଙ୍କୁ ସାନ୍ତ୍ୱନା ପ୍ରଦାନ କରିଥିଲେ। କିନ୍ତୁ ଲଳିତାଦେବୀ ତାଙ୍କ ଚରଣରେ ଦଣ୍ଡ ପ୍ରଣାମ କରି କହିଥିଲେ - "ସ୍ୱପ୍ନ ଦେଖିଲି, ଆମର ଇଷ୍ଟଦେବ ରସିକରାଜ ନଟବର ବେଶରେ ଆମ ଉଭୟଙ୍କ ଆଗରେ ଶୁଭ ଦର୍ଶନ ଦେଇ ଆଜ୍ଞା କଲେ - ତୁମ ଉଭୟଙ୍କ ସେବାରେ ପରିତୃପ୍ତି ଲଭିଅଛୁ, ତୁମର ମନକାମନା ଅଚିରେ ଫଳପ୍ରଦ ହେବ । ତାପରେ ନିଜ ହସ୍ତର ମୁରଲୀ ଆମ ଦୁହିଁଙ୍କ ମସ୍ତକରେ ମାରିମାରି ଆଜ୍ଞା ଦେଲେ - ତୁମ ଗର୍ଭ ସାଫଲ୍ୟ ହେବା ପବିତ୍ର ଫଳ ପାଇବ " ଏସବୁ କହୁଥିବା ସମୟରେ ଗୃହଟି ଚନ୍ଦନ ଏବଂ ତୁଳସୀ ବାସରେ ଚହଟି ଉଠୁଥିଲା । ଏହି ଅପରୂପ ସ୍ୱପ୍ନର ଫଳ ସ୍ୱରୂପ ପରବର୍ତ୍ତୀ ସମୟରେ ଗୋପାଳକୃଷ୍ଣଙ୍କ ଜନ୍ମ ହୋଇଥିଲା।

ଗୋପାଳକୃଷ୍ଣ ଥିଲେ ପିତାମାତାଙ୍କର ଏକମାତ୍ର ପୁତ୍ର । ତେଣୁ ତାଙ୍କ ବାଲ୍ୟଜୀବନ ଚପଳତା ମଧ୍ୟରେ ଗତି କରିଥିଲା । ସେ ପଞ୍ଚମ ବର୍ଷ ବୟସରେ ବିଦ୍ୟାରମ୍ଭ କରିଥିଲେ ମଧ୍ୟ ଦଶମ ବର୍ଷ ପର୍ଯ୍ୟନ୍ତ ବିଦ୍ୟାଶିକ୍ଷାରେ ଶ୍ରଦ୍ଧା ନରଖି ଗ୍ରାମଶିଶୁଙ୍କ ସଙ୍ଗେ ଗୋରୁ ମହିଷ ସହ ବୁଲି କାଳ କଟାଉଥିଲେ । କିନ୍ତୁ ଯେଉଁଠି ଶାସ୍ତ୍ର ଆଲୋଚନା ହେଉଥାଏ, ତାହା ଶୁଣିବା ନିମନ୍ତେ ଏହାଙ୍କର ପ୍ରବଳ ଆଗ୍ରହ ରହିଥାଏ । ଦିନେ ସେ ନିଜ ପିତାଙ୍କ ସହ ଆପଣା ଗୃହ ସମ୍ମୁଖସ୍ଥ ବେବର୍ତ୍ତା ପଟ୍ଟନାୟକଙ୍କ ସଭାମଣ୍ଡପକୁ ଯାଇଥାନ୍ତି। କଣ୍ଠରେ ତୁଳସୀମାଳା ଓ କପାଳରେ ତିଳକାଦି ବୈଷ୍ଣବ ଚିହ୍ନ ଦେଖି ଅନ୍ୟମାନେ ସେଦିନ ତାଙ୍କୁ ବହୁ ପ୍ରଶଂସା କରିଥିଲେ । କିନ୍ତୁ ବନବାସୀ ପଟ୍ଟନାୟକ ସମସ୍ତଙ୍କ ସମ୍ମୁଖରେ ଏହାଙ୍କର ବିଦ୍ୟାଶିକ୍ଷା ପ୍ରତି ଅନାଦାର ଭାବ ରହିଥିବା ପ୍ରକାଶ କରିଥିଲେ । ତାହାହିଁ ତାଙ୍କର ଯେପରି ବରପ୍ରଦ ହୋଇଥିଲା । ସେହିଦିନରୁ,ଆପଣା ଗୃହରେ ପାରଳା-ରାଜସଭା ପଣ୍ଡିତ ବାଇକୋଳି ମହାପାତ୍ରଙ୍କ ଠାରୁ ସେ ନିୟମିତ ବିଦ୍ୟାଶିକ୍ଷା କରିଥିଲେ ।

କୋଡ଼ିଏ ବର୍ଷ ବୟସରେ ଗୋପାଳକୃଷ୍ଣଙ୍କ ହିରାମଣିଙ୍କ ସହ ବିବାହ ହୋଇଥିଲା । ତଥାପି, ସେ ୨୫ ବର୍ଷ ଯାଏ ଦେଶୀୟ ବ୍ୟାୟାମ କରୁଥିଲେ । କାରଣ ସେତେବେଳେ ଏହି ଅଞ୍ଚଳରେ ବ୍ୟାୟାମ ପ୍ରତ୍ୟେକ ଯୁବକଙ୍କର ଅନିବାର୍ଯ୍ୟ କର୍ମ ଥିଲା । ଗୋପାଳକୃଷ୍ଣ ପ୍ରତିଦିନ ପ୍ରାତଃ ଚାରିଘଣ୍ଟାରେ ଶଯ୍ୟାତ୍ୟାଗ କରି ନିତ୍ୟକର୍ମରେ ମନ ବଳାଉଥିଲେ । ତତ୍ପରେ ପ୍ରାୟ ୬ ଘଣ୍ଟା ସମୟରେ ଦେଢ଼ ସେର ସଦ୍ୟୋଜାତ ଗୋ ଦୁଗ୍ଧ ପାନ କରୁଥିଲେ । ତାପରେ ପ୍ରାୟ ଦୁଇଘଣ୍ଟା ବ୍ୟାୟାମ କରି କିଛି ସମୟ ବିଶ୍ରାମ ନେଉଥିଲେ । ସନ୍ଧ୍ୟା ସମୟରେ ମଧ୍ୟ ସେ ଦୁଇ ଘଣ୍ଟା କାଳ ବ୍ୟାୟାମ କରୁଥିଲେ । ଦିନର ଅବଶିଷ୍ଟାଂଶ କାବ୍ୟନାଟକାଦି ପଠନ ଓ ଲିଖନରେ ସେ କଟାଉଥିଲେ ।

ପିତାଙ୍କ ମୃତ୍ୟୁପରେ ଗୋପାଳକୃଷ୍ଣ, ପାରଳା ରାଜସଭା ପଣ୍ଡିତ ରୂପେ ନିଯୁକ୍ତ ପାଇବା ସଙ୍ଗେ ସଙ୍ଗେ ଏକୋଇଶି ଖଣ୍ଡ ଗ୍ରାମର କରଣିକ କାର୍ଯ୍ୟରେ ମଧ୍ୟ ବ୍ୟସ୍ତ ରହୁଥିଲେ । ମୁଖ୍ୟତଃ ଖୁରିଙ୍ଗା କରଣ ଭାବେ ବର୍ତ୍ତମାନ ସୁଦ୍ଧା ଏହାଙ୍କ ବଂଶଧର ମାନେ ସର୍ବତ୍ର ପରିଚିତ । କାରଣ ଖୁରିଙ୍ଗା ସେହି ଏକୋଇଶି ଖଣ୍ଡ ଗ୍ରାମ ମଧ୍ୟରେ ଥିଲା ଅନ୍ୟତମ । ପାରଳା ରାଜନଗରର ଖୁରି ଶବ୍ଦ (ନାଗରା ବାହାଳି) ଛଅ କୋଶରେ ଥିବା ଏହି ଗ୍ରାମକୁ ଶୁଭିବାରୁ, ଏହାର ନାମ ଖୁରିଙ୍ଗା ହୋଇଛି ।

କରଣିକ କାର୍ଯ୍ୟର ଦାୟିତ୍ୱ ବହନ କରିଥିବା ସମୟରେ, ଥରେ ଗୋପାଳକୃଷ୍ଣ ଗଞ୍ଜାମ ଅଭିମୁଖେ ଯାତ୍ରା କରିଥିଲେ । କିନ୍ତୁ ତାହାଙ୍କ ଗଞ୍ଜାମଯାତ୍ରା ସମ୍ବନ୍ଧରେ କୁହାଯାଏ - ଟେକିଲି ରାଜବଂଶର ଜନୈକ ପୂର୍ବପୁରୁଷ ଶ୍ରୀ ପଦ୍ମନାଭ ଦେବ ପାରଳାଖେମୁଣ୍ଡି ତାଲୁକାର ମ୍ୟାନେଜର୍ ଭାବେ ପୁନଃ ନିଯୁକ୍ତି ପାଇବାରୁ ତାଙ୍କ ଠାରୁ ବାଧା ପାଇବା ଆଶଙ୍କାରେ ପ୍ରାୟ ପଚାଶ ଜଣ କରଣ ଏବଂ ବ୍ରାହ୍ମଣ କର୍ମଚାରୀ ଗୁଣୁପୁର ଏବଂ ଗଞ୍ଜାମ ଆଡ଼େ ଚାଲି ଯାଇଥିଲେ । ସେମାନଙ୍କ ମଧ୍ୟରେ ଗୋପାଳକୃଷ୍ଣ ଥିଲେ ଅନ୍ୟତମ । କିନ୍ତୁ ମୁଁ ଏଥିସହ ଏକମତ ନୁହେଁ । କାରଣ କବିଙ୍କର ପଣନାତି ସ୍ୱର୍ଗତ ରାମକୃଷ୍ଣ ପଟ୍ଟନାୟକଙ୍କ ସ୍ୱହସ୍ତ ଲିଖିତ ଏକ ବିବରଣୀ ଏହି ଲେଖକ ପାଇଅଛି । ସେଥିରୁ ଗୋପାଳକୃଷ୍ଣଙ୍କ ଗଞ୍ଜାମ ଅଭିମୁଖେ ଯାତ୍ରା କରିବାରେ ଭିନ୍ନ ଉଦ୍ଦେଶ୍ୟ ରହିଥିବା ପ୍ରମାଣିତ ହୁଏ । କିଛି ଦିନ ପୂର୍ବେ ପୁରୀ ମୁକ୍ତିମଣ୍ଡପର ପଣ୍ଡିତ ବକ୍ସୀବାହୁ ବନ୍ଧୁପାଣି ପଟ୍ଟନାୟକ ପାରଳା ରାଜସଭାକୁ ଆସିଥାନ୍ତି । ସେହି ସମୟରେ ରାଜମାତା ଶ୍ରୀଜଗନ୍ନାଥଙ୍କ ଦର୍ଶନାଭିଳାଷି ହୋଇ ତାଙ୍କ ସହ ଗଞ୍ଜାମଠାରୁ ଜାହାଜରେ ବସି ପୁରୀ ଯିବା ଉଦ୍ଦେଶରେ ଗଞ୍ଜାମ ଅଭିମୁଖେ ଯାତ୍ରା କରିଥିଲେ । କିନ୍ତୁ ପୁରୀଧାମରେ ରାଜଚର୍ଯ୍ୟା ଅଭାବ ହେବ ଭାବି ତତ୍କ୍ଷଣାତ୍ ରାଜମାତାଙ୍କୁ ପାରଳାଖେମୁଣ୍ଡି ଫେରାଇ ଆଣିବାକୁ ମହାରାଜା ଜଗନ୍ନାଥ ଗଜପତି, ଗୋପାଳକୃଷ୍ଣଙ୍କୁ ଆଦେଶ ଦେଇଥିଲେ । ପଶ୍ଚାତେ କର୍ମଚାରୀଙ୍କ ନିର୍ଦ୍ଦୋଷତା ଓ କାର୍ଯ୍ୟଦକ୍ଷତା ହୃଦୟଙ୍ଗମ କରି ସେମାନଙ୍କ ପୁନଃ ନିଯୁକ୍ତି ସମ୍ବନ୍ଧରେ ଖବର ଦେବା

ନିମନ୍ତେ ମଧ୍ୟ ସେ ଆଦେଶ ପ୍ରାପ୍ତ ହୋଇଥିଲେ । ତେଣୁ ରାଜମାତା ଏବଂ ପଳାତକ କର୍ମଚାରୀଙ୍କୁ ଫେରାଇ ଆଣିବାକୁ ଯେ ଗୋପାଳକୃଷ୍ଣ ଗଞ୍ଜା ଯାତ୍ରା କରିଥିଲେ, ଏହା ନିଃସନ୍ଦେହ ।

ଗଞ୍ଜା ଗ୍ରାମରେ ବକ୍ସିବାବୁ ଚକ୍ରପାଣି ପଟ୍ଟନାୟକ ରାଜାମାତାଙ୍କ ଠାରୁ ଗୋପାଳକୃଷ୍ଣଙ୍କ ଅସାଧାରଣ ପାଣ୍ଡିତ୍ୟ ସମ୍ପର୍କରେ ଜାଣିବାକୁ ପାଇଥିଲେ । ସେଦିନ ବକ୍ସିବାବୁ ଚକ୍ରପାଣି ପଟ୍ଟନାୟକ, ଗୋପାଳକୃଷ୍ଣଙ୍କୁ ସଙ୍ଗରେ ଧରି ଋଷିକୁଲ୍ୟାର ସୌନ୍ଦର୍ଯ୍ୟ ଦର୍ଶନାର୍ଥେ ଯାଇ ଜଣେ ସୁନ୍ଦରୀ ବୈଶ୍ୟ ସ୍ତ୍ରୀକୁ ଜଳକୁମ୍ଭ ଧରି ଗୃହାଭିମୁଖି ହେବା ଦେଖିଥିଲେ । ଏହି ସମ୍ବନ୍ଧରେ ଗୋଟିଏ କବିତା ରଚନା କରିବାକୁ ପଣ୍ଡିତ ମହାଶୟ ଗୋପାଳକୃଷ୍ଣଙ୍କୁ ଆଦେଶ ଦେଲେ । ସଙ୍ଗେ ସଙ୍ଗେ ଗୋପାଳକୃଷ୍ଣ - "ସ୍କନ୍ଧରେ ଦେଇ ବନ୍ଧୁ ନଯାରେ, ରହ ଜିତେନ୍ଦ୍ରିୟ ଚିତ୍ତ ହତାରେ " କବିତାଟି ରଚନା କରି ତାଙ୍କୁ ଦେଖାଇଥିଲେ । ସେହି କବିତାଟିର ଉଚ୍ଚ ପ୍ରଶଂସା କରି, ପଣ୍ଡିତ ମହାଶୟ କହିଥିଲେ, - "ବାବୁ, ଆପଣ କେବେ କବିତା ଲେଖା ଛାଡ଼ିବେ ନାହିଁ, କବିତାରେ ଆପଣଙ୍କୁ ପ୍ରଶଂସା ମିଳିବ ।"

"ସ୍କନ୍ଧରେ ଦେଇ ବନ୍ଧୁ ନଯାରେ" - କବିତାଟି ଗୋପାଳକୃଷ୍ଣଙ୍କ ପ୍ରଥମ କବିତା ଭାବେ ମଧ୍ୟ ଅଭିହିତ କରାଯାଏ । କିନ୍ତୁ ଏଥିସହ ମଧ୍ୟ ମୁଁ ଏକମତ ନୁହେଁ । କାରଣ, ପଦ୍ମନାଭ ଦେବ ୧୮୨୩ ଖ୍ରୀଷ୍ଟାବ୍ଦରେ ଜମିଦାରୀର ମ୍ୟାନେଜର୍ ଭାବେ ପୁନଃ ନିଯୁକ୍ତି ପାଇଥିଲେ । ସେହିବର୍ଷହିଁ କବିବର ଗୋପାଳକୃଷ୍ଣ ରାଜାମାତା ଏବଂ ପଳାତକମାନଙ୍କୁ ଫେରାଇ ଆଣିବକୁ ଗଞ୍ଜା ଅଭିମୁଖେ ଯାତ୍ରା କରିଥିଲେ । ସେହି ସମୟରେହିଁ ପ୍ରୋକ୍ତ କବିତା ଲେଖାଯାଇଥିବା ନିଃସନ୍ଦେହ । ଯଦି ତାହା ପ୍ରଥମ କବିତା ହୋଇଥାଏ, ଗୋପାଳକୃଷ୍ଣ ଅଣଚାଳିଶି ବର୍ଷ ବୟସରେ ସାହିତ୍ୟସାଧନା ପ୍ରାରମ୍ଭ କରିଥିଲେ । କିନ୍ତୁ ଗୋପାଳକୃଷ୍ଣଙ୍କ ପ୍ରଥମ କବିତା ନାମରେ ଏହା ଯେ ଏକ କାଳ୍ପନିକ ତଥ୍ୟ, ଏଥିରେ କୌଣସି ସନ୍ଦେହ ନାହିଁ । ଗଞ୍ଜା ଯାତ୍ରା ପୂର୍ବରୁ ଗୋପାଳକୃଷ୍ଣଙ୍କ ପ୍ରତିଭା ପୁଷ୍ପ ବିକଶିତ ହୋଇଥିବା ଏବଂ ତାହାର ସୌରଭ ପାରଳାଖେମୁଣ୍ଡି ଅଞ୍ଚଳକୁ ମହକିତ କରିଥିବା ସ୍ପଷ୍ଟ ହୃଦୟଙ୍ଗମ କରିହୁଏ । ରାଜାମାତା ଗଞ୍ଜା ଠାରେ ବକ୍ସିବାବୁ ଚକ୍ରପାଣି ପଟ୍ଟନାୟକଙ୍କୁ ଗୋପାଳକୃଷ୍ଣଙ୍କ ପାଣ୍ଡିତ୍ୟ ସମ୍ବନ୍ଧରେ ସୂଚନା ଦେଇଥିଲେ । ତେଣୁ ସେ ଏଥିପୂର୍ବରୁ କବିତ୍ୱ ପରାକାଷ୍ଠା ଅର୍ଜନ କରିନଥିଲେ, ରାଜାମାତାଙ୍କ ଦ୍ୱାରା ପ୍ରଶଂସିତ ଏବଂ ତାହଙ୍କ ପ୍ରିୟଭାଜନ ହୋଇନଥାନ୍ତେ । କିନ୍ତୁ ଗୋପାଳକୃଷ୍ଣଙ୍କ ପ୍ରଥମ କବିତା କେଉଁଟି, ତାହା ସଠିକ୍ ଭାବେ କୁହାଯାଇନପାରେ । କାରଣ, କବି ଯେଉଁଠି ଯାହା କବିତା ଲେଖିଲେବି ସଂଗ୍ରହ କରି ରଖୁନଥିଲେ । ଅନ୍ୟମାନଙ୍କ ଦୃଷ୍ଟିକୁ ଆସିଲେ, ସେ ସବୁ କବିତା ସଂଗ୍ରହ କରାଯାଉଥିଲା । ଏପରି ଭାବେ କବିଙ୍କ ବହୁ କବିତା କେଉଁ କାଳଗର୍ଭରେ ଲୀନ ହୋଇଯାଇଛି । ତେଣୁ ତାଙ୍କ ପ୍ରଥମ କବିତାରଯେ ଅସ୍ତିତ୍ୱ ରହିଛି, ତାହା ନିର୍ଭୁଲ ଭାବେ କହି ହେବନାହିଁ ।

ପାରଳାଖେମୁଣ୍ଡିର ତତ୍କାଳିନ ମହାରାଜା ଶ୍ରୀ ଜଗନ୍ନାଥ ଗଜପତିଙ୍କର ଗୋପାଳକୃଷ୍ଣଙ୍କ କବିତା ପ୍ରତି ଅସୀମ ଶ୍ରଦ୍ଧା ରହିଥାଏ । ଦିନେ ମହାରାଜାଙ୍କ ଆଦେଶ କ୍ରମେ ଗୋପାଳକୃଷ୍ଣଙ୍କ ନୂତନ ରଚିତ ଗୀତ - "ଜୀବନ ବନ୍ଧୁ ମାଗୁଣି ମାଗୁଛିରେ ଏତିକି, ନହିଁ କରିବୁ ନାହିଁଟି କହିଲା ବିନତିକି" ରାଜସଭାରେ ଗାନ କରାଯାଇଥିଲା । କିନ୍ତୁ ସେହି ଗୀତଟି ଶୁଣି ଅନ୍ୟତମ ସଭାସଦ୍ ପଣ୍ଡିତ ଏବଂ କବିଙ୍କ ସମର୍କୀୟ ଓ ଗୁରୁଜନ ଶ୍ରୀ ଦୀନବନ୍ଧୁ ପଟ୍ଟନାୟକ ରାଜସଭାରେ ନିଜ ମତ ବ୍ୟକ୍ତ କରି କହିଥିଲେ- "ଆଜୁରି ଆନ ଗୋପାଳର ଶିଶୁବୁଦ୍ଧି ଛାଡ଼ିନାହିଁ,ଏହି ସମ ଶ୍ରୀକୃଷ୍ଣଙ୍କ ଲୀଳା ମାଧୁର୍ଯ୍ୟରେ ମଜିଥିଲେ, ଭାବୁଛି ଇହ ଓ ପରଜନ୍ମ ସାର୍ଥକ ହୁଅନ୍ତା । ସଭାରେ ଲଜ୍ଜା ପାଇ ଗୃହକୁ ଫେରି ଗୋପାଳକୃଷ୍ଣ ସମସ୍ତ ଘଟଣା ନିଜ ପତ୍ନୀଙ୍କୁ କହିଥିଲେ ଏବଂ ତାଙ୍କ ଅନୁରୋଧରେ ସଙ୍ଗେ ସଙ୍ଗେ - "ଦେଖିଲେ ଦେଖିଲା ପରି ଥରେ ରସିକରାଜଙ୍କୁ" ଗୀତଟି ରଚନା କରିଥିଲେ । ଫଳରେ ସେହିଦିନ ଠାରୁ ତାଙ୍କ କବିତାର ଗତିପଥ ପରିବର୍ତ୍ତିତ ହୋଇଥିଲା

ଦିନେ ଗୋପାଳକୃଷ୍ଣ ଶ୍ରୀମଦ୍ ରୂପ ଗୋସ୍ୱାମୀଙ୍କ କୃତ ଚାଟୁପୁଷ୍ପାଞ୍ଜଳି ପଢ଼ିସାରି ଖାରଡ଼ା ନାମକ ପଲ୍ଲୀ ଗ୍ରାମସ୍ଥ ଶ୍ରୀ ରାଧାକାନ୍ତ ମନ୍ଦିରରେ ଶୟନ କରିଥାନ୍ତି । ଏପରି ସମୟରେ ବୈଷ୍ଣବ ଚିହ୍ନଧାରୀ ଜଣେ ବ୍ରାହ୍ମଣ ସ୍ୱପ୍ନରେ ଦେଖାଦେଇ ଆଜ୍ଞା କରିଥିଲେ -" ତୁ ପୁଷ୍ପାଞ୍ଜଳି ଶୁଣିବାକୁ ଅଧିକାର ନପାଇ କେଣେ ଶୁଣୁଅଛୁ, ଆପଣାର ଗୁରୁଦେବ ପାରଳାଖେମୁଣ୍ଡି ବିଜେ କରିଛନ୍ତି, ଶୀଘ୍ରେ ଯାଇ ଅଧିକାର ପାଅ ।" ସେହି ଅପରୂପ ସ୍ୱପ୍ନଟି ଭଙ୍ଗ ହେବାପରେ - "ଏଡ଼େ ଭାଗ୍ୟ ମୋର ହେବକି, ହେବି ବୃନ୍ଦାବନେଶ୍ୱରୀ ସେବକୀ" କବିତାଟି ରଚନା କରିଥିଲେ । ତାପରେ ପାରଳାଖେମୁଣ୍ଡି ଫେରିଆସି ଗୁରୁଦେବ ଲୋକନାଥ ଦାସ ଗୋସ୍ୱାମୀଙ୍କୁ ସ୍ୱପ୍ନ ବୃତ୍ତାନ୍ତ ଜଣାଇ ଶ୍ରୀରାଧାକୃଷ୍ଣ ମନ୍ତ୍ରରେ ଦିକ୍ଷିତ ହୋଇଥିଲେ । ସେଦିନ "ରାଧା-ନକ୍ଷତ୍ରମାଳା" ସଂସ୍କୃତରେ ରଚନା କରି ଗୁରୁ ଦକ୍ଷିଣା ସ୍ୱରୂପ ଗୁରୁଙ୍କୁ ପ୍ରଦାନ କରିଥିଲେ ।

ଦିନେ କବିବର ଗୋପାଳକୃଷ୍ଣ ଲିଚୁରି ଗ୍ରାମର ଶ୍ରୀ ଗୋପୀନାଥ ମହାପ୍ରଭୁଙ୍କ ଦର୍ଶନ ନିମନ୍ତେ ଯାଇଥାନ୍ତି । ମହାପ୍ରଭୁଙ୍କ ଦର୍ଶନ କରୁଥିବା ସମୟରେ ଭାବ ବିହ୍ୱଳ ହୋଇ - "ଡ଼ାକିବି ରାଧାରମଣ ବୋଲିକି" କବିତାଟି ସେ ର ଚନା କରିଥିଲେ । ସନ୍ଧ୍ୟା ଆଳତି ପରେ କୀର୍ତ୍ତନ ସମୟରେ ସେହି ଗୀତଟି ଗାନ କରାଯାଇଥିଲା । ସେହି ଗୀତର ଭାବରେ ପରମ ସନ୍ତୋଷ ଲାଭ କରି ଶ୍ରୀରାଧାରାଣୀଙ୍କ କଣ୍ଠସ୍ଥିତ ଫୁଲମାଳଟି ଖସି ପଡ଼ିଥିଲା । ସେହିଦିନ ରାତ୍ର ମନ୍ଦିରର ପୂଜାରୀଙ୍କୁ ସ୍ୱପ୍ନରେ ଦେଖାଦେଇ ରାଧାରାଣୀ ଆଜ୍ଞା ଦେଇଥିଲେ - "କୀର୍ତ୍ତନ ସମୟରେ ମୋ କଣ୍ଠସ୍ଥିତ ଯେଉଁ ଫୁଲମାଳଟି ଖସି ପଡ଼ିଥିଲା, ତାହା ଗୋପାଳକୃଷ୍ଣଙ୍କୁ ପ୍ରଦାନ କର ।" ତହିଁ ପରଦିନ ସ୍ୱପ୍ନାଦେଶ ଅନୁଯାୟୀ ସେହି ଫୁଲମାଳଟି ଭକ୍ତକବିଙ୍କୁ ପ୍ରଦାନ କରାଯାଇଥିଲା ।

କଥାରେ ଅଛି - ଭଗବାନ ଭକ୍ତକୁ ପରୀକ୍ଷା କରନ୍ତି । ସେହିପରି ଭକ୍ତକବି ଗୋପାଳକୃଷ୍ଣଙ୍କୁ ମଧ୍ୟ ଭଗବାନ ପରୀକ୍ଷା କରିଥିଲେ । ବାଲ୍ୟରୁ କନ୍ୟାଦ୍ୱୟଙ୍କ ବୈଧବ୍ୟ ସାଙ୍ଗକୁ କନିଷ୍ଠ ପୁତ୍ର (କରୁଣାନିଧି) ଏବଂ ପୁତ୍ରବଧୂଙ୍କ ଅକାଳ ବିୟୋଗ ତାହାଙ୍କ ହୃଦୟକୁ ଏକ ଦାରୁଣ ଆଘାତ ଦେଇଥିଲା । ବିଧିର ବିଧାନ କିଏ କଣ ଆନ କରିପାରିବ ? ପରବର୍ତ୍ତୀ ସମୟରେ ତାଙ୍କ ଜ୍ୟେଷ୍ଠ ପୁତ୍ର (ଗୌରଚନ୍ଦ୍ର) ମଧ୍ୟ ଇହଧାମ ଛାଡ଼ି ଚାଲିଯାଇଥିଲେ । ସାଂସାରିକ ଜୀବନର ଏହିଭଳି ଦୁଃଖ ଏବଂ ଜଞ୍ଜାଳମୟ ପରିସ୍ଥିତି ମଧ୍ୟରେ ଏକ ନିର୍ଜନ ପ୍ରକୋଷ୍ଠରେ ବସି ସେ ଯେଉଁ କବିତାବଳୀ ରଚନା କରିଛନ୍ତି, ସେଥିରେ ତାଙ୍କ ଜୀବନର ପ୍ରତିଛବି ପ୍ରତିଫଳିତ ହୋଇଛି । ଏହି ପରିପ୍ରେକ୍ଷୀରେ କୋଇଲି କବିତାଟି ଗୋପାଳକୃଷ୍ଣଙ୍କ ବ୍ୟଥିତ ହୃଦୟର ଦୃଷ୍ଟାନ୍ତ ଭାବେ ଗ୍ରହଣ କରାଯାଇପାରେ । ପାରଳାର ଅନ୍ୟତମ କବି ସ୍ୱର୍ଗତ ସୀମାଦ୍ରି ପଟ୍ଟନାୟକ (୧୮୯୫-୧୯୭୨), ଗୋପାଳକୃଷ୍ଣଙ୍କ ରଚିତ କୋଇଲି କବିତାଟିକୁ "Messenger of Spring" ନାମକରଣରେ (ଯାହାକି ଅପ୍ରକାଶିତ) ଇଂରାଜୀ ଭାଷାରେ ଅନୁବାଦ କରିଛନ୍ତି । ସେଥିର ମୁଖବନ୍ଧରେ ସେ ଲେଖିଛନ୍ତି -"It is truly said that the poet has written this piece in the white heat of the moment when he lost his only son and since it is most circumstantial, he has given utterance to such burning lives through the true personality of Yosoda, taking his only son to be Krishna and his pilgrimage into the realms of Hades as the sylvan wanderings of Krishna".ସେ ମଧ୍ୟ ମୁଖବନ୍ଧର ଅନ୍ୟତ୍ର କହିଛନ୍ତି -"This singular event in the Poet's life whether we call it a calamity or blessing in disguise, has shown to the world of what domestic wealth his nation is possessed, the nation of which he is the true representative. One, sitting at his table, labouring in the dark depths of restless nights could not have so easily produced such living poetry. It is his own life and experience made exquisitely perfect, that has opened the golden gates of immortal imagination at the magical touches of sorrow and suffering and has led him along the rosy-bedded royal road of poetry into an Aladian world of stern truth". ବାସ୍ତବରେ ଗୋପାଳକୃଷ୍ଣଙ୍କ ଜୀବନ ନିତାନ୍ତ ଦୁଃଖପୂର୍ଣ୍ଣ ହେଉ ବା ଛଦ୍ମ ବେଶଧାରୀ ଆଶୀର୍ବାଦ ଭାବେ ଦେଖାଦେଉଥାଉ, ତାହା ଭାରତୀୟ ଜନନୀର ମାନସିକ ସମ୍ପଦର ଏକ ଚିତ୍ର ପ୍ରଦାନ କରିବାରେ ଯଥେଷ୍ଟ ସହାୟକ ହୋଇଛି । ଜଣେ ଅବିଶ୍ରାନ୍ତ ଭାବେ ରାତ୍ରର ଗଭୀର ଅନ୍ଧକାର ମଧ୍ୟରେ ପରିଶ୍ରମ କଲେ ବି,ଏହିପରି ଏକ ଜୀବନ୍ତ କବିତା ଲେଖିବା ସମ୍ଭବ ହୋଇନପାରେ ।

କିନ୍ତୁ ଏହା ଗୋପାଳକୃଷ୍ଣଙ୍କ ପକ୍ଷେ ସମ୍ଭବ ହୋଇପାରିଲା । କାରଣ, ପୁତ୍ର ଶୋକରେ ବ୍ୟଥିତ ହୋଇ, ସେ ନିଜେ ବାତ୍ସଲ୍ୟ ଭାବନାର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ଉପଲବ୍ଧି କରିପାରିଥିଲେ ।

ଥରେ ପାରଳାଖେମୁଣ୍ଡି ମହାରାଜା ଭକ୍ତକବି ଗୋପାଳକୃଷ୍ଣଙ୍କ ନବଜାତ ପଣନାତି (ଶ୍ରୀଗୋପୀନାଥ ପଟ୍ଟନାୟକଙ୍କ ପୁତ୍ର)ର ଏକୋଇଶିଆ ଉତ୍ସବ ନିମନ୍ତେ ଖଣ୍ଡିଏ ପାଟଶାଢ଼ି ଓ ହାତେ ସୁନାଖଡୁ ଦେଇଥିଲେ । କିନ୍ତୁ ସେହିଦିନ ନବଜାତ ଶିଶୁଟିର ମୃତ୍ୟୁ ହେବାରୁ ଅଦ୍ୟାବଧି ତାହାଙ୍କ ଗୃହରେ ଏକୋଇଶିଆ ପାଇଁ ନୂଆଁ ଲୁଗାର ଦୋଳି ଓ ସୁନାଖଡୁ ପ୍ରଭୃତିର ନିଷେଧ ହୋଇଛି । ଚଳିତ ପ୍ରଥା ଅନୁଯାୟୀ ଅଦ୍ୟାବଧି ନବଜାତ ଶିଶୁଟିର ଜନ୍ମ ଠାରୁ ଡିରିଶି ଦିନ ମଧ୍ୟରେ ଇଷ୍ଟଦେବ ରସିକରାଜଙ୍କ କୌଣସି ପୁରୁଣା ବସ୍ତ୍ରରେ ଦୋଳା କରାଯାଉଛି । ନବଜାତ ଶିଶୁଟିର ନାମ ରସିକରାଜ ମନ୍ଦିରର ପୂଜାରିଙ୍କ ଦ୍ୱାରା ଦିଆଯାଉଛି ।

ଗୋପାଳକୃଷ୍ଣଙ୍କ ଶିଷ୍ୟମାନଙ୍କ ମଧ୍ୟରୁ ହରିବନ୍ଧୁ ବେବର୍ତ୍ତା ପଟ୍ଟନାୟକ ଥିଲେ ଅତି ଅନ୍ତରଙ୍ଗ । ସେ ଯେତେବେଳେ ଯେଉଁଠାରେ ଭକ୍ତକବିଙ୍କ କବିତା ଦେଖନ୍ତି ବା ଶୁଣନ୍ତି, ତାହା ସଂଗ୍ରହ କରୁଥିଲେ । କୌଣସି ବ୍ୟକ୍ତି ଯଦି ଗୋପାଳକୃଷ୍ଣଙ୍କ କବିତା ପାଠ ନିମନ୍ତେ ତାହାଙ୍କୁ ମାଗୁଥିଲେ, ସେ ହରିବନ୍ଧୁଙ୍କୁ ଲକ୍ଷ୍ୟକରି - "ଆମ ସମୁଦ୍ରପେଟାକୁ ମାଗ" ବୋଲି କହୁଥିଲେ । ଏହି ଅଞ୍ଚଳର ଏକ ପ୍ରଥାନୁଯାୟୀ ଦଶହରା ଦିନ ସଂଗୃହିତ ପୁସ୍ତକର ଡ଼ୋରା ଫିଟାଇ ପୁନଃ ଡ଼ୋର ବାନ୍ଧିବାକୁ ହୁଏ । ତେଣୁ ସେଦିନ ହରିବନ୍ଧୁ ବେବର୍ତ୍ତା ସଂଗୃହିତ ପୁସ୍ତକ ଫିଟାଇବା କ୍ଷଣି ଗୋପାଳକୃଷ୍ଣଙ୍କ କବିତାର ଅନେକାଂଶ କୀଟଦ୍ରଷ୍ଟ ହୋଇଥିବାରୁ ଦୁଃଖ ପ୍ରକାଶ କରନ୍ତି । ଏପରି ଭାବେ କବିଙ୍କ ଅସଂଖ୍ୟ କବିତା କେଉଁ କାଳଗର୍ଭରେ ଲୀନ ହୋଇଯାଇଛି । କିନ୍ତୁ ପାରଳାଖେମୁଣ୍ଡିର ପ୍ରାତଃ ସ୍ମରଣୀୟ ମହାରାଜା ପଦ୍ମନାଭ ଗଜପତି (ଲୋକପ୍ରିୟ ନାମ-ଚନ୍ଦ୍ର ମହାରାଜା) ଙ୍କ ଯଦ୍ୟପି ଗୋପାଳକୃଷ୍ଣଙ୍କର କବିତାପ୍ରତି କୃପାକଟାକ୍ଷ ହୋଇନଥାନ୍ତା, ପ୍ରକାଶିତ ପୁସ୍ତକର କବିତା ମଧ୍ୟ ଜନସାଧାରଣଙ୍କ ହସ୍ତଗତ ହୋଇନଥାନ୍ତା ।

ଗୋପାଳକୃଷ୍ଣ ପ୍ରତିଦିନ ବ୍ରାହ୍ମମୁହୂର୍ତ୍ତରେ ଶଯ୍ୟାତ୍ୟାଗ କରି ନିତ୍ୟକର୍ମ ସମାପନାନ୍ତେ ରସିକରାଜ ମନ୍ଦିରକୁ ଯାଇ ଚରଣାମୃତ ସେବନ କରୁଥିଲେ । ତାପରେ ଗୃହକୁ ଫେରି, ପିତାଙ୍କ ଆଚରଣାନୁଯାୟୀ ସଂସ୍କୃତ ଶ୍ରୀମଦ୍‌ଭାଗବତର ଏକ ଅଧ୍ୟାୟ ପଠନାନ୍ତେ ଭୋଜନ କରି ଏକ ଘଣ୍ଟା ବିଶ୍ରାମ ନେଉଥିଲେ । ତାପରେ ରାଜସଭାସଦ୍ ପଣ୍ଡିତଙ୍କ ଗୋଷ୍ଠୀରେ ଏହାଙ୍କ ଗୃହରେ ଶ୍ରୀମଦ୍ ଗୋସ୍ୱାମୀଙ୍କ ଗ୍ରନ୍ଥ ପାଠ ହେଉଥିଲା । ସେହିପରି ସନ୍ଧ୍ୟାରେ ରସିକରାଜଙ୍କ ମଙ୍ଗଳ ଆରତି ଦର୍ଶନ କରି ଭକ୍ତବୃନ୍ଦଙ୍କ ସହ ଭଗବତ୍ କଥାଳାପ କରୁଥିଲେ । ତାପରେ ସ୍ୱଗୃହରେ ରାଧାକୃଷ୍ଣଙ୍କ ଏକଲକ୍ଷ ନାମ ଜପ ଶେଷ କରି ଭୋଜନାନ୍ତେ ଶୟନ କରୁଥିଲେ । ଖାରଡ଼ା, ଲିଚୁରି,

ଖୁରିଗାଁ ଏବଂ ଅନ୍ୟାନ୍ୟ ଗ୍ରାମରେ ରହୁଥିବା ବେଳେ ମଧ୍ୟ ଭକ୍ତବୃନ୍ଦଙ୍କ ସହ ଭକ୍ତିଗ୍ରନ୍ଥ ପାଠ ଓ ଆଳାପରେ ସେ କଟାଉଥିଲେ ।

ଗୋପାଳକୃଷ୍ଣ, ମୃତ୍ୟୁର ଆଠ ଦିନ ପୂର୍ବେ ଖାରଡ଼ା ଗ୍ରାମସ୍ଥ ଦେବ ମନ୍ଦିରରେ ବାସ କରୁଥିଲେ । ସେଠାରେ ତାଙ୍କୁ ଜ୍ୱର ହୋଇଥିଲା । ତେଣୁ ପୋଢ଼ ଶଗଡ଼ରେ ବସି ସେ ପାରଳାଖେମୁଣ୍ଡି ର ଗୃହକୁ ଫେରି ଆସିଥିଲେ । କାରଣ ସେ ଜନ୍ମାବଧି ଶେଷ ମୁହୂର୍ତ୍ତ ଯାଏ ବଳଦ ଶଗଡ଼ରେ ବସୁନଥିଲେ । କିନ୍ତୁ କୌଣସି ଔଷଧରେ ତାଙ୍କର ଆରୋଗ୍ୟ ହୋଇପାରିନଥିଲା । ତଥାପି ସେହି ପୀଡ଼ିତ ଅବସ୍ଥାରେ ସଙ୍ଗସୁଖ ଲଭି, ଶ୍ରୀମଦ୍ ଗୋସ୍ୱାମୀ ଗ୍ରନ୍ଥ ଶ୍ରବଣ କରି ନେତ୍ରରୁ ଆନନ୍ଦାଶ୍ରୁ ବୁହାଉଥାନ୍ତି । ୧୮୬୨ମସିହା ଫାଲ୍‌ଗୁନ ଶୁକ୍ଳ ଦ୍ୱିତୀୟାର ଶେଷ ଦିବସରେ ଗୋପାଳକୃଷ୍ଣ ମୃତ୍ୟୁଶଯ୍ୟାରେ ଶୟନ କରିଛନ୍ତି । ଏହି ସମୟରେ ତାଙ୍କ ପତ୍ନୀ ନିଜର ଦୁଇନାତି ଏବଂ ଦୁଇ ନାତୁଣୀଙ୍କୁ ସଙ୍ଗରେ ଧରି ଆସି ଗୋପାଳକୃଷ୍ଣଙ୍କ ଚରଣ ତଳେ ଠିଆ ହୋଇ କାନ୍ଦିଥିଲେ । ସେ ଅଶ୍ରୁ ପ୍ରବାହିତ ନୟନରେ ଗଦ୍‌ଗଦ୍ କଣ୍ଠରେ କହିଥିଲେ - "ଏଣିକି ମୋର ଗତି କଣ?" ଗୋପାଳକୃଷ୍ଣ ଉତ୍ତର ଦେଇଥିଲେ - "ତୋର ଏକାନ୍ତ ଗତି ଶ୍ରୀରାଧା ରସରାଜ ପ୍ରଭୁ ଅଟନ୍ତି ।" ଏହାକହି ନିଜ କଣ୍ଠସ୍ଥିତ ତୁଳସୀମାଳା ବାହାର କରି ପତ୍ନୀଙ୍କୁ ଦେଇ କହିଥିଲେ - "୧. ଏହି ମାଳାରେ ପ୍ରତିଦିନ ଏକଲକ୍ଷ ନାମ ଜପ କରି ସେସବୁ ଶ୍ରୀରାଧା ରସରାଜପ୍ରଭୁଙ୍କ ମଙ୍ଗଳାର୍ଥେ କହି ଶ୍ରୀପ୍ରଭୁଙ୍କ ଶ୍ରୀହସ୍ତରେ ଅର୍ପଣ କରିଦେଉଥିବୁ । ୨. ଏହି ଶିଶୁଙ୍କୁ (ନାତି ଏବଂ ନାତୁଣୀଙ୍କୁ ଲକ୍ଷ୍ୟକରି) ଶୁଶ୍ରୂଷା କରି କେବଳ ଯଶୋଦା ଦେବୀ ଭାବରେ ଥିବୁ । ୩. ନିଜ କୁଳର ଯାବତ ବାରବ୍ରତ କରୁଥିବୁ । ତାହା ଶ୍ରୀକୃଷ୍ଣଚନ୍ଦ୍ରଙ୍କ ମଙ୍ଗଳାର୍ଥେ ସମର୍ପଣ କରିଦେଉଥିବୁ । ତାହା ହେଲେ ତୋହର ମରଣ ଶେଷରେ ଆନନ୍ଦ ଦେଖାଦେବ ।" ଏହି ସବୁ କହିସାରି ଅଣ୍ଟାରେ ଥିବା ଖଡ଼ି ବାହାର କରି ସମ୍ମୁଖସ୍ଥ କାନ୍ଥରେ - "ଜୀବ ଯିବାକୁ ହୋଇଲା ସଜ, ରାଧାଗୋବିନ୍ଦ ଭଜ" କବିତାଟି ଲେଖିଥିଲେ । ଲେଖା ଅସମ୍ପୂର୍ଣ୍ଣ ଅବସ୍ଥାରେ, ହସ୍ତରୁ ଖଡ଼ିଟି ଖସି ପଡ଼ିଥିଲା ଏବଂ ସେ ବ୍ରହ୍ମପ୍ରାପ୍ତ ହୋଇଥିଲେ ।

ଗୋପାଳକୃଷ୍ଣଙ୍କ ମୃତ୍ୟୁ ସମୟରେ ତାଙ୍କର କୌଣସି ପୁତ୍ର ଜୀବିତ ନଥିଲେ । ତେଣୁ ଜ୍ୟେଷ୍ଠ ପୁତ୍ର ଗୌରଚନ୍ଦ୍ରଙ୍କ ପୁତ୍ର ଶ୍ରୀ ଗୋପୀନାଥ ପଟ୍ଟନାୟକ ତାଙ୍କ ଅନ୍ତ୍ୟେଷ୍ଟିକ୍ରିୟାର ଭାର ଗ୍ରହଣ କରିଥିଲେ । ତତ୍‌ପରେ ସେ ୨୧ ଖଣ୍ଡ ଗ୍ରାମର କରଣିକ କାର୍ଯ୍ୟର ଅଧିକାର ପାଇ ପାରଳା ରାଜସଭାର ପଣ୍ଡିତ ରୂପେ ମଧ୍ୟ ରାଜଶାଢ଼ୀ ପାଇଥିଲେ ।

ମନୁଷ୍ୟର ବୃଦ୍ଧାବସ୍ଥା ତାର ବାଲ୍ୟକାଳରେ ପ୍ରତିଫଳିତ ହୋଇଥାଏ । ଉକ୍ତକବି ଗୋପାଳକୃଷ୍ଣଙ୍କ ବାଲ୍ୟଜୀବନ ଚପଳତାମୟ ଥିଲେବି, ତାଙ୍କର ବୈଷ୍ଣବ ମନୋବୃତ୍ତି, ଶାସ୍ତ୍ରପ୍ରିୟତା ଏବଂ ଟୀକାଦିରୁ ସ୍ପଷ୍ଟ ସୂଚିତ ହୋଇଥିଲା । ଦ୍ୱିତୀୟତଃ ଗୋପୀକା ଭାବାପନ୍ନ ଶରୀର ନହେଲେ

ବ୍ରଜରସ ଆସ୍ୱାଦନ କରିବା କଷ୍ଟକର । ସେ ନିଜକୁ ଗୋପୀ ଭାବରେ ଚିତ୍ରିତ କରି କୃଷ୍ଣଚନ୍ଦ୍ରଙ୍କ ପଦ୍ମପଦ୍ମର ପ୍ରାପ୍ତି ନିମନ୍ତେ ନିଜ କବିତା ଗୁଡ଼ିକରେ ଘରୋଇ ଭାଷାର ମିଶ୍ରଣ, ପ୍ରତି ପାଠକକୁ ଆକର୍ଷିତ କରିଥାଏ । ପରନ୍ତୁ ବୃଦ୍ଧାବସ୍ଥାରେ ପୁତ୍ର, ପଣନାତିଙ୍କର ବିଚ୍ଛେଦ ଓ ନିଜ କନ୍ୟାଦ୍ୱୟଙ୍କର ଦାରୁଣ ଦୁଃଖପୂର୍ଣ୍ଣ ଜୀବନ ତାଙ୍କର ପାରିବାରିକ ଜୀବନକୁ ଗଭୀର ଭାବରେ ସ୍ପର୍ଶ କରିଥିଲା । କିନ୍ତୁ ବହୁ ବାଧାବିଘ୍ନ ମଧ୍ୟରେ ବି ସେ ନିଜ ଲକ୍ଷ୍ୟସ୍ଥଳ -ରାଧାକୃଷ୍ଣଙ୍କ ଯୁଗଳ ପଦ୍ମର ସାନ୍ନିଧ୍ୟ ଲାଭ କରିଛନ୍ତି, ଏହା କହିବା ବାହୁଲ୍ୟମାତ୍ର ।

ଭକ୍ତକବି ଗୋପାଳକୃଷ୍ଣଙ୍କର ଭକ୍ତିପ୍ରାଣତା ତାଙ୍କ ରଚନାର ପ୍ରତିପାଦରେ ପ୍ରତିଫଳିତ ହୋଇଅଛି । ବିଷୟ ଜଞ୍ଜାଳ ପ୍ରତି ବିରକ୍ତି ପ୍ରକାଶ ପୂର୍ବକ ସେ ଗୋଟିଏ ମନଶିକ୍ଷା- "ଶୁଣ ଆରେ ମନ ଯଥାର୍ଥ ବଚନ, କହୁଅଛି ତୋତେ ମୁହିଁ" ରେ ବିବେକ ଦ୍ୱାରା ମଞ୍ଜରୀ ସଖୀ ଭାବାବେଶରେହିଁ ନିଜ ଅବୋଧ ମନକୁ ବୁଝାଉଛନ୍ତି - ରେ ମନ, ତୁ ଶ୍ରୀକୃଷ୍ଣଙ୍କୁ ଶ୍ରୀରାଧାଙ୍କ ନାଥ ରୂପେ, ଶ୍ରୀରାଧାଙ୍କୁ ଶ୍ରୀକୃଷ୍ଣଙ୍କ ପ୍ରିୟା ରୂପେ, ଲଳିତାଙ୍କୁ ଶ୍ରୀରାଧାଙ୍କ ଶ୍ରେଷ୍ଠ ସଖୀ ରୂପେ, ବିଶାଖାଙ୍କୁ ଶିକ୍ଷା ଗୁରୁ ରୂପେ ଏବଂ ଶ୍ରୀରାଧାକୁଣ୍ଡ ଓ ଶ୍ରୀଗୋବର୍ଦ୍ଧନ ଗିରିରାଜଙ୍କୁ ରାଧାକୃଷ୍ଣଙ୍କ କ୍ରୀଡ଼ାସ୍ଥଳୀ ରୂପେ ସର୍ବଦା ସ୍ମରଣ କର । ଏହିପରି ଭାବେ ପରକୀୟା ପ୍ରେମର ତତ୍ତ୍ୱହିଁ ବର୍ଣ୍ଣନା କରି, ସେ ନିଜେ ସେହି ତତ୍ତ୍ୱକୁ ଉପଲବ୍ଧି କରିଛନ୍ତି । ନିଜକୁ ଗୋପୀଭାବାପନ୍ନ ଶରୀରରେ ପରିଣତ କରି ଯୁଗଳ ମୂର୍ତ୍ତିଙ୍କ ଲୀଳାରସ ଆସ୍ୱାଦନ କରିବାରେ ସେ ସମ୍ପୂର୍ଣ୍ଣ ସମର୍ଥ ହୋଇଛନ୍ତି । ଶ୍ରୀରାଧାକୃଷ୍ଣଙ୍କ ପ୍ରତି ତାଙ୍କର ଯେଉଁ ଭାବ ଓ ପ୍ରୀତି, ତାହା ଅତି ଚିତ୍ତାକର୍ଷକ । ବ୍ରଜର ଲୀଳା ସମ୍ବନ୍ଧୀୟ ଗୀତମାନ ଲେଖୁ ଲେଖୁ ସେ ଏପରି ଭାବରେ ତନ୍ମୟ ହୋଇପଡୁଥିଲେଯେ, ସ୍ୱଦେହର ଅବସ୍ଥିତିକୁ ମଧ୍ୟ ଲକ୍ଷ୍ୟ କରୁନଥିଲେ । ସଖୀଗଣଙ୍କ ଅନୁଗତ ରହି ଅନୁଦାସୀ ପଣେ ଯୁଗଳମୂର୍ତ୍ତିଙ୍କ ସେବା ସମ୍ପାଦନ କରିବାହିଁ ଥିଲା ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ । ଶ୍ରୀରାଧାରାଣୀଙ୍କର ସଖୀ ଭାବାବେଶେ ଦୈନବୋଧିକା, ସ୍ୱାନୁଭୂତି, ସେବା ପ୍ରାର୍ଥନା, ବିଜ୍ଞପ୍ତି, ବିରହଜନୀତ ବିଳାପ ପ୍ରଭୃତି ଅସଂଖ୍ୟ କବିତା ରଚନା କରି ସେ ନିଜର ଭକ୍ତିପ୍ରାଣତା ସୂଚାଇଛନ୍ତି । ପୁଣି ଅଷ୍ଟକାଳୀନ ସେବା ସ୍ମରଣ କରି ସେ ପ୍ରାତଃକାଳୀନ, ମଧ୍ୟାହ୍ନକାଳୀନ, ଅପରାହ୍ଣ କାଳୀନ ଏବଂ ନିଶାନ୍ତ କାଳୀନ ସେବା ଗୁଡ଼ିକର ବର୍ଣ୍ଣନା କରି ଯେଉଁ ଭାବ ତରଙ୍ଗ ସୃଷ୍ଟି କରିଛନ୍ତି, ତାହା ଅନ୍ୟତ୍ର ବିରଳ । ତେଣୁ, ଗୋପାଳକୃଷ୍ଣଙ୍କ କବିତାରେ କାବ୍ୟିକ ମୂଲ୍ୟ ଯେତିକି ଅନୁଭୂତ ହୁଏ, ତାଠାରୁ ଅଧିକ ଅନୁଭୂତ ହୁଏ ଭକ୍ତିପ୍ରାଣତା ।

ଭକ୍ତକବି ଗୋପାଳକୃଷ୍ଣ ଯେ କେବଳ କବି ଥିଲେ ତାହା ନୁହେଁ, ସେ ଥିଲେ ଜଣେ ବହୁ ଶାସ୍ତ୍ରଦର୍ଶୀ ଅସାଧାରଣ ପଣ୍ଡିତ । ଜ୍ୟୋତିଷ ଶାସ୍ତ୍ରରେ ସେ ପାରଦର୍ଶିତା ଲାଭ କରିଥିଲେ । କବିଙ୍କ ଜ୍ୟେଷ୍ଠପୁତ୍ର ପିତାଙ୍କ ଠାରୁ ଜ୍ୟୋତିଷ ବିଦ୍ୟା ଶିକ୍ଷା କରିଥିବା ଶୁଣାଯାଏ । ଶ୍ରୀଗୁରୁଙ୍କ ପବିତ୍ର

ନାମରେ ଭଣଟି ହୋଇଥିବା "ଶ୍ରୀରାଧା ନକ୍ଷତ୍ର ମାଳା" ସ୍ତୋତ୍ରଟି କବିଙ୍କ ଜ୍ୟୋତିଷ ଜ୍ଞାନର ସ୍ୱାକ୍ଷର ବହନ କରୁଥିବା ମନେ ହୁଏ । ଏହି ସ୍ତୋତ୍ରଟିର ନାମାନୁକରଣ ଅନୁଯାୟୀ, ଏହା ନକ୍ଷତ୍ର ସଂଖ୍ୟାନୁସାରେ ସପ୍ତବିଂଶ ଶ୍ଳୋକରେ ସମ୍ପୂର୍ଣ୍ଣ ହୋଇଛି ।

ଭକ୍ତକବିଙ୍କ ଆୟୁର୍ବେଦ ଶାସ୍ତ୍ରରେ ମଧ୍ୟ ପ୍ରବେଶ ଥିବା ପ୍ରମାଣିତ ହୁଏ । "ବ୍ରଜକୁ ଚୋର ଆସିଛି ଯେନି ନେବ ଶୁଅ ତୁନି ହୋଇ" କବିତାଟିରେ 'ଧନିଷ୍ଠିକା' ଶବ୍ଦଟି ଦୃଷ୍ଟିଗୋଚର ହୁଏ । 'ଧନିଷ୍ଠିକା' ଶବ୍ଦଟି କୌଣସି ଅଭିଧାନରେ ନାହିଁ । କେବଳ ଆୟୁର୍ବେଦଶାସ୍ତ୍ର "ସୁଶ୍ରୁତ ସଂହିତା"ରୁ ଏହାକୁ ଏକ ବାଳଗ୍ରହ ବିଶେଷ ଭାବେ ଗ୍ରହଣ କରାଯାଇପାରେ । ଏହି କବିତାରେ ଶ୍ରୀକୃଷ୍ଣଙ୍କୁ କୌଣସି ବାଳଗ୍ରହ ଲାଗେ ଆଶ୍ରୟ ହୋଇଥିବ, ଏହା ଭାବି ମାତା ମନେ ମନେ ଚିନ୍ତିତା ହୋଇପଡ଼ିଛନ୍ତି । ପରେ ସେ ପୁତ୍ରକୁ ବନ୍ଧୁ କକ୍ଷରେ ଶୟନ କରାଇଛନ୍ତି । ତାପରେ ହଳଦୀଗୁଣ୍ଡ ଏବଂ ନିମ୍ବପତ୍ରକୁ ନିଆ ଉମେଇରେ ପକାଇ ଶ୍ରୀକୃଷ୍ଣଙ୍କୁ ଧୂପ ଦେଇଛନ୍ତି । ତେଣୁ କବିଙ୍କ ଆୟୁର୍ବେଦ ଶାସ୍ତ୍ରରେ ପାଣ୍ଡିତ୍ୟ ଥିବାରୁ ସେ ଯେ 'ଧନିଷ୍ଠିକା' ଶବ୍ଦଟି ବ୍ୟବହାର କରିଛନ୍ତି, ଏହା ନିଃସନ୍ଦେହ ଭାବେ କୁହାଯାଇପାରେ ।

ଭକ୍ତକବିଙ୍କ ଏହିପରି ଅସାଧାରଣ ପ୍ରତିଭା ଏବଂ ପାଣ୍ଡିତ୍ୟର ଫଳ ସ୍ୱରୂପ, ତାଙ୍କ ରଚିତ ପଦ୍ୟାବଳୀ ଆଜି ଓଡ଼ିଆ ସାହିତ୍ୟ ଭଣ୍ଡାରର ଅମୂଲ୍ୟ ସମ୍ପଦ ଭାବେ ପରିଚିତ । କିନ୍ତୁ ସେହି କବିତା ଗୁଡ଼ିକୁ ରାଗ ଏବଂ ତାଳ ଅନୁକ୍ରମେ ହୃଦୟଙ୍ଗମ ନକରି ଗଦ୍ୟପାଠ ଭଳିପରି ପଢ଼ିଦେଲେ ତାହାର ସୌନ୍ଦର୍ଯ୍ୟ ଉପଲବ୍ଧ କରିହୁଏନାହିଁ । କାରଣ, ଗୋପାଳକୃଷ୍ଣଙ୍କ କବିତାରେ ଭକ୍ତିପ୍ରାଣତା ପରି ଅଧିକ ମାତ୍ରାରେ ଅନୁଭୂତ ହୁଏ ସଙ୍ଗୀତମୟତା । କିନ୍ତୁ ବାସ୍ତବ, ଭକ୍ତିପ୍ରାଣତା ଏବଂ ସଙ୍ଗୀତମୟତାର ମଧୁର ସମିଶ୍ରଣରେ ଏହାର ସୁବୋଧତା ଓ ସୁଶ୍ରାବ୍ୟତା ସହଜରେ ଉପଲବ୍ଧ କରିହୁଏ । ତେଣୁ ଗୋପାଳକୃଷ୍ଣଙ୍କ ରଚନା ଆଜି ସୁସଜ୍ଜିତ ରାଜପ୍ରସାଦ ଓ ଗରୀବର ଜୀର୍ଣ୍ଣ କୁଟୀରରେ ମଧ୍ୟ ସମାନ ପ୍ରଶଂସା ପାଇଆସୁଛି ।


ବଂଶବୃକ୍ଷ
ଶ୍ରୀ ବଂଶୀଧର ପଟ୍ଟନାୟକ
ଶ୍ରୀ ବନବାସୀ ପଟ୍ଟନାୟକ
ଶ୍ରୀ ବୃନ୍ଦାବାସୀ ପଟ୍ଟନାୟକ
ଭକ୍ତକବି ଗୋପାଳକୃଷ୍ଣ ପଟ୍ଟନାୟକ
ଶ୍ରୀ ଗୌରଚନ୍ଦ୍ର
ଶ୍ରୀ ହରିବନ୍ଧୁ
ଶ୍ରୀ କରୁଣାନିଧି
ଶ୍ରୀ ଗୋପୀନାଥ
ଶ୍ରୀ ବୈଷ୍ଣବଚରଣ
ଶ୍ରୀ ରାମକୃଷ୍ଣ
ଶ୍ରୀ ସୂର୍ଯ୍ୟନାରାୟଣ
ଶ୍ରୀ ନୀଳମଣି
ଶ୍ରୀବନବାସୀ
ଶ୍ରୀ ଗୋବିନ୍ଦଚନ୍ଦ୍ର
ଶ୍ରୀ ଚକ୍ରପାଣି



# ସାଧକ କବି ଗୌରହରି ପରିଛା

ପାରଳାଖେମୁଣ୍ଡି ନାମ ସହ କବି ଗୌରହରି ପରିଛାଙ୍କ ନାମ ସମ୍ପୂର୍ଣ୍ଣ ଜଡ଼ିତ । କବିଙ୍କ ପିତାଙ୍କ ନାମ ରାମକୃଷ୍ଣ ପରିଛା ଏବଂ ମାତାଙ୍କ ନାମ ଡ଼ାଳିନ ପରିଛା । ସେ ପିତାମାତାଙ୍କର ଥିଲେ ଷଷ୍ଠ ସନ୍ତାନ ।

ବ୍ୟାସକବି ଫକିର ମୋହନ ସେନାପତି, ଉତ୍କଳ ଭ୍ରମଣ କାବ୍ୟରେ ପୂଣ୍ୟପୀଠ ପାରଳା ଏବଂ କବିଶ୍ରେଷ୍ଠ ଗୌରହରିଙ୍କ ସମ୍ବନ୍ଧରେ ଲେଖିଛନ୍ତି -

ଓଡ଼ିଶା ଦକ୍ଷିଣ ସୀମା ପାରଳାଖେମେଡ଼ି
ଧନେ ମାନେ କିଏ ଆଉ ଅଛି ତାକୁ ବଢ଼ି ॥
କବିତ୍ୱ ଗୌରବ ସ୍ଥାନ ନଦେଖେ ସେପରି
ଗାଉଥିଲେ ବସି ଗୀତ ଯହିଁ ଗୌରହରି ॥

ଯେଉଁ ମହାତ୍ମାଙ୍କୁ ଏଠାରେ ପାରଳାର ଗୌରବ ବୋଲି କୁହାଯାଇଛି, ସେହି ମହାପୁରୁଷଙ୍କ ଜୀବନ କାହାଣୀ ବାସ୍ତବରେ ଏକ ସୁବର୍ଣ୍ଣ ଅଧ୍ୟାୟ । ଏହି ପଦ୍ୟାଂଶରୁ କବିଙ୍କ ପରିଚୟ ପାଇବା ସଙ୍ଗେ ସଙ୍ଗେ, ତତ୍କାଳୀନ ପାରଳା କିପରି ଶ୍ରୀମଣ୍ଡିତ ଥିଲା, ତାହାର ସୂଚନା ମିଳୁଛି ।

କବି ଗୌରହରି ପରିଛା ୧୭୯୪ ଖ୍ରୀଷ୍ଟାବ୍ଦ ମାଘ ମାସ ତିଳ ସପ୍ତମୀ ତିଥିରେ ପାରଳାଖେମୁଣ୍ଡିର ଗୋପିନୀ ସାହିରେ ଜନ୍ମଗ୍ରହଣ କରିଥିଲେ । ସେ ଏକାଧାରରେ ଥିଲେ ଜଣେ ଭକ୍ତକବି, ସଙ୍ଗୀତଜ୍ଞ ଏବଂ ଗାୟକ ।

ବାଲ୍ୟକାଳରେ ସେ ଅମରକୋଷ ଏବଂ ଅନ୍ୟ ସଂସ୍କୃତ ଶାସ୍ତ୍ରାଦି ଅଧ୍ୟୟନ କରିଥିଲେ । ସଙ୍ଗୀତ ଶିକ୍ଷାରେ ମଧ୍ୟ ସେ ନିଜକୁ ମନୋନିବେଶ କରିଥିଲେ । କାଳକ୍ରମେ ଶ୍ରୀରାଧାକୃଷ୍ଣଙ୍କ ଲୀଳା ସମ୍ବନ୍ଧୀୟ ଚଉପଦୀ ମାନ ରଚନା କରି ଏବଂ ସେଥିରେ ସ୍ୱର ସଂଯୋଗ କରି ସେ ଅସାଧାରଣ ପ୍ରତିଭାର ପରିଚୟ ଦେଇଥିଲେ ।

ପାରଳାର ପଡ଼ୋଶୀ ରାଜ୍ୟ ମଞ୍ଜୁଷାର ରାଜା ସାହେବ ଶ୍ରୀଜଗନ୍ନାଥ ରାଜମଣି ଦେବଙ୍କୁ ଗୌରହରିଙ୍କ ପ୍ରତିଭା ବିଶେଷ ଭାବେ ପ୍ରଭାବିତ କରିଥିଲା । ଫଳରେ ତାଙ୍କୁ ସେ ନିଜ ରାଜସଭାର ପଣ୍ଡିତ ଭାବେ ନିଯୁକ୍ତ କରି ଗୃହ, ଜମି ଓ ବେତନର ବ୍ୟବସ୍ଥା କରିଥିଲେ । ସଭାସଦ୍ ପଣ୍ଡିତ ଭାବେ କବି ଗୌରହରି ପ୍ରାୟ ୫୦ ବର୍ଷ ମଞ୍ଜୁଷା ଗ୍ରାମରେ ବାସ କରିଥିଲେ ।

କବି ଗୌରହରି ପରିଛା ମଞ୍ଜୁଷା ଗ୍ରାମରେ ରହଣି ସମୟରେ ଚୈତନ୍ୟଙ୍କ ପ୍ରଚାରିତ ବୈଷ୍ଣବ ତତ୍ତ୍ୱର ବହୁଳ ପ୍ରସାର ଘଟାଇଥିଲେ । କିନ୍ତୁ ଠିକ୍ ସେହି ସମୟରେ ଦକ୍ଷିଣରେ ରାମାନୁଜ ଧର୍ମର ପ୍ରସାର ଘଟିଥାଏ । କାଳକ୍ରମେ ମଞ୍ଜୁଷା ରାଜ ପରିବାର ମଧ୍ୟ ସେହି ଧର୍ମର ପୃଷ୍ଠପୋଷକତା କରିଥିଲେ । ମଞ୍ଜୁଷା ରାଜ ସମସ୍ତାନର ଅନ୍ୟତମ ପଣ୍ଡିତ ପାତ୍ର ବଡ଼ଜେନା ସାମନ୍ତ ରାମାନୁଜ ଧର୍ମ ଆନ୍ଦୋଳନରେ ମୁଖ୍ୟ ଭୂମିକା ଗ୍ରହଣ କରିଥାନ୍ତି । ସେ କବି ଗୌରହରିଙ୍କ ଚୈତନ୍ୟ ଧର୍ମାନୁରକ୍ତି ପ୍ରତି ଆଦୌ ସନ୍ତୁଷ୍ଟ ନଥିଲେ । ତଥାପି ମଞ୍ଜୁଷା ରାଜାସାହେବଙ୍କର ଗୌରହରିଙ୍କ ପ୍ରତି ଅଶେଷ ଅନୁଗ୍ରହ ଥିବା ଯୋଗୁଁ ତାଙ୍କ ବିରୋଧରେ ସ୍ୱର ଉତ୍ତୋଳନ କରିବା ସହଜସାଧ୍ୟ ନଥିଲା । ତଥାପି ଧର୍ମର ପ୍ରସାର ନାମରେ ଏକ ଚକ୍ରାନ୍ତ କରି, କବି ଗୌରହରିଙ୍କୁ ରାମାନନ୍ଦୀ ଚିତା ପ୍ରଦାନ କରିବା ନିମନ୍ତେ ମଞ୍ଜୁଷା ରାଜାସାହେବଙ୍କ ଆଦେଶ ପାଇଥିଲେ । ଫଳ ସ୍ୱରୂପ, ବାସୁଦେବ ରାଜମଣି ଦେବଙ୍କ ରାଜତ୍ୱ ସମୟରେ ମଞ୍ଜୁଷାର ରାମାନନ୍ଦୀ ଧର୍ମଗୋଷ୍ଠୀ ଦ୍ୱାରା କବି ପ୍ରବଳ ବିରୋଧର ସମ୍ମୁଖୀନ ହୋଇଥିଲେ । କବି ଗୌରହରିଙ୍କୁ ରାମାନନ୍ଦୀ ଚିତା ଗ୍ରହଣ କରିବାକୁ ବାଧ୍ୟ କରାଯାଇଥିଲା । ମଞ୍ଜୁଷା ରାଜାସାହେବଙ୍କର ଏଥିପ୍ରତି ଅନୁମୋଦନ ଏବଂ ଅନୁଗ୍ରହ ରହିଥିବା ମଧ୍ୟ ପ୍ରକାଶ କରାଯାଇଥିଲା । ପାତ୍ର ବଡ଼ଜେନା ସାମନ୍ତଙ୍କ ଏହି ପ୍ରସ୍ତାବକୁ କବି ଗୌରହରି ରୋକ୍‌ଠୋକ୍ ପ୍ରତ୍ୟାଖ୍ୟାନ କରିଥିଲେ । ଫଳରେ ଅନନ୍ୟ ଭକ୍ତି ଭାବରେ ତନ୍ମୟ ହୋଇ ତାଙ୍କ ଲେଖନୀରୁ ନିସୃତ ହୋଇଥିଲା -

୧. ମୋରେ ଏହି ଅନୁଗ୍ରହ କର ହେ ରାଧାବର
ଆନ ଉପାସନା ବାର ଛାଡ଼ି କେବଳ ତୁମର
ଚରଣ କଞ୍ଜେ କିଙ୍କର ପଣେ ଦିନ ଯାଉ ମୋର
ଏହି ବାଞ୍ଛା ଏକା ହେଉ ସାର ହେ ॥

୨. କେ ଭଜନ କରୁ କାହାକୁ
ମୋ ମନ ମଜିଲା କୃଷ୍ଣପଦକୁ ॥
ପୁରନ୍ଦର ମଣି ଜିଣା ବରନ
କେବଳ ମାତ୍ର ମୋହର ଶରଣ
ଶ୍ରୀରାଧାଗୋବିନ୍ଦ ଦୁହିଁଙ୍କ ବିନାରେ
ସ୍ମରଣେ ଆଣିବି ନାହିଁ ଚିତ୍ତକୁ ॥ ଇତ୍ୟାଦି .....

କିନ୍ତୁ ଧର୍ମାନ୍ଧ ମାନଙ୍କର ବିକ୍ଷୋଦ୍‌ଗାର ଦିନକୁ ଦିନ ବୃଦ୍ଧି ପାଇଥିଲା । ଚକ୍ରାନ୍ତକାରୀ ମାନଙ୍କ ଦ୍ୱାରା କବିଙ୍କ ଅନୁପସ୍ଥିତିରେ ତାଙ୍କ କୁଟୀରରେ ଅଗ୍ନି ସଂଯୋଗ କରାଯାଇଥିଲା । ଏହି ଦୁର୍ବ୍ୟବହାରରେ

କବିଙ୍କ ରଚିତ ଅନେକ କୃତି ନଷ୍ଟ ହୋଇଯାଇଛି । ଏହି ଘଟଣା ପରେ କବି ଗୌରହରି ମଞ୍ଜୁଷା ଗ୍ରାମରେ ରହିବାକୁ ଇଚ୍ଛା କରିନଥିଲେ । ଧର୍ମାନ୍ଧ ମାନଙ୍କ ଚକ୍ଷୁଶୂଳ ହୋଇ ରହିବା ଅପେକ୍ଷା ଜନ୍ମସ୍ଥାନକୁ ପ୍ରତ୍ୟାବର୍ତ୍ତନ କରିବା ଶ୍ରେୟସ୍କର ମନେ କରି ସେ ପାରଳାଖେମୁଣ୍ଡି ଫେରି ଆସିଥିଲେ ।

ସେହି ସମୟରେ ପାରଳାଖେମୁଣ୍ଡି ମହାରାଜା ଜଗନ୍ନାଥ ଗଜପତିଙ୍କ ସଭା ମଣ୍ଡନ କରିଥାନ୍ତି ବହୁ ବିଶିଷ୍ଟ ପଣ୍ଡିତ । କବି ଗୌରହରି ଜଣେ ପରମ ବୈଷ୍ଣବ ଏବଂ ଉଚ୍ଚକୋଟୀର ସଙ୍ଗୀତଜ୍ଞ, ଏହା କାହାକୁ ଅଜଣା ନଥାଏ । ତେଣୁ ତାଙ୍କର ପାରଳା ପ୍ରତ୍ୟାବର୍ତ୍ତନରେ ସ୍ଥାନୀୟ ମହାରାଜାଙ୍କ ପୃଷ୍ଠପୋଷକତା ଲାଭ କରିଥିଲେ । ପାରଳା ମହାରାଜା କବି ଗୌରହରିଙ୍କ ନିମନ୍ତେ ମାସିକ ବେତନର ବ୍ୟବସ୍ଥା କରିଥିଲେ । ମହାରାଜାଙ୍କ ଦ୍ୱାରା ଗୋପିନୀ ସହିତ ଶ୍ରୀରାଧାଗୋବିନ୍ଦ ମଠର ପରିଚାଳନା ଦାୟିତ୍ୱ ମଧ୍ୟ କବିଙ୍କୁ ଅର୍ପଣ କରାଯାଇଥିଲା ।

କବି ଗୌରହରି ମଞ୍ଜୁଷା ଗ୍ରାମରେ ବାସ କରୁଥିବା ସମୟରେ ବହୁ ଯୁବକ ତାହାଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ସେମାନଙ୍କ ମଧ୍ୟରେ ଖାଡ଼ଙ୍ଗା ନାମକ ଜଣେ ବ୍ୟକ୍ତି ସଙ୍ଗୀତ କ୍ଷେତ୍ରରେ ବିଶେଷ ଖ୍ୟାତି ଲାଭ କରିଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ, ମଞ୍ଜୁଷାର ବ୍ରହ୍ମ ଉତ୍ସବ ସମୟରେ ଯେଉଁ ବିରାଟ ସଙ୍ଗୀତ ସମାରୋହର ଆୟୋଜନ କରାଯାଇଥାଏ, ତାହା କବି ଗୌରହରିଙ୍କ ଅନୁରୋଧରେ ରାଜା ଜଗନ୍ନାଥ ରାଜମଣି ଦେବଙ୍କ ସମୟରେ ଆରମ୍ଭ କରାଯାଇଥିଲା । ପରବର୍ତ୍ତୀ ସମୟରେ କବି ପାରଳା ଫେରି ଯାଇଥିଲେ ବି, ବ୍ରହ୍ମ ଉତ୍ସବ ଉପଲକ୍ଷେ ମଞ୍ଜୁଷା ଠାରେ ସଙ୍ଗୀତ ସଭା ଆୟୋଜନର ପରମ୍ପରା ପ୍ରାୟ ଶତାଧିକ ବର୍ଷ ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ରହିଥିଲା ।

କବି ଗୌରହରି ପାରଳାଖେମୁଣ୍ଡି ଠାରେ ମଧ୍ୟ ସଙ୍ଗୀତ ଶିକ୍ଷାର ଗୁରୁ ପରମ୍ପରା ଅବ୍ୟାହତ ରଖିଥିଲେ । ତାହାଙ୍କ ଶିଷ୍ୟମାନଙ୍କ ମଧ୍ୟରେ ପାରଳାର ଅନ୍ୟତମ କବି ହରିଚନ୍ଦ୍ର ବେବର୍ତ୍ତା ଏବଂ ଓସ୍ତାଦ୍ ବେହେଲା ବାଦକ ସୂରିନାରାୟଣ ପ୍ରଶଂସାଯୋଗ୍ୟ ଅଟନ୍ତି । କବିଙ୍କ ସୁଯୋଗ୍ୟ ପୁତ୍ର ଦାମୋଦର ଏବଂ ଦୟାନିଧି ମଧ୍ୟ ସଙ୍ଗୀତ କଳାରେ ଅସାଧାରଣ ବ୍ୟୁତ୍ପତ୍ତି ଲାଭ କରି ଏ ଅଞ୍ଚଳର ସର୍ବତ୍ର ପରିଚିତ । ଏସବୁର କୃତିତ୍ୱ ଭକ୍ତପ୍ରବର ସଙ୍ଗୀତ ଶେଖର କବି ଗୌରହରିଙ୍କ ଅସାଧାରଣ ପ୍ରତିଭା ଏବଂ ପାଣ୍ଡିତ୍ୟର ଜ୍ୱଳନ୍ତ ନିଦର୍ଶନ । କବି ଗୌରହରି ବୀଣା, ବେହେଲା, ମୃଦଙ୍ଗ ଏବଂ ମର୍ଦ୍ଦଳ ବାଦ୍ୟାଦି ସାଧନ କରି ସଙ୍ଗୀତ ଜ୍ଞାନର ଶିଖର ଦେଶରେ ପହଞ୍ଚି ଅନ୍ୟମାନଙ୍କୁ ତାଙ୍କ ପଥର ପଥିକ କରାଇବାରେ ସଫଳ ହୋଇଥିଲେ । ମୁଖ୍ୟତଃ ଭକ୍ତିପ୍ରାଣତା ସହ ସାଙ୍ଗୀତିକ ଉତ୍କର୍ଷତା ତାଙ୍କ ଶିଷ୍ୟଙ୍କ ଗହଣରେ ଅସୀମ ପ୍ରେମ, ସୌହାର୍ଦ୍ଦ୍ୟ ଏବଂ ପ୍ରେରଣା ଜାଗ୍ରତ କରିବାରେ ସହାୟକ ହୋଇଥିଲା ।

କବି ଗୌରହରି ବାଦକ ଭାବରେ ଯେପରି କୃତିତ୍ୱ ଅର୍ଜନ କରିଥିଲେ, ତଥେ ଗାୟକ ଭାବେ ମଧ୍ୟ ସେ ଅଦ୍ୱିତୀୟ ପ୍ରତିଭାର ଅଧିକାରୀ ଥିଲେ । ତାଙ୍କ ସୁଲଳିତ କଣ୍ଠସ୍ୱର ଶୁଣି ଆବାଳବୃଦ୍ଧବନୀତା ଆତ୍ମବିଭୋର ହୋଇଯାଉଥିଲେ । ଶୁଣାଯାଏ, ଦିନେ କବି ସ୍ଥାନୀୟ ବଡ଼ ରାଧାକାନ୍ତ ମଠ ପ୍ରାଙ୍ଗଣରେ ନିଜର ପ୍ରିୟ ବୀଣାଯନ୍ତ୍ରଟି ଧରି ସ୍ୱକୃତ ଚଉପଦୀ ଗାନ କରୁଥାନ୍ତି । ଏହି ସମୟରେ ହଠାତ୍ ଏକ ନାଗସାପ ବୀଣାର ଏକ ତାରକୁ ସାମାନ୍ୟ ଆଘାତ କରି ଚାଲିଯାଇଥିଲା । କବି ଗୌରହରି ଚମକି ପଡ଼ି ସଙ୍ଗେ ସଙ୍ଗେ ଗାନ ଏବଂ ବାଦନ ବନ୍ଦ କରିଦେଇଥିଲେ । ଏହି ଅଲୌକିକ ଘଟଣା ଦର୍ଶନ କରି ଉପସ୍ଥିତ ଶ୍ରୋତା ଆଚମ୍ବିତ ହୋଇଯାଇଥିଲେ । ଅହଙ୍କାରୀ ଫଣି ମଧ୍ୟ କବିଙ୍କ ଗାନ ଏବଂ ବାଦନ ଦ୍ୱାରା ଆକର୍ଷିତ ହୋଇଥିଲା, ଏହି ଘଟଣା ତାର ଏକ ମୂକ ପ୍ରମାଣ ଅଟେ ।

କବି ଗୌରହରି ଥିଲେ ତଥେ ବହୁ ଭାଷା ପ୍ରବୀଣ । ସେ ମାତୃଭାଷା ବ୍ୟତୀତ ସଂସ୍କୃତ,ବଙ୍ଗଳା,ହିନ୍ଦି ଏବଂ ତେଲୁଗୁ ଭାଷାରେ ଅସାଧାରଣ ପାଣ୍ଡିତ୍ୟଲାଭ କରିଥିଲେ । ତାଙ୍କର ଜ୍ଞାନ କେବଳ ପାରଳା ଏବଂ ମଞ୍ଜୁଷାର ଭୌଗଳିକ ସୀମା ମଧ୍ୟରେ ସୀମିତ ହୋଇ ରହିନଥିଲା । କବି ଗୌରହରିଙ୍କ ବହୁମୁଖୀ ପ୍ରତିଭା ଏବଂ ପାଣ୍ଡିତ୍ୟ ଗଞ୍ଜାମ ଜିଲ୍ଲାର ସମସ୍ତ ଅଞ୍ଚଳକୁ ପ୍ରଭାବିତ କରିଥିଲା । ତଳନ୍ତର ଅଧୀଶ୍ୱର ରାମକୃଷ୍ଣ ଛୋଟରାୟ, ଧରାକୋଟ ମହାରାଜା ବୃନ୍ଦସୁନ୍ଦର ସିଂହ ଏବଂ ଅନ୍ୟାନ୍ୟ ରାଜା ମହାରାଜାଙ୍କ ଦ୍ୱାରା ମଧ୍ୟ ସେ ସମ୍ମାନିତ ହୋଇଥିଲେ । ମୁଖ୍ୟତଃ ଗୌରହରିଙ୍କ ଅସାଧାରଣ କବିତ୍ୱ, ଅଦ୍ୱିତୀୟ ବାଦନ ଓ ଗାୟନ ଏବଂ ଚୈତନ୍ୟଙ୍କ ପ୍ରଚାରିତ ବୈଷ୍ଣବ ଧର୍ମର ମର୍ମସ୍ପର୍ଶୀ ବ୍ୟାଖ୍ୟାନ ସମସ୍ତଙ୍କୁ ମନ୍ତ୍ର ମୁଗ୍ଧ କରିପାରିଥିଲା ।

କବି ଗୌରହରି ଚୈତନ୍ୟଙ୍କ ପ୍ରତିପାଦିତ ମତକୁ ଆପଣାର ଜୀବନାଦର୍ଶ ଭାବେ ଗ୍ରହଣ କରିଛନ୍ତି । ସେ ମଞ୍ଜରୀ ସଖୀ ଭାବାବେଶେ ପଦମାନ ପୂର୍ଣ୍ଣ କରି ଶ୍ରୀରାଧାକୃଷ୍ଣଙ୍କ ନିକୁଞ୍ଜ ଲୀଳା ଗୁଡ଼ିକୁ ଅତି ଚମତ୍କୃତ ଭାବେ ବର୍ଣ୍ଣନା କରିଛନ୍ତି । ଉଦାହରଣ ସ୍ୱରୂପ ଶ୍ରୀରାଧାରାଣୀଙ୍କୁ ପ୍ରିୟ ସଖୀ କହୁଛନ୍ତି -

ହୋଇଥାରେ ବେଶ କୁଞ୍ଜକୁ ଯିବୁ ପରା
ଦେଇଛନ୍ତି ସଙ୍କେତ ସେ ମୁରଲୀଧରା (ପଦ)
କାମ ଚାମରକୁ ଜିଣିବାର କୁନ୍ତଳକୁ ବେଣୀ
ଯତନେ ସଜାଡ଼ି ଖଞ୍ଜି, କେତକୀ ଝରା (୧)
କଞ୍ଜ ଖଞ୍ଜରୀଟ ନେତ୍ର, ଯୁଗଳେ କରି ରଞ୍ଜିତ
ସ୍ମର କାଣ୍ଡ ମାର୍ଗ୍ର ତୁଲ୍ୟ, ଅଞ୍ଜନ ଗିରା (୨)
ଉଚ୍ଚ କୁଚ ଯୁଗେ ଚିତ୍ର, ଲେଖି ମୃଗନାଭି ପତ୍ର

ଭରରେ ଲମ୍ବାଇ ଝୁନ, ମୁକୁତା ହାରା (୩)
ଭଡ ଆଡ ଶ୍ୟାମ ପାଶେ, ପିନ୍ଧି ନୀଳ ଚେଳ ତୋଷେ
ପ୍ରତି ଅଙ୍ଗ ଆଭରଣରେ କରି ତୋରା (୪)
ଗୌରହରି ଭାଷେ ଗୀତେ, ଦୂତୀ ବୋଇଲେ ସୁରତେ
କାନ୍ତ ସଙ୍ଗରେ ମଜିବୁ, ନାଗରୀ ହୀରା (୫)

କବିଙ୍କ ଲେଖନୀରେ ଏହି ସରଳ ଭାଷା ସହ କଳାତ୍ମକ ସୌଷ୍ଠବ ଏବଂ ଭାବ ଗାମ୍ଭିର୍ଯ୍ୟ ବାସ୍ତବିକ ଅଦ୍ୱିତୀୟ । ଏହି ସରଳ ଏବଂ ଚେଳଟମେ ଅଭିବ୍ୟକ୍ତି ଯୋଗୁଁ ପାଠକ ମାନସପଟରେ ଶ୍ରୀ ରାଧାରସରାଜ ପ୍ରଭୁଙ୍କ ଅପୂର୍ବ ଲୀଳାର ନିଖୁଣ ଛବି ଅଙ୍କିତ ହୋଇଅଛି । କିନ୍ତୁ କାବ୍ୟିକ ଓ ସଙ୍ଗୀତମୟତାର ମଧୁର ମିଶ୍ରଣରେହିଁ ଏହାର ସୁବୋଧତା ଓ ସୁଶ୍ରାବ୍ୟତା ହୃଦୟଙ୍ଗମ କରିହୁଏ । ଏହାର ସମୀଚୀନତା ନେଇ, ଅନ୍ତରାୟକ ଅପନା ପାଣିଗ୍ରାହୀଙ୍କ ରେକର୍ଡରେ ସ୍ଥାନ ପାଇଥିବା ଉପରୋକ୍ତ ଗୀତିକା ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ଭାବେ ଗ୍ରହଣଯୋଗ୍ୟ ।

ଏତଦ୍ବ୍ୟତୀତ କବି ଗୌରହରି ସଂସ୍କୃତ ଭାଷାରେ କେତୋଟି କୀର୍ତ୍ତନ ରଚନା କରିଛନ୍ତି । ତାଙ୍କ ରଚିତ ପ୍ରଭାତ ଅବକାଶ, ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳାର ଏକ ପ୍ରତିଛବି । "ଶ୍ରୀଗୁରୁଦେବ ବନ୍ଦନଂ, ସଂସାର ଭାର ନାଶନଂ" ପ୍ରଭୃତି କେତେକ ଗୀତ କବିଙ୍କ ଗୁରୁଭକ୍ତିର ସ୍ୱାକ୍ଷର ବହନ କରିଥାଏ । ଏପରି ଭାବେ ବିଭିନ୍ନ ରସରେ ରସାଣିତ କବିଙ୍କ ଚୌପଦୀ ସମୂହ ବୈଷ୍ଣବ ଭକ୍ତବୃନ୍ଦଙ୍କ ଏକ ଏକ ସ୍ୱାଦିଷ୍ଟ ଫଳ ସଦୃଶ୍ୟ ଅଟେ ।

କବି ଗୌରହରି ସ୍ୱୀୟ ଶ୍ରୀଗୁରୁଦେବଙ୍କ ଅଭୟଚରଣ ଆଶ୍ରୟ କରି ଅଷ୍ଟକାଳ ସେବା, ବଙ୍ଗଳା ଭାଷାରେ ରଚନା କରିଛନ୍ତି । ସେଥିର ଭଣିତି ପଦ ଗୁଡ଼ିକରେ ତାଙ୍କ ଗୁରୁଙ୍କ ନାମ ଶ୍ରୀଗୋବିନ୍ଦ ଦାସ ଥିବା ନିଜେ ସ୍ୱୀକାର କରିଅଛନ୍ତି । ସର୍ବପ୍ରଥମେ ଶ୍ରୀଚୈତନ୍ୟ ଦେବଙ୍କ ଦିନଚର୍ଯ୍ୟା ସମ୍ବନ୍ଧରେ ସୂଚନା ଦେଇ, ଦଶଟି ସର୍ଗରେ ଶ୍ରୀରାଧାକୃଷ୍ଣଙ୍କ ଅଷ୍ଟପ୍ରହର ବ୍ୟାପୀ ବିଭିନ୍ନ ଲୀଳାର ବର୍ଣ୍ଣନା କରାଯାଇଛି । ବଙ୍ଗଳା ଭାଷାରେ ତାଙ୍କର ଅସୀମ ଜ୍ଞାନ ରହିଥିଲା, ଏହା ତାହାର ଏକ ବାସ୍ତୁଷ ପ୍ରମାଣ ମାତ୍ର । କବି ଲେଖିଛନ୍ତି -

ଆପନାର ନିତ୍ୟକୃତ୍ୟ ସାରି ଶଚୀରାନୀ
ଛାବାଲ ଶୟନ ସ୍ଥାନେ ମିଲିଲ ଆପନି (୧)
ଦେଖି ପୁତ୍ର ମୁଖ ପଦ୍ମ ହରଷିତ ହୟା
ଅତି ପ୍ରେମ ଭରେ ଲାଲିତ ବଚନ କହିୟା (୨)
ଉଠ ବାଛା ଉଠ ବାଛା ହୈଲ ପ୍ରାତଃ କାଲ
ଡାକିତେ ଆସିଛେ ତୋରେ ସକଲ ଛାବାଲ (୩)

ସଘନେ ଉଠହ ବାଛା ଆଳସ ତେଜିୟାଂ
ଶିଶୁ ସଙ୍ଗେ ଆଙ୍ଗନଚେ ଖେଳାଇର ଯାୟାଂ (୪)
ଶୁନି ମାୟେର ବଚନ ଉଠି ଗୌରହରି
ମାୟେ ନମସ୍କାର କୈଲ ଦୁଇ କର କରି (୫)
ତବେ ଶଚୀମାତା ମୁଖ ପ୍ରକ୍ଷାଲନ କୈଲ
ଆପନାର ବସନେତେ ଶ୍ରୀମୁଖ ମାଜିଲ (୬) ଇତ୍ୟାଦି ..

କବିଙ୍କ ରଚିତ ତିନୋଟି 'ଚାତୁର୍ଭାଷା' ଗୀତମଧ୍ୟ ଦୃଷ୍ଟିଗୋଚର ହୁଏ, ଯାହା ଓଡ଼ିଆ, ବଙ୍ଗଳା, ତେଲୁଗୁ ଏବଂ ହିନ୍ଦି ଭାଷାର ସମ୍ମିଶ୍ରଣରେ ଲିଖିତ । ଗୋଟିଏ ଗୀତରେ କିୟଦଂଶ ପାଠକଙ୍କ ଗୋଚରାର୍ଥେ ଉଲ୍ଲେଖ କରୁଛି -

ଅଭିମାନ କରି ହାରାୟାଂ ବଂଶୀଧାରୀ
ଅଖନି ଭାବିଲେ ଆର କି ହବେ
ଧରି ସୁଗଳ କର, କହିଲ୍ୟାଂ କତୋର
ନା ଶୁନିଲି ବଚନ, ଆମାର୍ ଗୋ ପ୍ୟାରିତ ଗୋ (ପଦ)
ପାଣିଗତ ରନେ, ଦାଣି ଦାଣି ନିମନ
ପାଣିରେ ଆଣ ଏଣି ଦୃଶା ଛାଡ଼ି
ଦିଲ୍ଲେ ଦୁଃଖମେଁ, ଧୁଣା ପାଟା ଯାବା କହିଁ
ପାବେଗା କୋଇ,ଶୁନେ ନହିଁ
ଆନା ପାରାଧୁନା ନିନ୍ଦ୍ୟୁନି ତୁଷୁନି
ନେନାୟା ନୋଲ୍ଲା କେଟୁ ବିଚୁଟା ନେରା
ନା ତୁଝି ଆପନାର କାଯ କୈଲେ କି ଆର
ତୁଆ ପଇବେ ଏକବାର, ମନେ କରି ବିଚାର (୧) ଇତ୍ୟାଦି ...

କବି ଗୌରହରିଙ୍କ ବିରଚିତ ସ୍ୱର ସାହିତ୍ୟ ସମ୍ବଳିତ ଆଠଟି ପଦବର୍ଣ୍ଣ ମଧ୍ୟ ଲୋକଲୋଚନକୁ ଆସିଛି । ଏହା ତାଙ୍କ ସଙ୍ଗୀତ ବିଦ୍ୟା ପାରଦର୍ଶିତାର ଏକ ପ୍ରକୃଷ୍ଟ ମାପକାଠି । ଗୋଟିଏ ଗୀତର ଲିଖିତ ନମୁନା ଏଠାରେ ପ୍ରକାଶ କରାଗଲା ।

ସରିକିରେ ଗୋରି ତୋତେ କହିବାର ଏପରି
ଧରି ଚିତ୍ତେ ଅଭିମାନ, କରି ଅତି ଅପମାନ
ବରଜିଲୁ ଗିରିଧାରୀକି (ପଦ)

ଗାରିଗାମାଗାମାଗା । ପାମାପାଗାମାପାମାଗା । ମାଗାଗାରି ।
ପହିଲୁ କେତେ ହିତେ । କହିଲେ ନଧେନି ଚିତ୍ତେ । ଅହିତୁ ।
ରିଗାମାଗାଗାରିରିସା । ରିଗାମାପା । ଗାମାପାଧାମାପା ।
ଚହିଲୁ ଅତିଶୟରେ । ଏହା ତୋର । ତୁହଇ ବିହିତ ।
ଗାମାଗାରିଗାମାଗାପା । ଗାମାପାଧାମାପା । ଗାମାଗାରି ।
ଦାହ ହେମ ବରନାରେ । ବହି ହରଷକୁ । ଚାହାଁଚାହାଁ ।
ରିଗାମାଗାପାମାଧାପାମାପା । ଗାମାପାଧାନିସା । ନିଧାପାଧାମାଧାପା
କହିକିରେ ସହି ଏହିପରି । ମହୀ ମହିଳାକୁ । ଚହିଁ ନବସରେ ତୁହିଁ ।
ମାଧାପାଧାମାପାଗାମାପାଗା । ଗାମାରିଗାମାମା । ଗାମାମାପା ।
ନହିଁ କେହି ଆଉ ଆହା ବୋ ଲି ।ତାହାକୁ ପଦେକ । ସୁହୃଦରେ ।
ଧାପାଧାମାପା । ଗାମାପାଗାମାଗାରିସା ।
କହିବ ଦଣେ । ତୋହ ବିନାରେ ନବିନା । ୧। (ଇତ୍ୟାଦି)

ସମ୍ଭବତଃ ରାଜସଭା ଗୁଡ଼ିକରେ କବିଚାତୁର୍ଯ୍ୟ ଏବଂ ସାଙ୍ଗୀତିକ ଉତ୍କର୍ଷତା ପ୍ରତିପାଦନ ନିମନ୍ତେ ଉପରୋକ୍ତ ନୂତନଶୈଳୀ ଗୌରହରିଙ୍କ ଦ୍ୱାରା ସର୍ବପ୍ରଥମେ ପ୍ରଚଳନ କରାଯାଇଥିଲା ।. କାରଣ, ଏତାଦୃଶ ଶୈଳୀ ପାରଳା ବ୍ୟତୀତ ତାଙ୍କ ସମସାମୟିକ ଅନ୍ୟ ଦାଗାର କୌଣସି କବିଙ୍କ ରଚନାରେ ଦେଖିବାକୁ ମିଳେ ନାହିଁ ।

ସଂସ୍କୃତ ଭାଗବତ ଅବଲମ୍ବନରେ "ବସ୍ତ୍ରାପହରଣ" କବି ଗୌରହରିଙ୍କ ରଚିତ ଅନ୍ୟ ଏକ ଶ୍ରେଷ୍ଠ କୃତି । ସର୍ବପ୍ରଥମେ ଶ୍ରୀଚୈତନ୍ୟଙ୍କ ଉଦ୍ଦେଶରେ ଏକ ବନ୍ଦନା ଲେଖିଛନ୍ତି । ତତ୍ପରେ ହିମକାଳ ବର୍ଣ୍ଣନା କରି ପ୍ରସଙ୍ଗର ଅବତାରଣା କରିଅଛନ୍ତି । ମୁଖ୍ୟତଃ ମୂଳଗ୍ରନ୍ଥର ଚବିଶିଟି ଶ୍ଲୋକକୁ ଚୌପଦୀ ମାଧ୍ୟମରେ ଓଡ଼ିଆରେ ଅନୁବାଦ କରିଛନ୍ତି । କବିଙ୍କ ହିମ ବର୍ଣ୍ଣନା ଅତ୍ୟନ୍ତ ସରଳ ଏବଂ ଭାବପୂର୍ଣ୍ଣ । ଏଥିରେ ଶୀତଋତୁର ଏକ ଅବିକଳ ଚିତ୍ର ଉପସ୍ଥାପନା କରାଯାଇଛି । ଉଦାହରଣ ଦେଖନ୍ତୁ -

ହୋଇବାରୁ ହିମ ପ୍ରବେଶ । ଆସି ଦିବସ
ଅତିଶୟରେ ହେଲା କୃଶ । ଏକାଳ ବଶ (ପଦ)
ବିଶେଷରେ ବିଭାବରି । ବଢ଼ିବାରୁ କାମିନାରୀ
ପୁରୁଷେ ହରଷେ ପୁରି । ରତି କଲେ ବିଶେଷ (୧)
ହିମାଳୟରୁ ବାତ । ଆସି ହେଲାନି ସମ୍ଭୁତ
ତୁଷାର ପଡ଼ି ବହୁତ । କରିବ ଦେହକୁ ନାଶ (୨)
ଅଗ୍ନିକୋଣରୁ ଆସି । ସବିତା ଦେବତା ବସି
ରହିଲେ ଶୀତକୁ ତ୍ରାସି । ତେଜ ନକରି ପ୍ରକାଶ (୩)
ବିଛେଦ ଭରେ ଆକୁଳ । ହୋଇ ଚକ୍ରବାକ କୁଳ
କରି ଧ୍ୱନି କଳକଳ । ଚିତ୍ତରେ ହୋଇ ବିରସ (୪)
ଯୁବତୀଙ୍କର ସ୍ତନ । ତେଜୁ ନଛାଡ଼ି ଅନ-
ତରତରେ ରଖି ମନ । ଛାଡ଼ିଲେ ସକଳ ଆଶ (୫)
କହେ ଦ୍ୱିଜ ଗୌରହରି । ହିମକାଳ ଦେଖିକରି
ଅନଳ ଆଶ୍ରୟ କରି । ଚଳିଲେ ରାତି ଦିବସ (୬)

କବି ଗୌରହରି ଭକ୍ତ ଜୟଦେବଙ୍କ 'ଗୀତଗୋବିନ୍ଦ'କୁ 'ଭାଷା ସଙ୍ଗୀତ ବିନୋଦ' ନାମକରଣ କରି ସର୍ବପ୍ରଥମେ ଓଡ଼ିଆ ଭାଷାରେ ଅନୁବାଦ କରିଅଛନ୍ତି । ଏହି ଅନୁବାଦଟି ମଧ୍ୟ ସଙ୍ଗୀତ ଚୌପଦୀ ମାଧ୍ୟମରେ ହିଁ କରାଯାଇଛି । ଉଦାହରଣ ସ୍ୱରୂପ, ମୂଳ ଗୀତଗୋବିନ୍ଦର ଏକ ଶ୍ଳୋକ ତଳେ କବିଙ୍କ ଅନୁବାଦିତ ଏକ ଚୌପଦୀ ପାଠକଙ୍କ ସମୀକ୍ଷାର୍ଥେ ପ୍ରଦାନ କରାଗଲା -

ବସନ୍ତେ ବାସନ୍ତୀ କୁସୁମ ସୁକୁମାରୈଁ ରବୟବୈ
ଭ୍ରମନ୍ତୀ କାନ୍ତାରେ ବହୁ ବିହିତ କୃଷ୍ଣାନୁସରଣାଂ
ଅମନ୍ଦ କନ୍ଦର୍ପଜ୍ୱରଜନିତ ଚିନ୍ତା କୁଳତୟା
ବଳଦ୍ବାଧାଂ ରାଧାଂ ସରସ ମିଦ ମୂଚେ ସହଚରୀ ।।"

ଅନୁବାଦ - ସରସ ବଚନମାନକୁ
ବସନ୍ତରେ କହି ଆଳୀ ଶ୍ରୀରାଧାଙ୍କୁ (ପଦ)
ମାଧବୀ ସୁମନସ ପରିରେ କୋମଳ
ପ୍ରତି ପ୍ରତିଙ୍କ ନିକରଯେ ତାହାଙ୍କୁ (୧)
ଦୁର୍ଗମ ଅରଣ୍ୟରେ, ହରିଙ୍କି ଲୋଡ଼ିବାରେ
ଭ୍ରମଣ କରୁଅଛନ୍ତିଯେ ତାହାଙ୍କୁ (୨)

ବିଶେଷରେ ସୁରତ୍ନର ଜାତ ହୋବାକୁ
ଦୁଃଖରେ ଆକୁଳ ଚିତ୍ତ ଯେ ତାହାଙ୍କୁ (୩)
କହେ ଗଉରହରି, ବିଶୋଈଙ୍କୁ ଏପରି
ଘେନାଇ ଅତି ଯତ୍ନରେ ମାନସକୁ (୪)

'ବସ୍ତ୍ରାପହରଣ' ଏବଂ 'ଭାଷା ସଙ୍ଗୀତବିନୋଦ' କବି ଗୌରହରିଙ୍କ ଅନୁବାଦ କୁଶଳତାର ପରିଚୟ ପ୍ରଦାନ କରିଥାଏ । ଅନୁବାଦ ସାହିତ୍ୟର ଆଦ୍ୟ ଉନ୍ମେଷ ଭାବେ, ଏହା ପରବର୍ତ୍ତୀ ଅନୁବାଦକଙ୍କୁ ଯେ ପ୍ରେରଣା ଯୋଗାଇଥିବ, ଏଥିରେ ସନ୍ଦେହ ନାହିଁ।

ଏତଦ୍‌ବ୍ୟତୀତ କବି ଗୌରହରି 'ପ୍ରହ୍ଲାଦ ନାଟକ' ରଚନା କରିଛନ୍ତି । ସେହି ନାଟକଟି ଜଳନ୍ତର ଅଧୀଶ୍ୱର ରାମଚନ୍ଦ୍ର ଛୋଟରାୟଙ୍କ ନାମରେ ଅଙ୍କିତ ହୋଇଥିବା ଜଣାଯାଏ । କିନ୍ତୁ ଏହି ନାଟକଟି ଅଦ୍ୟାପି ପ୍ରକାଶ ପାଇନାହିଁ । ଗୌରହରି ଗ୍ରନ୍ଥାବଳୀର ଭୂମିକାରେ ଉଲ୍ଲେଖ ଅଛି - ତାହା ଜଳନ୍ତର ନିବାସୀ ସଙ୍ଗୀତ ଭୂଷଣ କଳକୌଶଳରେ ଆପଣାର ହସ୍ତଗତ କରି, ପରିଛାଙ୍କ ସ୍ୱର୍ଗାରୋହଣ ପରେ ସ୍ୱନାମରେ ଅଙ୍କିତ କରି ଗଞ୍ଜାମର ବିଭିନ୍ନ ରାଜବାଟିରେ ପ୍ରଚାର କଲେ । ଅତଏବ, ସେହି ନାଟକ ଏହି ପୁସ୍ତକରେ ପ୍ରଦର୍ଶ ହେଲା ନହିଁ ।

ଏହି ପରିପ୍ରେକ୍ଷୀରେ ଏଠାରେ ଉଲ୍ଲେଖଯୋଗ୍ୟଯେ, ଓଡ଼ିଶାର ପ୍ରଥମ ନାଟକ ରଚୟିତା ରଘୁନାଥ ପରିଛା ଥିଲେ କବି ଗୌରହରିଙ୍କ ସମସାମୟିକ । ରଘୁନାଥ ପରିଛାଙ୍କ ଜନ୍ମ ୧୭୯୫ ଖ୍ରୀଷ୍ଟାବ୍ଦରେ ହୋଇଥିବା ବେଳେ, କବି ଗୌରହରିଙ୍କ ଜନ୍ମ ଠିକ୍ ଏକବର୍ଷ ପୂର୍ବରୁ ହୋଇଥିଲା । ତେଣୁ କାଳ ନିରୂପଣ ଦୃଷ୍ଟିରୁ କବି ଗୌରହରିଙ୍କ ପ୍ରହ୍ଲାଦ ନାଟକକୁ (ଅପ୍ରକାଶିତ) ନିଶ୍ଚିତ ଭାବେ ଓଡ଼ିଆ ନାଟକ ରଚନା ଶୈଳୀର ଅନ୍ୟତମ ଆଦ୍ୟ ଉନ୍ମେଷ ଭାବେ ଗ୍ରହଣ କରାଯାଇପାରେ । ତେଣୁ ସେହି ନାଟକଟି ପ୍ରକାଶ ପାଇଲେ ସମାଲୋଚକଙ୍କ ଦ୍ୱାରା ତାର ପୁଙ୍ଖାନୁପୁଙ୍ଖ ଆଲୋଚନାର ପଥ ଉନ୍ମୁକ୍ତ ହୁଅନ୍ତା ।

ଡକ୍ଟର୍ କାହ୍ନୁଚରଣ ମିଶ୍ର "ସୃଷ୍ଟି ଓ ସମୀକ୍ଷା" ପୁସ୍ତକରେ 'ଗୌରହରି ପରିଚୟ' ଶୀର୍ଷକ ପ୍ରବନ୍ଧରେ ଲେଖିଛନ୍ତି - "ଉନବିଂଶ ଶତାବ୍ଦୀର ଶେଷ ଦଶକର ଶ୍ରୀଯୁକ୍ତ ଦାମୋଦର ପଟ୍ଟନାୟକ ତାଙ୍କର ସଙ୍ଗୀତସାଗର ଓ ସଙ୍ଗୀତସର୍ବସ୍ୱାର ପୁସ୍ତକମାନଙ୍କରେ ଏହାଙ୍କ ରଚିତ ଅନେକ ଗୁଡ଼ିଏ ସଙ୍ଗୀତ ସର୍ବପ୍ରଥମେ ସଂଗ୍ରହ କରି ପ୍ରକାଶ କରିଥିଲେ । ତତ୍ପରେ ଶ୍ରୀ ଗୋପାଳବଲ୍ଲଭ ଦାସଙ୍କ ପ୍ରୀତି ସୁଧାକର (ପ୍ରଥମ ପ୍ରକାଶ ୧୯୦୬) ରେ ଏହାଙ୍କର କୋଡ଼ିଏଗୋଟି ସଙ୍ଗୀତ ସଙ୍କଳିତ ହୋଇଥିବା ପରିଲକ୍ଷିତ ହୁଏ । ଶ୍ରୀଯୁକ୍ତ ଅପନ୍ନା ପଣ୍ଡା ତାହାଙ୍କ ଉତ୍କଳ ସାହିତ୍ୟର ଇତିହାସ ୨ୟ ଭାଗ (ପ୍ରଥମ ପ୍ରକାଶ ୧୯୨୮) ରେ ଗୌରହରି ପରିଛାଙ୍କ ସମ୍ପର୍କରେ ଯତ୍‌ସାମାନ୍ୟ ଉଲ୍ଲେଖ କରିଅଛନ୍ତି ।"

କିନ୍ତୁ କବି ଗୌରହରିଙ୍କ ରଚିତ ପ୍ରାୟ ସମସ୍ତ କୃତି, ଯଥା - ପଦ୍ୟମାଳା, ଚାତୁର୍ଭାଷା ଗୀତ, ପଦବର୍ଣ୍ଣ, ଅଷ୍ଟକାଲସେବା, ବସ୍ତ୍ରାପହରଣ ଓ ଭାଷାସଙ୍ଗୀତ ବିନୋଦ ଏକ ପୂର୍ଣ୍ଣାଙ୍ଗ ରୂପ ନେଇ "ଗୌରହରି ଗ୍ରନ୍ଥାବଳୀ" ନାମରେ ୧୯୨୬ ଖ୍ରୀଷ୍ଟାବ୍ଦରେ ସ୍ଥାନୀୟ ଗଜପତି ପ୍ରେସ୍‌ରୁ ପ୍ରକାଶ ପାଇଥିଲା । ପାରଳାଖେମୁଣ୍ଡି ମହାରାଜା ସ୍ୱର୍ଗତ କୃଷ୍ଣଚନ୍ଦ୍ର ଗଜପତି ଏହାର ପ୍ରକାଶନ ଭାର ଗ୍ରହଣ କରି ଓଡ଼ିଆ ସାହିତ୍ୟ ଭଣ୍ଡାରର ଏକ ଅମୂଲ୍ୟ ରତ୍ନ ଉଦ୍ଧାର କରିଥିଲେ ।

କବି ଗୌରହରି ଥିଲେ ଜଣେ ଗୌଡ଼ୀୟ ବୈଷ୍ଣବ । ପ୍ରେମଭକ୍ତିରେ ବିହ୍ୱଳ ହୋଇ ପାରଳାର ମଠ ମନ୍ଦିରାଦିରେ ହରିନାମ ସଙ୍କୀର୍ତ୍ତନ କରି ସେ କାଳାତିପାତ କରୁଥିଲେ । ପ୍ରତ୍ୟହ ବ୍ରାହ୍ମମୁହୂର୍ତ୍ତରେ ଶଯ୍ୟାତ୍ୟାଗ କରି ନିତ୍ୟନୈମିତ୍ତିକ କର୍ମ ସମାପନାନ୍ତେ ଶ୍ରୀରାଧାକୃଷ୍ଣଙ୍କ ତୁଳସୀ ଚରଣାମୃତ ସେବନ କରି ଭକ୍ତିଗ୍ରନ୍ଥ ପଠନ ଏବଂ କବିତାଦି ରଚନାରେ ସେ ନିଜକୁ ନିୟୋଗ କରୁଥିଲେ । ସେହିପରି ସନ୍ଧ୍ୟା ଆରତି ଦର୍ଶନାନ୍ତେ ସାଧୁଜନଙ୍କ ସହ ଶାସ୍ତ୍ରାଲୋଚନାରେ ମନୋନିବେଶ କରୁଥିଲେ । ସେଣୁ ଏକ ପଦରେ କହିବାକୁ ଗଲେ, ସେ ଥିଲେ ଶ୍ରୀରାଧାଗୋବିନ୍ଦଙ୍କର ପରମଭକ୍ତ । ଏହାହିଁ ଥିଲା ତାଙ୍କ ପକ୍ଷେ ସର୍ବଶ୍ରେଷ୍ଠ ଗୌରବ । ଅଶ୍ରୁ ବିଗଳିତ ମୁଖ ଏବଂ ରୋମାଞ୍ଚ ଶରୀରରେ ବୀଣା ଯନ୍ତ୍ରଟିଏ ଧରି ସେ ଯେତେବେଳେ ପଦ୍ୟାବଳୀରୁ ଚୌପଦୀମାନ ସୁଲଳିତ କଣ୍ଠରେ ଗାନ କରୁଥିଲେ, ତାହାଶୁଣି ଶ୍ରୋତାମଣ୍ଡଳୀ ଭଗବତ୍ ପ୍ରେମରେ ଅବାଧରେ ଆକର୍ଷିତ ହୋଇଯାଉଥିଲେ । ଶୁଣାଯାଏ,ଅନ୍ତିମ ଦିବସରେ ମଧ୍ୟ, ଶ୍ରୀ ରାଧାକୃଷ୍ଣଙ୍କ ନାମ କୀର୍ତ୍ତନ କରୁଥିବା ସମୟରେହିଁ ତାଙ୍କର ପରଲୋକ ପ୍ରାପ୍ତ ଘଟିଥିଲା ।

କବି ଗୌରହରି ୧୮୮୪ ଖ୍ରୀଷ୍ଟାବ୍ଦ, ବୈଶାଖ ମାସ ଶୁକ୍ଳପକ୍ଷ ଅକ୍ଷୟ ତୃତୀୟା ଦିବସରେ ଏହି ଇହଲୋକ ଛାଡ଼ି ଚାଲିଯାଇଥିଲେ । କବିଙ୍କୁ ଦର୍ଶନ କରିବା ସୌଭାଗ୍ୟ ଲାଭ କରିଥିବା ପାରଳାର ଅନ୍ୟତମ ସାହିତ୍ୟିକ ସ୍ୱର୍ଗତ ଅପନ୍ନା ପଣ୍ଡା ତାଙ୍କ ରଚିତ "କବି ଜୀବନୀ"ରେ ଗୌରହରିଙ୍କ ସମ୍ବନ୍ଧରେ ଲେଖିଛନ୍ତି -

ଦେଖିଅଛି ତୁମକୁ ମୁଁ ବୃଦ୍ଧ କାଳେ
ଗାଉଥିଲ ରାଧାକୃଷ୍ଣ ନାମ କୁତୁହଳେ ॥
ଆନନ୍ଦରେ ତବ ଦେହ ହେଲେ ରୋମାଞ୍ଚିତ
ହେଉଥିଲା ଅଶ୍ରୁଧାର ନୟନୁ ଗଳିତ ॥
ଶୁଣିଅଛି କୃଷ୍ଣନାମ ମୁଖରେ ଉଚ୍ଚାରି
ଛାଡ଼ିଗଲ ଇହଲୋକ ଆହେ ଗୌରହରି ॥

ପରବର୍ତ୍ତୀ ସମୟରେ, କବି ଗୌରହରିଙ୍କ ପ୍ରପୌତ୍ର ସ୍ୱର୍ଗତ ପ୍ରତାପଚନ୍ଦ୍ର ପରିଛା "ଗୌରହରି ପ୍ରତିଭା" ନାମକ ଏକ ପୁସ୍ତକ ପ୍ରଣୟନ କରି ସବିଶେଷ ଆଲୋଚନା କରିଛନ୍ତି।

କବି ଗୌରହରିଙ୍କ ପୂର୍ଣ୍ଣାବୟବ ଗ୍ରନ୍ଥାବଳୀ ଏକ ଉଜ୍ଜ୍ୱଳ ରତ୍ନ ସଦୃଶ୍ୟ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଆଜି ଆଲୋକିତ କରିପାରିଛି । କବିଙ୍କ କର୍ମମୟ ଜୀବନ ମଧ୍ୟ ଓଡ଼ିଆ ସାହିତ୍ୟ ଇତିହାସରେ ଏକ ସ୍ୱର୍ଣ୍ଣ ଅଧ୍ୟାୟ ସୃଷ୍ଟି କରିଛି । ସେ ଉନଷଠି ବର୍ଷ ଜୀବିତ ରହି ଉନବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟକୁ ଅମୂଲ୍ୟ ଦାନ ଦେଇଯାଇଛନ୍ତି । ତେଣୁ ଯଥାର୍ଥରେ ସେ ଥିଲେ ଜଣେ ଶତାବ୍ଦୀ ପୁରୁଷ । ସାହିତ୍ୟ ଏବଂ ସଙ୍ଗୀତରେ ବିକାଶ ନିମନ୍ତେ କବି ଗୌରହରିଙ୍କୁ ଏକ ବିରାଟ ଅନୁଷ୍ଠାନ କହିଲେ ଅତ୍ୟୁକ୍ତି ହେବନାହିଁ ।



# କବିଚନ୍ଦ୍ର ରଘୁନାଥ ପରିଛା

ଊନବିଂଶ ଶତାବ୍ଦୀର ଭକ୍ତକବି ମାନଙ୍କ ମଧ୍ୟରେ କବିଚନ୍ଦ୍ର ରଘୁନାଥ ପରିଛା ଅନ୍ୟତମ । ସେ ୧୨୯୫ ଖ୍ରୀଷ୍ଟାବ୍ଦ ଫାଲ୍‌ଗୁନ ମାସ ଶୁକ୍ଳପକ୍ଷ ଦ୍ୱିତୀୟା ତିଥିରେ ରବିବାର ଦିନ ପାରଳାଖେମୁଣ୍ଡିର କଟେଇଆ ସାହିରେ ଜନ୍ମଗ୍ରହଣ କରିଥିଲେ । ସେହିଦିନ କେହି ସ୍ୱପ୍ନରେ ସୁଦ୍ଧା ଭାବିନଥିଲେଯେ, ଏହି ଶିଶୁ ସମଗ୍ର ଓଡ଼ିଶାରେ ଜ୍ୟୋତି ବିଚ୍ଛୁରିତ କରିବେ । କିନ୍ତୁ ପରବର୍ତ୍ତୀ ସମୟରେ ମେଘ ଶୂନ୍ୟ ଆକାଶରେ ପୂର୍ଣ୍ଣଚନ୍ଦ୍ର ସମ ପ୍ରତିଭାତ ହୋଇଥିଲେ । ତାଙ୍କ ପିତାଙ୍କ ନାମ ଥିଲା ଚନ୍ଦ୍ରଶେଖର ପରିଛା ଏବଂ ମାତାଙ୍କ ନାମ ହୀରାମଣି । ସେ ଅମ୍ବିକା ନାମ୍ନୀ ଜଣେ ପତିପରାୟଣା ନାରୀଙ୍କୁ ବିବାହ କରିଥିଲେ । ସେ ଏକାଧାରରେ ଥିଲେ ଜଣେ କବି, ସଙ୍ଗୀତଜ୍ଞ ଏବଂ ଗାୟକ । ଜ୍ୟୋତିଷ ଶାସ୍ତ୍ରରେ ମଧ୍ୟ ତାଙ୍କର ଅସାଧାରଣ ପାଣ୍ଡିତ୍ୟ ରହିଥିଲା । ଅଲୌକିକ ସ୍ମୃତିଶକ୍ତି ଓ ପ୍ରଗାଢ଼ ପାଣ୍ଡିତ୍ୟ ସହ, ତାଙ୍କର ଶାନ୍ତ, ବିନୟ ଏବଂ ଚତୁର ସ୍ୱଭାବ ଯୋଗୁଁ ସେ ସର୍ବତ୍ର ପ୍ରଶଂସିତ ହୋଇଥିଲେ ।

ପାରଳାଖେମୁଣ୍ଡି ନିକଟବର୍ତ୍ତୀ ଲିଚ୍ଛୁରି ଗ୍ରାମରେ, ଶ୍ରୀଗୋପୀନାଥ ମହାପ୍ରଭୁଙ୍କ ମନ୍ଦିରରେ, ରାଜନିଯୋଗରେ ଯୋଗ୍ୟତା ପ୍ରଦର୍ଶନ କରି, କବିଚନ୍ଦ୍ରଙ୍କର କେଉଁ ପୂର୍ବ ବଂଶଧର ମହାରାଜାଙ୍କ ଠାରୁ ପରିକ୍ଷା ସାଢ଼ି ପାଇଥିବା ଶୁଣାଯାଏ । ସେହିଦିନରୁ ସେମାନେ 'ପଣ୍ଡା' ପରିବର୍ତ୍ତେ 'ପରିକ୍ଷା' ଭାବରେ ପରିଚିତ ହୋଇ ଆସୁଛନ୍ତି । ପରବର୍ତ୍ତୀ ସମୟରେ, ଲୋକମୁଖରେ 'ପରିକ୍ଷା' ଶବ୍ଦର ଅପଭ୍ରଂଶ ହୋଇ, ସେମାନେ 'ପରିଛା' ଭାବରେ ପରିଚିତ ହୋଇଥିବା ଜଣାଯାଏ ।

କବିଚନ୍ଦ୍ର ରଘୁନାଥ ପରିଛା, ସେହି ପରିଛା ବଂଶର ଉପଯୁକ୍ତ ଦାୟାଦ ଭାବେ, ପରମ୍ପରାନୁଯାୟୀ କେତେକ ଦାୟିତ୍ୱ ଗ୍ରହଣ କରିଥିଲେ । ସେ ବ୍ରାହ୍ମଣ କୁଳ ପଞ୍ଚାୟତର ସଭାପତି ଥିଲେ । ସଭାପତି ଭାବେ କେଉଁ ଅଭିଯୁକ୍ତ ବ୍ରାହ୍ମଣଙ୍କୁ ଜାତିରେ ଗ୍ରହଣ କରାଯିବ ଏବଂ କେଉଁମାନଙ୍କୁ ବର୍ଜନ କରାଯିବ, ତାହା ବିଚାର କରିବା ଥିଲା ତାଙ୍କର ମୁଖ୍ୟ କାର୍ଯ୍ୟ । ତାପରେ ଏହାଙ୍କ ମତକୁ ପାରଳାଖେମୁଣ୍ଡି ମହାରାଜାଙ୍କ ନିକଟକୁ ଅନୁମୋଦନ ନିମନ୍ତେ ପଠାଯାଉଥିଲା ।

ଦ୍ୱିତୀୟତଃ, ଜ୍ୟେଷ୍ଠ ମାସ ଶୁକ୍ଳପକ୍ଷ ଦଶମୀ ତିଥିରେ, ପାରଳାଖେମୁଣ୍ଡିର ଶ୍ରୀଗୁଣ୍ଡିଚା ମନ୍ଦିରରେ ଯେଉଁ ଆଡ଼ପମଣ୍ଡପ ଭୋଜି ହୁଏ, ସେଥିରେ ସେ ଶ୍ରେଷ୍ଠ ଭୂମିକା ଗ୍ରହଣ କରୁଥିଲେ । ପାରଳାର ବ୍ରାହ୍ମଣ ଶାସନ ମାନଙ୍କରୁ ଶତାଧିକ ସମ୍ମାନିତ ବ୍ରାହ୍ମଣ ଏଥିପାଇଁ ନିମନ୍ତ୍ରିତ ହେଉଥିଲେ । ସେହି ଭୋଜିରେ କବିଚନ୍ଦ୍ର ରଘୁନାଥ ପରିଛା, ବିଧାନ ଅନୁଯାୟୀ ପ୍ରତ୍ୟେକଙ୍କୁ ଘିଅ ପରସୁଥିଲେ। ତାପରେ ଭୋଜନ ନିମନ୍ତେ ଏହାଙ୍କୁ ସ୍ୱତନ୍ତ୍ର ସ୍ଥାନ ଦେଇ, ଦୁଇଟି ଖଲିରେ ଭୋଜି ବଢ଼ାଯାଉଥିଲା।

ଏସବୁ ପ୍ରଚଳିତ ପ୍ରଥା ସହ ପାରଳାଖେମୁଣ୍ଡି ମହାରାଜାଙ୍କ ଦ୍ୱାରା ପ୍ରଦତ୍ତ ପରିଛା ଉପାଧି ନିବିଡ଼ ଭାବରେ ସଂଶ୍ଳିଷ୍ଟ ଥିବା ମନେ ହୁଏ। ତେଣୁ ଏହି ଉପାଧିକୁ ବ୍ରାହ୍ମଣ କୁଳର ଶ୍ରେଷ୍ଠ ମର୍ଯ୍ୟାଦା ସୂଚକ ଭାବେ ଗ୍ରହଣ କରାଯାଇପାରେ ।

ପରିଛା ବଂଶର ମୂଳଶାଖା ପ୍ରଥମେ କାନ୍ୟକୁବ୍ଜ ଏବଂ ପରେ କଟକ ଜିଲ୍ଲାର ଉତ୍ତର ଯାଜପୁରରେ ବସତି ସ୍ଥାପନ କରିଥିବା ମଧ୍ୟ ଶୁଣାଯାଏ। କିନ୍ତୁ ତାପରେ ଏମାନେ ପାରଳାଖେମୁଣ୍ଡିକୁ ନିଜର ବାସସ୍ଥାନ ଭାବେ ଗ୍ରହଣ କରିଛନ୍ତି । ସମ୍ଭବତଃ ଏମାନେ, ସ୍ଥାନୀୟ ମହାରାଜାଙ୍କ ପୃଷ୍ଠପୋଷକତାରେ ଏ ଅଞ୍ଚଳକୁ ଚାଲିଆସିଥିବେ। ତାପରେ କାନ୍ୟକୁବ୍ଜ-ଉଦ୍ଭବ ଶ୍ରେଷ୍ଠ ବ୍ରାହ୍ମଣ ଭାବେ, ନିକଟବର୍ତ୍ତୀ ଲିହୁରି ଗ୍ରାମର ଶ୍ରୀଗୋପୀନାଥ ମନ୍ଦିରରେ ନିଯୁକ୍ତ ହୋଇ, ମହାରାଜାଙ୍କ ଠାରୁ ପରିଛା ପାଢ଼ି ପାଇଥିବା ମଧ୍ୟ ଅଧିକ ଯୁକ୍ତିଯୁକ୍ତ ମନେ ହୁଏ ।

ସମ୍ଭବତଃ ଶ୍ରୀବଙ୍କେଶ୍ୱର ପଣ୍ଡିତ ନାମକ କବିଚନ୍ଦ୍ରଙ୍କର କେଉଁ ବଂଶଧର ପରିଛା ପାଢ଼ି ପ୍ରାପ୍ତ ହୋଇଥିବା ଅନୁମାନ କରାଯାଏ । କାରଣ, ସ୍ୱର୍ଗତ ରଘୁନାଥ ପରିଛା, ସ୍ୱକୃତ "ଗୋପୀନାଥବଲ୍ଲଭ" ନାଟକର ପଞ୍ଚମ ପୃଷ୍ଠାରେ ତାଙ୍କ ନାମ ଉଲ୍ଲେଖ କରି ଲେଖିଛନ୍ତି -

ଅଦ୍ୱୈତ ମତ ଖଣ୍ଡନ, ଦ୍ୱୈତ ମତ ସ୍ଥାପନ,
ବ୍ରହ୍ମ ସମ୍ପ୍ରଦାୟ ନିଜ ଭକ୍ତ ସମ୍ପ୍ରଦାୟ
ଶ୍ରୀ ବଙ୍କେଶ୍ୱର ପଣ୍ଡିତ ପରିବାର
ରଘୁନାଥ କବିଚନ୍ଦ୍ର କରିବାର
ଶ୍ରୀଶ୍ରୀଶ୍ରୀ ରାଧା ଗୋପୀନାଥବଲ୍ଲଭ ନାଟକ ।।

ଶ୍ରୀବଙ୍କେଶ୍ୱର ପଣ୍ଡିତ, ଜଣେ ଅସାଧାରଣ ଜ୍ଞାନୀ ଏବଂ କବିଚନ୍ଦ୍ରଙ୍କ ବଂଶର ଜଣେ ପ୍ରତିଷ୍ଠିତ ବ୍ୟକ୍ତି ଥିବା ଏଥିରୁ ପ୍ରମାଣିତ ହୁଏ ।

ଅତୀତର ଗୌରବମୟ ଅଧ୍ୟାୟରେ ଉଦ୍‌ବୋଧିତ ସେହି ପରିଛା ବଂଶର କୁଳଚନ୍ଦ୍ରମା ଥିଲେ ସର୍ଗତ ରଘୁନାଥ ପରିଛା। ନିଜ ବଂଶର ଅନ୍ୟମାନଙ୍କ ପରି ସେ ମଧ୍ୟ ଲିହୁରି ଗ୍ରାମ ସହ ନିବିଡ଼ ସମ୍ପର୍କ ସ୍ଥାପନ କରିଥିଲେ । ଲିହୁରି ଗ୍ରାମର ଶ୍ରୀଗୋପୀନାଥ ମହାପ୍ରଭୁ ଥିଲେ ତାଙ୍କର ପରମ ଆରାଧ୍ୟ ଦେବତା । ଶୁଣାଯାଏ, ଲିହୁରି ଗ୍ରାମରେ ସେ ନୀଳ ସରସ୍ୱତୀ ମନ୍ତ୍ର ସାଧନା କରିଥିଲେ। ଏହାର ପ୍ରମାଣ ମଧ୍ୟ ତାହାଙ୍କ ପ୍ରଣୀତ ଗ୍ରନ୍ଥରେ ପ୍ରତିଫଳିତ ହୋଇଛି । ସ୍ୱର୍ଗତ ପରିଛା, "ରାଧାମାଧବବିଳାସ"ର ସପ୍ତମ ପୃଷ୍ଠାରେ ନୀଳ ସରସ୍ୱତୀଙ୍କ ଆରାଧନା ସମ୍ପର୍କରେ ମତ ପ୍ରକାଶ କରି ଲେଖିଛନ୍ତି -

ବଳଧର ଅଙ୍ଗ ଧ୍ୟାୟି ରଘୁନାଥ କହି
ଏଥିରେ କେ ଅଭାବ ନଧର ॥

ଜନସମାଜରେ ଆଦୃତ ହେବାପାଇଁ ସମସ୍ତ ବିଘ୍ନ ଖଣ୍ଡନ ନିମନ୍ତେ ନିତ୍ୟ ସରସ୍ୱତୀଙ୍କୁ ବନ୍ଦନା କରୁଥିବା ମଧ୍ୟ ସ୍ୱୀକାର କରି, ସେହି ପୃଷ୍ଠାର ଅନ୍ୟଠାରେ ସେ ଲେଖିଛନ୍ତି -

ଲୋକେ ବିଖ୍ୟାତ ହେବାକୁ ବିଘ୍ନନାଶନକୁ
ମୁଁ ନିତି ବନ୍ଦଇ ଭାରତୀକି ॥

ନୀଳ ସରସ୍ୱତୀ ମନ୍ତ୍ରରେ ସିଦ୍ଧି ଲାଭ ପରେ ଅସୀମ କବିତ୍ୱ ଶକ୍ତିର ଅଧିକାରୀ ହୋଇ, ଇଷ୍ଟଦେବ ଶ୍ରୀ ଗୋପୀନାଥ ମହାପ୍ରଭୁଙ୍କ ଲୀଳା ସଂଗୀତ ରଚନାରେ ସେ ବ୍ରତୀ ହୋଇଥିଲେ । ନିଜକୁ ଶ୍ରୀରାଧାରାଣୀଙ୍କ କିଙ୍କରି ମନେ କରି, ମଞ୍ଜରୀ ସଖୀ ଭାବାବେଶେ ଶ୍ରୀ ଗୋପୀନାଥଙ୍କ ଲୀଳା ସେ ବର୍ଣ୍ଣନା କରିଛନ୍ତି । ଶ୍ରୀରାଧାରାଣୀଙ୍କୁ ନିବେଦନ କରି "ଶ୍ରୀଗୋପୀନାଥବଲ୍ଲଭ ନାଟକ"ରେ ସେ ଲେଖିଛନ୍ତି -

ବ୍ରଜମଣ୍ଡନି ଧନି ସଜନୀ କୁମୁଦ ବ୍ରଜ ରଜନିକର ସମ ଉଲ୍ଲାସିନି
ନଜର ରଖ କୃପାରେ
କବି ଦ୍ୱିଜରାଜ ରଘୁନାଥକୁ ମନେ ନିଜ ଦାସୀ ବୋଲି ଏ ଘେନି ॥(ପୃଷ୍ଠା-୩)

ନୀଳ ସରସ୍ୱତୀ ମନ୍ତ୍ର ପ୍ରସାଦରେ ଅଲୌକିକ କବିତ୍ୱର ଅଧିକାରୀ ହୋଇ, ପରବର୍ତ୍ତୀ ସମୟରେ ସ୍ୱର୍ଗତ ରଘୁନାଥ ପରିଛା, ମୁକ୍ତିମଣ୍ଡପ ସଭା ଦ୍ୱାରା କବିଚନ୍ଦ୍ର ଉପାଧିରେ ଭୂଷିତ ହୋଇଥିବା ଜଣାଯାଏ । ଦିନେ ସେ ଶ୍ରୀଜଗନ୍ନାଥଙ୍କ ଦର୍ଶନାଭିଳାଷୀ ହୋଇ ପୁରୀଧାମ ଯାତ୍ରା କରିଥାନ୍ତି । ମୁକ୍ତିମଣ୍ଡପରେ ସେଦିନ ପଣ୍ଡିତ ମଣ୍ଡଳୀଙ୍କ ଦ୍ୱାରା ଆଲୋଚନା ଚାଲିଥାଏ । ଏହି ସମୟରେ ସ୍ୱର୍ଗତ ପରିଛା ମଣ୍ଡପ ଉପରକୁ ଅଗ୍ରସର ହୁଅନ୍ତେ, ସେଠାରେ ଥିବା ପଣ୍ଡିତ ମଣ୍ଡଳୀ ଏହାକୁ ବାରଣ କରିଥିଲେ । ସେମାନେ କହିଥିଲେ- ଏହି ମଣ୍ଡପ କେବଳ ସୁଧୀମଣ୍ଡଳୀଙ୍କ ନିମନ୍ତେ ଯୋଗ୍ୟ ଅଟେ । ଯେବେ ତୁମର ଯଦି କୌଣସି ପାଣ୍ଡିତ୍ୟ ରହିଥାଏ, ତାହା ଆମ ନିକଟରେ ପ୍ରଦର୍ଶନ କରି ମଣ୍ଡପ ଉପରେ ଆସନ ଗ୍ରହଣ କରିପାର । ଏହାଶୁଣି ସ୍ୱର୍ଗତ ପରିଛା ମହୋଦୟ ନିଜର ପ୍ରଗାଢ଼ ପାଣ୍ଡିତ୍ୟ ପ୍ରଦର୍ଶନ କରି ସଙ୍ଗେ ସଙ୍ଗେ ଗୋଟିଏ ଗୀତ ରଚନା କରିଥିଲେ । ସେହି ଗୀତଟିକୁ ରାଗ ଏବଂ ତାଳ ସଂଯୁକ୍ତ କରି ବାଦ୍ୟ ବଜାଇ ଭାବରେ ବିହ୍ୱଳ ହୋଇ ନୃତ୍ୟକରି ସେ ଏପରି ଭାବେ ସୁମଧୁର ସ୍ୱରରେ ଗାଇଥିଲେଯେ, ତାହା ମୁକ୍ତିମଣ୍ଡପ ପଣ୍ଡିତ ମଣ୍ଡଳୀ ଦ୍ୱାରା ଶ୍ରେଷ୍ଠ ବିବେଚିତ ହୋଇଥିଲା । ତାଙ୍କର ଅମର କବିତ୍ୱ, ପ୍ରଗାଢ଼ ପାଣ୍ଡିତ୍ୟ ଏବଂ ବଳିଷ୍ଠ ପ୍ରତିଭାରେ ମୁଗ୍ଧ ହୋଇ, ସେଦିନ ସ୍ୱର୍ଗତ ପରିଛାଙ୍କୁ କବିଚନ୍ଦ୍ର ଉପାଧିରେ ଭୂଷିତ କରି ସମ୍ମାନିତ କରାଯାଇଥିଲା । ସେହିଦିନ ଠାରୁ ସ୍ୱର୍ଗତ ପରିଛାଙ୍କ ଦ୍ୱାରା ରଚିତ ଗୀତଟି ଶ୍ରୀଜଗନ୍ନାଥଙ୍କ ପ୍ରଭାତ ଅବକାଶ ସମୟରେ ଗାନ

କରାଯାଉଥିଲା ବୋଲି ଲୋକମୁଖରୁ ଶୁଣାଯାଏ । ସେହି ନିର୍ଦ୍ଦିଷ୍ଟ ଗୀତଟିକୁ ସଂଗ୍ରହ କରିବାପାଇଁ ଚେଷ୍ଟା ଅବ୍ୟାହତ ରହିଛି ।

କବିଚନ୍ଦ୍ର ଉପାଧିରେ ଭୂଷିତ ହେବା ଦିନ ସ୍ୱର୍ଗତ ରଘୁନାଥ ପରିଛାଙ୍କର, କର୍ମଯୋଗୀ ଗୌରୀଶଙ୍କର ରାୟଙ୍କ ସହ ସର୍ବପ୍ରଥମ ସାକ୍ଷାତ ହୁଏ । ସ୍ୱର୍ଗତ ପରିଛାଙ୍କୁ ସେ କଟକ ଆମନ୍ତ୍ରଣ କରିଥିଲେ । ସେଠାରେ ମଧ୍ୟ ସେ ନିଜର ଅଖଣ୍ଡ ପାଣ୍ଡିତ୍ୟ ଏବଂ ପ୍ରତିଭାର ପରିଚୟ ଦେଇଥିଲେ । ସ୍ୱର୍ଗତ ରାୟ, ତାଙ୍କୁ ଏକ ମାନପତ୍ର ଦେଇ ଅଭ୍ୟର୍ଥନା ଜଣାଇଥିଲେ । କିନ୍ତୁ ପରବର୍ତ୍ତୀ ସମୟରେ ସେହି ସନନ୍ଦଟି କୀଟଦ୍ରୁଷ୍ଟ ହୋଇ ନଷ୍ଟ ହୋଇଯାଇଥିବା ଜଣାଯାଏ ।

ସ୍ୱର୍ଗତ ରଘୁନାଥ ପରିଛାଙ୍କ ଅସାଧାରଣ ପାଣ୍ଡିତ୍ୟ ଏବଂ ଅଲୌକିକ ପ୍ରତିଭା ଯୋଗୁଁ ସେ ବାସ୍ତବରେ କବିଚନ୍ଦ୍ର ଭାବେ ସର୍ବଜନ ବିଦିତ ଏବଂ ସର୍ବତ୍ର ପ୍ରଶଂସିତ । ଏହି ପରିପ୍ରେକ୍ଷୀରେ କବିଙ୍କ ରଚିତ ପୁସ୍ତକ ଗୁଡ଼ିକ ସମ୍ବନ୍ଧରେ କିଛି ସୂଚନା ଦେବା ପୂର୍ବରୁ, ତାଙ୍କ ଜୀବନର ଦୁଇଟି କୌତୁହଳ ଘଟଣା ଉଲ୍ଲେଖଯୋଗ୍ୟ ମନେ ହୁଏ ।

କବିଙ୍କ ବୃଦ୍ଧାବସ୍ଥା ଉପସ୍ଥିତ ହୋଇଥାଏ । ଥରେ ସେ ନିଜର ଏକମାତ୍ର ପୁତ୍ର ପଦ୍ମନାଭ ପରିଛାଙ୍କୁ ଧରି ଧରାକୋଟ ରାଜାଙ୍କ ନିକଟକୁ ଯାଇଥାନ୍ତି । ସ୍ୱର୍ଗତ ପରିଛା ମହାରାଜାଙ୍କୁ ସେଦିନ କହିଥିଲେ - "ମୋର ଅନ୍ତିମ ସମୟ ଆସିଯାଇଛି । ତେଣୁ ମୋ ପରେ ମୋର ପୁତ୍ରକୁ ପାରିତୋଷିକ ଦେଇ ମୋତେ କରୁଣା କରନ୍ତୁ ।" ଏହାଶୁଣି ମହାରାଜା କବିଙ୍କୁ ପରିହାସ ଛଳରେ କହିଥିଲେ - "ରଘୁନାଥେ, ଏତ ତୁମର ପୁଅ ପରି ଦିଶୁନହିଁ, ମୁଁ କିପରି ପାରିତୋଷିକ ଦେବି ?" ସଙ୍ଗେ ସଙ୍ଗେ ସ୍ୱର୍ଗତ ପରିଛା ମହାରାଜାଙ୍କୁ ପ୍ରଶ୍ନ କରିଥିଲେ -

ସବୁ ଉଆସରେ ପୁଅ ହେଲା
ଛାମୁଙ୍କ ଉଆସରେ ପୁଅ ନହେଲା ॥

କବିଙ୍କ ଏହି ବକ୍ତବ୍ୟରେ ଦ୍ୱିଅର୍ଥ ପ୍ରକାଶ ପାଉଛି । ଗୋଟିଏ ହେଲା - ସବୁ ଉଆସରେ ସେ ମୋର ପୁଅ ଭାବେ ପରିଚିତ ହେଲା, କିନ୍ତୁ ଆପଣଙ୍କ ଉଆସରେ ସେ କିପରି ମୋର ପୁଅ ନହେଲା ? ଦ୍ୱିତୀୟ ଅର୍ଥଟି ହେଉଛି - ସବୁ ଉଆସରେ ପୁଅ ହେଲା, କିନ୍ତୁ ଆପଣଙ୍କ ଉଆସରେ କିପରି ଗୋଟିଏବି ପୁତ୍ର ସନ୍ତାନ ନହେଲା ? ଏଠାରେ ଉଲ୍ଲେଖଯୋଗ୍ୟ, ତେତକାଳୀନ ଧରାକୋଟ ରାଜାଙ୍କର ପୁତ୍ରସନ୍ତାନ ନଥିଲେ । କବିଙ୍କର ଏହି ଚାତୁର୍ଯ୍ୟପୂର୍ଣ୍ଣ ବକ୍ତବ୍ୟରେ ମୁଗ୍ଧ ହୋଇ, ଧରାକୋଟ ମହାରାଜା କବିଙ୍କ ପୁତ୍ରକୁ ପାରିତୋଷିକ ଦେବା ନିମନ୍ତେ ସନ୍ଦଟି ପ୍ରଦାନ କରିଥିଲେ ।

ପରମ୍ପରାରେ ଶ୍ରୁତ କବିଙ୍କ ଜୀବନର ଅନ୍ୟ ଏକ କୌତୁକପ୍ରଦ ଘଟଣା ବର୍ତ୍ତମାନ ଉଲ୍ଲେଖ କରୁଛି । ଥରେ ସ୍ୱର୍ଗତ ପରିଛା କୌଣସି କାରଣ ବଶତଃ ଜଳନ୍ଧରର ଶ୍ରୀଜଗନ୍ନାଥ ମଠରେ ରାତ୍ରି ଯାପନ କରନ୍ତି । ଏଠାରେ ଉଲ୍ଲେଖଯୋଗ୍ୟ, ସ୍ୱର୍ଗତ ପରିଛା ସେଦିନ ବିଳମ୍ବରେ ଜଳନ୍ଧରରେ

ପହଞ୍ଚିବା ଯୋଗୁଁ ଉପବାସରେ ରାତ୍ର କଟାଇଥିଲେ । ତହିଁ ପରଦିନ ମଠର କାନ୍ଥରେ ନିମ୍ନୋକ୍ତ ମତେ ଲେଖି ସେ ଚାଲିଯାଇଥିଲେ -

ଜଳନ୍ତରେ ଜଳ ନାସ୍ତି ସ୍ଥଳଂ ଚ ପର୍ବତମାଳିକା
ବେଦ ବିଦ୍ୟା ନଜାଣନ୍ତି, ହାଣ୍ଡି ଦେଖୁଳ ବର୍ଜିତା ।।

କିନ୍ତୁ ସେହି ସମୟରେ କବିସୂର୍ଯ୍ୟ ବଳଦେବ ରଥ ଜଳନ୍ତର ମହାରାଜାଙ୍କ ନିକଟରେ ଦେଓ୍ୱାନ୍ ହୋଇଥାନ୍ତି । ସେହି ଗୀତଟି ତାଙ୍କର ଦୃଷ୍ଟିଗୋଚର ହୁଅନ୍ତେ, ସେ ପରିଛା ମହୋଦୟଙ୍କ ମତକୁ ଖଣ୍ଡନ କରି ନିମ୍ନୋକ୍ତ ଭାବେ ଲେଖିଥିଲେ -

ଜଳନ୍ତରେ ଜଳ ସଂସାର, ଗଙ୍ଗା ଗୋବିନ୍ଦ ସାଗର
ବେଦ ବିଦ୍ୟା ସମାଚାର, ହାଣ୍ଡି ଦେଖୁଳ ଭରାଭର ।।

ବର୍ତ୍ତମାନ କବିଚନ୍ଦ୍ରଙ୍କ କୃତ ରଚନାବଳୀ ସମ୍ବନ୍ଧରେ କିଛି ଆଲୋକପାତ କରିବା ଯଥାର୍ଥ ହେବ ।"ଶ୍ରୀ ଗୋପୀନାଥ- ବଲ୍ଲଭ" ନାଟକ କବିଚନ୍ଦ୍ର ରଘୁନାଥ ପରିଛାଙ୍କ କୃତ ଓଡ଼ିଆ ଭାଷାର ସର୍ବପ୍ରଥମ ନାଟକ । ଏହି ନାଟକଟି ୧୮୬୮ ଖ୍ରୀଷ୍ଟାବ୍ଦରେ ପ୍ରକାଶ ପାଇଥିଲା । ଏଥି ସମ୍ବନ୍ଧରେ ପାରଳାର ଅନ୍ୟତମ କବି ସର୍ଗତ ଅପନ୍ନା ପଣ୍ଡା ସ୍ୱରଚିତ "କବିଜୀବନୀ "ରେ ଲେଖିଛନ୍ତି -

ରଘୁନାଥ ପରିଛା ହେ ପାରଳା ନିବାସୀ
କବିତା ପ୍ରଭାବେ ହେଲ ତୁମେ ଜଣାଶୀ
ଉତ୍କଳେ ନାଟକ ଗନ୍ଧ ନଥିଲା ପୂର୍ବରେ
ରଚିଲ ନାଟକ ଏକ ତୁମେ ପ୍ରଥମରେ
ନାଟକଟି ଗୋପୀନାଥ ବଲ୍ଲଭ ନାମରେ
ଖ୍ୟାତ ହୋଇଅଛି ଏବେ ଉତ୍କଳ ରାଜ୍ୟରେ ।।

ଏଠାରେ ଉଲ୍ଲେଖଯୋଗ୍ୟ, ଅଧ୍ୟାପକ ଗିରିଜାଶଙ୍କର ରାୟ, ଓଡ଼ିଆ ନାଟକର ବିକାଶକ୍ରମ ନିର୍ଦ୍ଦେଶ କରିବାକୁ ଯାଇ, ଓଡ଼ିଆ ଯାତ୍ରାକୁ ଓଡ଼ିଆ ନାଟ୍ୟସାହିତ୍ୟର ପୂର୍ବାବସ୍ଥା ରୂପେ ନିର୍ଦ୍ଦେଶ କରିଛନ୍ତି । ଯେତେବେଳେ ଯାତ୍ରା, ଲୀଳା ଓ ସୁଆଙ୍ଗ ଓଡ଼ିଶାର ସାଂସ୍କୃତିକ ଜୀବନର ବିଶିଷ୍ଟ ଅଙ୍ଗ ଥିଲା, ସେତିକିବେଳେ ରଘୁନାଥ ପରିଛା "ଗୋପୀନାଥବଲ୍ଲଭ " ନାଟକ ପ୍ରଣୟନ କରିଥିଲେ । ଫଳରେ, ଜନ ମନୋରଞ୍ଜନ ନିମନ୍ତେ ପଦ୍ୟାଳଙ୍କାର ଏବଂ ଛନ୍ଦାନୁସୃତ ଗଦ୍ୟ ଭିତ୍ତିରେ ନାଟକଟି ରଚିତ ହେବା ସ୍ୱାଭାବିକ । ଓଡ଼ିଆ ନାଟ୍ୟସାହିତ୍ୟର ଦ୍ୱିତୀୟ ପର୍ଯ୍ୟାୟରେ କଟକର ଜଗନ୍ମୋହନ୍ ଲାଲ୍ ଖଣ୍ଡିଏ କ୍ଷୁଦ୍ର ନାଟକ ରଚନା କରିଥିଲେ ଓ "ବାବାଜୀ " ନାଟକ ରୂପେ ଏହା ୧୮୭୭ ଖ୍ରୀଷ୍ଟାବ୍ଦରେ ମୁଦ୍ରିତ ହୋଇଥିଲା । କିନ୍ତୁ ଏହା ଯାତ୍ରା ଅପେକ୍ଷା ଉନ୍ନତ ଓ ସୁରୁଚି ସମ୍ପନ୍ନ ଏକ ଶିକ୍ଷାପ୍ରଦ ଗୀତିନାଟ୍ୟ । ଓଡ଼ିଆ ନାଟ୍ୟସାହିତ୍ୟର ପରବର୍ତ୍ତୀ ପର୍ଯ୍ୟାୟରେ ୧୮୮୦ ଖ୍ରୀଷ୍ଟାବ୍ଦରେ

ସ୍ୱର୍ଗତ ରାମଶଙ୍କର ରାୟଙ୍କ "କାଞ୍ଚିକାବେରୀ " ନାଟକ ରଚିତ ହୋଇଥିଲା । ଏହା ଓଡ଼ିଆ ନାଟ୍ୟସାହିତ୍ୟର ସାର୍ଥକ ଆଦି ନାଟକ ରୂପେ ସମାଲୋଚକ ମାନଙ୍କ ଦ୍ୱାରା ପ୍ରଶଂସିତ । ଓଡ଼ିଆ ନାଟ୍ୟ ରଚନାର ବିକାଶଧାରାରେ ୧୮୯୮ରେ ରଚିତ କାମପାଳ ମିଶ୍ରଙ୍କ "ସୀତାବିବାହ " ଏବଂ ୧୯୦୧ରେ ରଚିତ ପଦ୍ମନାଭଦେବଙ୍କ "ପ୍ରହ୍ଲାଦ ନାଟକ " ମଧ୍ୟ ବାସ୍ତବିକ ପ୍ରଶଂସନୀୟ ।

କିନ୍ତୁ ଓଡ଼ିଆ ନାଟ୍ୟସାହିତ୍ୟର କ୍ରମ ବିକାଶ କଥା ଚିନ୍ତା କଲାବେଳେ ବହୁ ସମାଲୋଚକଙ୍କ ବିଭିନ୍ନ ମତାମତ ସହ ପ୍ରଥମ ନାଟକଟି କେଉଁଟି, ସେହି ବିଷୟରେ ସନ୍ଦେହାକୁଳ ସିଦ୍ଧାନ୍ତରେ ଉପନୀତ ହେଉ । କଟକର ସାହିତ୍ୟିକ "ବାବାଜୀ " ନାଟକକୁ ପ୍ରଥମ ନାଟକ ବୋଲି କହି ଯୁକ୍ତି କରନ୍ତି । କିନ୍ତୁ ପାରଳାର ସାହିତ୍ୟିକ "ଗୋପୀନାଥବଲ୍ଲଭ " ନାଟକକୁ ଓଡ଼ିଆ ସାହିତ୍ୟର ପ୍ରଥମ ନାଟକ ଭାବେ ଗ୍ରହଣ କରିଛନ୍ତି । ସେ ଯାହା ହେଉ, କାଳ ବିଚାରରେ ଗୋପୀନାଥବଲ୍ଲଭ ନାଟକ ସର୍ବଥା ଯେ ବାବାଜୀ ନାଟକର ପୂର୍ବବର୍ତ୍ତୀ ଓ ଓଡ଼ିଆ ନାଟ୍ୟକଳାର ବିକାଶଧାରା ନିର୍ଦ୍ଦେଶରେ ଏକ ଆଲୋକ ସ୍ତମ୍ଭ, ଏଥିରେ ସନ୍ଦେହର ଅବକାଶ ନାହିଁ ।

କବିଙ୍କର ଅନ୍ୟ ଏକ ପ୍ରକାଶିତ କୃତି ହେଉଛି - "ଲକ୍ଷଣ ଚନ୍ଦ୍ରୋଦୟ " । ଏହି ଗ୍ରନ୍ଥର ମାତ୍ର ଚାରୋଟି ଅଂଶ ୧୯୫୨ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ଦ୍ୱାରା ପ୍ରକାଶ ପାଇଛି । ଅନ୍ୟ ବାରଟି ଅଂଶ ବର୍ତ୍ତମାନ ସୁଦ୍ଧା ପ୍ରକାଶ ପାଇନାହିଁ କବିମାନେ କେଉଁ ନିୟମାବଳୀ ପାଳନ କରି କବିତା ଲେଖିବା ବିଧେୟ । ଏହି ସବୁ ଲକ୍ଷଣାବଳୀକୁ ବିଶେଷ ଦୃଷ୍ଟି ଦେଇ, କେତେକ ପ୍ରାଚୀନ ଛନ୍ଦଶାସ୍ତ୍ର, ଭରତଶାସ୍ତ୍ର, ଜ୍ୟୋତିଷ ଶାସ୍ତ୍ର ଏବଂ ଜୟଦେବ, କାଳିଦାସ, ଶ୍ରୀହର୍ଷାଦି କବିମାନଙ୍କ ଗ୍ରନ୍ଥ ଗୁଡ଼ିକରୁ ବିଛିବିଛି ସଂଗ୍ରହ କରି ଲକ୍ଷଣ ଚନ୍ଦ୍ରୋଦୟ ଗ୍ରନ୍ଥଟି ସେ ରଚନା କରିଛନ୍ତି । (୧) ଗଣ (୨) ଲିପି (୩) ପ୍ରାସାନୁପ୍ରାସ ବିଶ୍ରାମ ଯତି (୪) ଗଦ୍ୟ ପଦ୍ୟ (୫) ସଂସ୍କୃତ ଛନ୍ଦ (୬) ବୃତ୍ତ (୭) ଦଣ୍ଡକ (୮) ଓଡ଼ିଆ ଛନ୍ଦ (୯) ନାଦଶ୍ରୁତି (୧୦)ରାଗ (୧୧) ଗୀତ (୧୨) ତାଳ (୧୩) ବାଦ୍ୟ (୧୪) ନୃତ୍ୟ (୧୫) ଅଭିନୟ ଏବଂ (୧୬) ଅଳଙ୍କାର ବୁ ଚନ୍ଦ୍ରଙ୍କର ଷୋଳକଳା ସହ ତୁଳନା କରି ଏହି ଗ୍ରନ୍ଥର ସେହିପରି ନାମକରଣ କରାଯାଇଥିବା ଜଣାଯାଏ ।

କବିଚନ୍ଦ୍ରଙ୍କ ରଚିତ "ରାଧାମାଧବ ବିଳାସ" କାବ୍ୟଟି ମଧ୍ୟ ୧୯୫୨ ଖ୍ରୀଷ୍ଟାବ୍ଦରେ ପ୍ରକାଶ ପାଇଛି । ଶ୍ରୀରାଧାକୃଷ୍ଣଙ୍କ ଯୁଗଳ ଲୀଳାରସ ବର୍ଣ୍ଣନା, ଏହି କାବ୍ୟର ମୁଖ୍ୟ ପ୍ରତିପାଦ୍ୟ ବିଷୟ । ଏଥିରେ ଭାବର ଅଭିବ୍ୟକ୍ତି, ଭାଷାର ସୌଷ୍ଠବ ଏବଂ ଆଳଙ୍କାରିକ ପରିପାଟୀ କବିଙ୍କ ବିଲକ୍ଷଣ ଶକ୍ତି ବିଳାସର ଯଥେଷ୍ଟ ପରିଚୟ ଦିଏ ।

ସ୍ୱର୍ଗତ ପରିଛାଙ୍କ ଅପ୍ରକାଶିତ ଗ୍ରନ୍ଥ ଗୁଡ଼ିକ ହେଲା - ୧. ସଙ୍ଗୀତ ରାମଲୀଳା ୨. ସଙ୍ଗୀତ କୃଷ୍ଣଲୀଳା ୩. ନୀତି ଶତକ ୪. ସଙ୍ଗୀତ ରତ୍ନାକର ୫. ବାସୁଦେବ ନାଟକ ୬. କୃଷ୍ଣଚନ୍ଦ୍ରମା ନାଟକ ଏବଂ ୭. ମୁକ୍ତା ନାଟିକା । କିନ୍ତୁ ସ୍ୱର୍ଗତ ଅପନା ପଣ୍ଡାଙ୍କ କୃତ କବି ଜୀବନୀରେ ପରିଛାଙ୍କ ରଚିତ ଅନ୍ୟ ତିନୋଟି ଗ୍ରନ୍ଥର ନାମ ମଧ୍ୟ ଦୃଷ୍ଟିଗୋଚର ହୁଏ । ସେଗୁଡ଼ିକ ହେଲା -

୧. ସଙ୍ଗୀତ ରାମାୟଣ, ୨. ରାଧାକୃଷ୍ଣ ଲୀଳା, ୩. ତାଳ ସର୍ବସାର । ଏସବୁ ବାଦ୍ "ଗ୍ରନ୍ଥୋଦୟ" ନାମକ ଏକ କୃତି କବିଚନ୍ଦ୍ରଙ୍କ ଦ୍ୱାରା ରଚିତ ହୋଇଥିବା ନିଃସନ୍ଦେହ ଭାବେ କୁହାଯାଇପାରେ । "ଲକ୍ଷଣ ଚନ୍ଦ୍ରୋଦୟ" ଗ୍ରନ୍ଥର ୧୦୮ ପୃଷ୍ଠାରେ କବି ନିଜେ ତାହା ସ୍ୱୀକାର କରିଛନ୍ତି । ଏହି ପରିପ୍ରେକ୍ଷୀରେ କବିଚନ୍ଦ୍ରଙ୍କ ଦ୍ୱାରା ଦିଆଯାଇଥିବା "ଗ୍ରନ୍ଥୋଦୟ"ର ଏକ ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖଯୋଗ୍ୟ ମନେ କରୁଛି -

ହେଲା ନନ୍ଦର ଧନ — ଲୀଳାରେ ମୋହି ମନ
ଭୋଳାରେ ନେହି ଭିନ — ମେଳାପେ ନିଅ ଦିନ
କାଳି କାନ୍ତ ରିପୁ — ଶର ଆଳି ମାରଇ ତାପୁ
ବାଳି ରଚନ ଦୁଃଖ — ଭାଳି ତୁ ନ ବସିଲେ
ନାଳିକ ସୁଲପନି — ପାଳିବ କେହିକ ଭଲେ
ବାଳାରେ ଢ଼ୋଳା ଅଳପ ଖେଳାରେ ॥

କବିଚନ୍ଦ୍ର ରଘୁନାଥ ପରିଛାଙ୍କ ଦ୍ୱାରା ରଚିତ ଅପ୍ରକାଶିତ ଗ୍ରନ୍ଥ ଗୁଡ଼ିକ ମଧ୍ୟରେ "ମୁକ୍ତା ନାଟିକା" ସର୍ବଶ୍ରେଷ୍ଠ ବିବେଚିତ ହୁଏ। ସର୍ବମୋଟ ୪୩ଟି ଛାନ୍ଦରେ ଏହା ରଚିତ । ଏହା ଶ୍ରୀ ରଘୁନାଥ ଦାସ ଗୋସ୍ୱାମୀଙ୍କ ଦ୍ୱାରା ସଂସ୍କୃତ ଭାଷାରେ ଲିଖିତ "ମୁକ୍ତାଚରିତ୍ର"ର ଅବଲମ୍ବନରେ ଲେଖାଯାଇଛି । କିନ୍ତୁ କବିଙ୍କ ମୌଳିକତାକୁ କଦାପି ସନ୍ଦେହ କରାଯାଇନପାରେ । ବିଶେଷତଃ ଭାବ ଓ ଭାଷାରେ ସୁସଙ୍ଗତ ବିନ୍ୟାସ ଏବଂ ଆଳଙ୍କାରିକ ସୌନ୍ଦର୍ଯ୍ୟ ପାଠକକୁ ବିସ୍ମିତ କରିଥାଏ । ତେଣୁ ଏଠାରେ "ମୁକ୍ତାନାଟିକା"ର ୨୯ ଛାନ୍ଦରେ ଲିଖିତ ଏକ ଦୃଷ୍ଟାନ୍ତ ଦେବା ଯଥାର୍ଥ ମନେ କରୁଛି -

ଶ୍ରୀରାଧା ଚକ୍ଷୁ ଜ୍ୟୋତି ପରାଏ ବିରାଜନ୍ତି ପରିମଳ ଚମ୍ପକଲତା
ବିଦ୍ୟୁତ୍‌ବଲ୍ଲୀ ଜିଣି କନକ ଯୁଥି ଶ୍ରେଣୀ ହୋଇଛନ୍ତି ଅତ୍ୟନ୍ତ ଶୋଭିତା ଗୋ,
ସ୍ୱରୂପକୁ ସାରୂପ୍ୟ ହୋଇ ଅଗମ୍ୟରେ ଯେତେ ଯେତେ ବ୍ରଜପୁରରେ
ତାହାଙ୍କ ଶ୍ରୀମୁଖର ପରଦ୍ରା ପ୍ରଭାକର ହୋଇଛନ୍ତି ପଦ୍ମିନି କର ଗୋସ୍ୱରୂପକୁ (୧)
ଅଙ୍ଗ ସ୍ପର୍ଶନ ଦୃଶ୍ୟ ଯୁଗଳର ସଦୃଶ୍ୟ ନବକୁବଳୟ ସମାନ
ଲୀଳାରେ ବକ୍ର କରି ଚାହିଁବାର ଚାତୁରି ଉନ୍ମତ୍ତ ହରିଣ ବିଭ୍ରାନ୍ତ ଗୋ,
ପରିପଚ୍ୟୋ, ଲହବି ଥିବା ବିମ୍ବଫଳ ବିକଚ ବନ୍ଧୁକ ସକୁଳ
ଅଧର ଓଷ୍ଠ ଜ୍ୟୋତି ପରାଏ ବିରାଜନ୍ତି କେ କହୁ ତାଙ୍କ ଯେ ଫଳ ଗୋପରିପକ୍ୱେ (୨)

ଆଧ୍ୟାତ୍ମିକ ଚିନ୍ତାରେ ମଧ୍ୟ କବି ଯେପରି ଭାବେ ଭାବ ବିହ୍ୱଳ ହୋଇଯାଇଛନ୍ତି, ତାହା ମଧ୍ୟ ଏଠାରେ ସ୍ମରଣ କରିବା କଥା । ମୁକ୍ତା ନାଟିକାର ଶେଷ ଛାନ୍ଦରେ କବି ଲେଖିଛନ୍ତି

"ଦନ୍ତେ ତୃଣ ଧରି ଏହା ମାଗେ ମୁଁ ସକାମେ   ଶ୍ରୀରୂପ ପଦାବ୍ଜଧୂଳି ହେବି ଜନ୍ମେ ଜନ୍ମେ ଯେ (୨୩)
ଯାହାଙ୍କର ଆଜ୍ଞା ସୁଧା ଧାରେ ପ୍ରବୋଧିତ   ତୁଷି ହୋଇ ଯେତେ ଯେତେ ଏ ମୁକ୍ତା ଚରିତ ଯେ (୨୪)
ଗୁଚ୍ଛ ପୁଷ୍ପ ଭରେ ମୁହିଁ ବିଧାନ କରିଛି   ଶ୍ରୀରୂପଙ୍କ ଠାରୁ ଯାହା ଶିକ୍ଷା ପାଇଅଛି ଯେ (୨୫)
ଜୀବ ଯେ ମୋହର ଯିବ ତାଙ୍କ ନେତ୍ର ଭୃଙ୍ଗ   ଆଘ୍ରାଣରେ ତହିଁ ହୋଇବାରୁ ମାତ୍ର ସଙ୍ଗ ଯେ (୨୬)
ସେହି ଘେନି କେବଳ ହେବ ଏ ସାଧୁ କରି   ସୁରସିକେ ଘେନିବେ ଏ ସଆଦର କରି ଯେ (୨୭)
ଏ ମୁକୁତା ଚରିତ ସୁମନ କଳା ପରେ   ଗୁଚ୍ଛ କରି ଗୁନ୍ଥିଅଛି ଅଦ୍ଭୁତ ବେଶରେ ଯେ (୨୮)
ଅବତଂସ କରନ୍ତୁ ମୋ ସ୍ନେହ ଘେନି ନିତ୍ୟେ   ଜଗତରେ ଅଛନ୍ତି ଶ୍ରୀରୂପଗଣ ଯେତେ ଯେ (୨୯)
ଯାହାଙ୍କ ସଙ୍ଗବଳରୁ ମୁହିଁ ଏ ଅଦ୍ଭୁତ   ମୌକ୍ତିକ ଉତ୍ତମ କଥା କଲି ପ୍ରଚାରିତ ଯେ (୩୦)
ସେହି କୃଷ୍ଣ କବି ଭୂପତିଙ୍କର ସଙ୍ଗତେ   ସଙ୍ଗ ହେଉ ଜନ୍ମେ ଜନ୍ମେ ମାଗୁଛି ମୁଁ ଏତେ ଯେ (୩୧)

କବିଚନ୍ଦ୍ର ରଘୁନାଥ ପରିଛା ଆଜି ଆଉ ଇହ ସଂସାରରେ ନାହାନ୍ତି ସତ, ତଥାପି ତାଙ୍କ ଭକ୍ତିଭାବ ପାଠକ ପ୍ରାଣରେ ଅପୂର୍ବ ଜାଗରଣ ସୃଷ୍ଟି କରିଥାଏ । ଭକ୍ତିପ୍ରାଣତା ସହ କବିଙ୍କ ଭାଷାର ଅସାଧାରଣ ପାଣ୍ଡିତ୍ୟ ଏବଂ ଆଳଙ୍କାରିକ ଚାକଚକ୍ୟ ଯୋଗୁଁ ଓଡ଼ିଆ ସାହିତ୍ୟ ଇତିହାସରେ ସେ ଏକ ଶ୍ରେଷ୍ଠ ସ୍ଥାନ ଅଧିକାର କରିଛନ୍ତି । ସେ ଯଥାର୍ଥରେ ଅଟନ୍ତି ଓଡ଼ିଆ ସାହିତ୍ୟାକାଶର ଏକ ପୂର୍ଣ୍ଣଚନ୍ଦ୍ର । ୧୮୨୦ ଖ୍ରୀଷ୍ଟାବ୍ଦରୁ ଇହଧାମ ତ୍ୟାଗ କରିଥିଲେବି, ସେ ଆଜି ଯଶୋଦେହେ ଆୟୁଷ୍ମାନ ହୋଇରହିଛନ୍ତି । କବି ଲକ୍ଷଣହିଁ ତାଙ୍କୁ ଏ ସମସ୍ତ ଯଶ ଏବଂ ସମ୍ମାନ ପ୍ରଦାନ କରିଛି କହିଲେ ଅତ୍ୟୁକ୍ତି ହେବନାହିଁ । "ଲକ୍ଷଣ ଚନ୍ଦ୍ରୋଦୟ" ଗ୍ରନ୍ଥରେ କବିଲକ୍ଷଣ ବର୍ଣ୍ଣନା କରିବାକୁ ଯାଇ ସେ ଲେଖିଛନ୍ତି

ପବିତ୍ର ବିଚକ୍ଷଣ ଶାନ୍ତ,   ବିବେକୀରେ ବିନୟବନ୍ତ (୧)
କହୁଥିବ ସୁସତ୍ୟ ବାଣୀ,   କଳାଶାସ୍ତ୍ରକୁ ଥିବ ଜାଣି (୨)
ପଣ୍ଡିତ ପଣରେ କୁଶଳ,   ପଦ କହୁଥିବ କୋମଳ (୩)
ଯେ ଅବା କାବ୍ୟ ତାହା ଜାଣି   ହୋଇଥିବ ଚତୁର ପୁଣି (୪)
କରିବାର ନ ପାସୋରିବ,   କିଛି ଜ୍ୟୋତିଷ ଜାଣିଥିବ (୫)
ସକରୁଣ ହୃଦୟ ହେବ,   କୁଳ ଉତ୍ତମରେ ସମ୍ଭବ (୬)
ସୁନ୍ଦର ରୂପ ହୋଇଥିବ,   ସୁବୃତ୍ତ ଛାନ୍ଦ ଜାଣିଥିବ (୭)
କଳିଥିବ ଗୁଣ ଲକ୍ଷଣ,   କବି ଏତେ ଲକ୍ଷଣେ ଜାଣ (୮)

ଏହି ସବୁ ଗୁଣ କବିଚନ୍ଦ୍ର ରଘୁନାଥ ପରିକ୍ଷାଙ୍କ ଠାରେ ଯେ ରହିଥିଲା, ତାହା କହିବା ବାହୁଲ୍ୟମାତ୍ର । ସେ ଓଡ଼ିଶାର ବାଣୀଭଣ୍ଡାରକୁ ଯେପରି ଭାବେ ଶ୍ରୀମଣ୍ଡିତ କରିଛନ୍ତି, ତାହା ଓଡ଼ିଆ ଜାତିର କଦାପି ବିସ୍ମୃତ ହେବନାହିଁ । କିନ୍ତୁ କବିଙ୍କ ରଚିତ ଅପ୍ରକାଶିତ ଗ୍ରନ୍ଥ ଗୁଡ଼ିକ ପ୍ରକାଶ ପାଇଲେ ଓଡ଼ିଆ ସାହିତ୍ୟ ଭଣ୍ଡାରର ପ୍ରଭୁତ ଉନ୍ନତି ସାଧିତ ହୁଅନ୍ତା । ତେଣୁ ଏହି ଦିଗରେ ସମୟୋପଯୋଗୀ ପଦକ୍ଷେପ ଗ୍ରହଣ କରିବା ପ୍ରତ୍ୟେକ ଓଡ଼ିଆର ପ୍ରଥମ ଏବଂ ପ୍ରଧାନ କର୍ତ୍ତବ୍ୟ ।

## କବିଙ୍କର ବଂଶାବଳୀ

ରାଧାଚରଣ ପରୀକ୍ଷା

ଚନ୍ଦ୍ରଶେଖର ପରୀକ୍ଷା

ରଘୁନାଥ ପରୀକ୍ଷା (କବିଚନ୍ଦ୍ର)

ପଦ୍ମନାଭ ପରୀକ୍ଷା

ରାଧାମୋହନ | ରାମଚନ୍ଦ୍ର | ଚନ୍ଦ୍ରଶେଖର

ଶ୍ୟାମସୁନ୍ଦର (ରାଧାମୋହନଙ୍କ ପୁତ୍ର)

ରଘୁନାଥ | ରାମଚନ୍ଦ୍ର | ଦାଶରଥି | ଗୋପାଳଚନ୍ଦ୍ର



# ଭକ୍ତକବି ହରିବନ୍ଧୁ ବେବର୍ତ୍ତା

ଭକ୍ତକବିଙ୍କ ପ୍ରପିତାମହ ଅନ୍ୟତମ ହରିବନ୍ଧୁ ବେବର୍ତ୍ତା ପାରଳାର ତତ୍କାଳୀନ ମହାରାଜା ଜଗନ୍ନାଥ ଗଜପତିଙ୍କ ଠାରୁ "ବେବର୍ତ୍ତା" ଉପାଧି ସହ ଅନକର୍ଣ୍ଣା ନାମକ ଏକ ଗ୍ରାମ ଜାଗିର୍ ଭାବେ ପାଇଥିଲେ । କିନ୍ତୁ ତାହାଙ୍କ ଏକମାତ୍ର ପୁତ୍ର କୂର୍ମନାଥ ବେବର୍ତ୍ତାଙ୍କ ସମୟରେ ଉକ୍ତ ଜାଗିର୍ ଲୋପ ପାଇଥିଲା । ଭକ୍ତକବି ହରିବନ୍ଧୁ ସେହି କୂର୍ମନାଥ ବେବର୍ତ୍ତାଙ୍କ ପୁତ୍ର ଭାବେ ୧୮୨୬ ଖ୍ରୀଷ୍ଟାବ୍ଦ ଫେବୃୟାରୀ ୩ ତାରିଖ ଦିନ ପାରଳାଖେମୁଣ୍ଡିର କରଣ ସାହିରେ ଜନ୍ମଗ୍ରହଣ କରିଥିଲେ ।

ଭକ୍ତକବି ହରିବନ୍ଧୁ ଆବାଲ୍ୟରୁ ପିତୃମାତୃ-ହୀନ ଥିଲେ । ତେଣୁ, ଜ୍ୟେଷ୍ଠ ଭଗିନୀ ବିଧବା ଅନ୍ନୁଣୀ ରାଧିକାଙ୍କ ଆଶ୍ରୟରେ ଆର୍ଥିକ ଅନାଟନ ମଧ୍ୟରେ ସେ ନିଜର ବାଲ୍ୟଜୀବନ ଅତିବାହିତ କରିଥିଲେ ।

ଭକ୍ତକବି ହରିବନ୍ଧୁ ପଞ୍ଚମ ବର୍ଷ ବୟସରେ ସ୍ଥାନୀୟ ଚାଟଶାଳୀ ଶିକ୍ଷକ କର୍ଣ୍ଣଗୁରୁଙ୍କ ଠାରେ ବିଦ୍ୟାଶିକ୍ଷା କରିଥିଲେ । କାଳକ୍ରମେ ସେ ସଂସ୍କୃତ ଏବଂ ତେଲୁଗୁ ଭାଷା ଶିକ୍ଷା କରିଥିଲେ । ସେ ଜ୍ୟୋତିଷ ଶାସ୍ତ୍ର ମଧ୍ୟ ଶିକ୍ଷା କରିଥିଲେ । ସ୍ଥାନୀୟ କବି ଓ ସଙ୍ଗୀତଜ୍ଞ ଗୌରହରି ପରିଚ୍ଛାଙ୍କ ଠାରୁ ସେ ସଙ୍ଗୀତଶାସ୍ତ୍ର ଶିକ୍ଷା କରିଥିଲେ । ଦାକ୍ଷିଣାତ୍ୟର ସଙ୍ଗୀତଜ୍ଞ ଧାରବାଡ଼ା ମାଧବ ରାଓ, ଭକ୍ତକବିଙ୍କ ଅନ୍ୟତମ ସଙ୍ଗୀତ ଗୁରୁ ଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ, କବିଙ୍କ ପଠନସ୍ପୃହା ଏତେ ପ୍ରବଳ ଥିଲାଯେ, ସେ ଏପରିକି ୬୩ ବର୍ଷ ବୟସରେ ମଧ୍ୟ ବଙ୍ଗଳା ଭାଷା ଶିକ୍ଷା କରିଥିଲେ । ତାଳପତ୍ରରେ ସୁନ୍ଦର ସୁଡ଼ୋଳ ଅକ୍ଷର ଲେଖିବାରେ ସେ ପ୍ରବୀଣ ଥିଲେ । ଏପରିକି ଚାଲିବା ସମୟରେବି, ବୁଢ଼ା ଅଙ୍ଗୁଳିର ବିନା ସାହାଯ୍ୟରେ ସେ ସୁନ୍ଦର ଗୋଲାକାର ଅକ୍ଷର ଲେଖିପାରୁଥିଲେ।

ଭକ୍ତକବି ହରିବନ୍ଧୁ ଆବାଲ୍ୟରୁ ଭକ୍ତିଭାବାପନ୍ନ ଥିଲେ । ସେ ମଠ ମନ୍ଦିରାଦିରେ ସାଧୁ-ସନ୍ନ୍ୟାସୀଙ୍କ ସହ ସଙ୍କୀର୍ତ୍ତନ ଏବଂ ଭଗବତ୍ କଥାଳାପରେ ସମୟ ଅତିବାହିତ କରୁଥିଲେ । ସମସାମୟିକ କବି ଗୋପାଳକୃଷ୍ଣ, ଗୌରହରି, ରଘୁନାଥ ପରିଚ୍ଛା ଏବଂ ଶ୍ରୀକରଣ ଗୌରାଙ୍ଗ ପଟ୍ଟନାୟକ ପ୍ରମୁଖଙ୍କ ସମ୍ପର୍କରେ ଆସି ତାହାଙ୍କ ପ୍ରତିଭା ଏବଂ ପାଣ୍ଡିତ୍ୟ ପରିମାର୍ଜିତ ହୋଇଥିଲା ।

ମୁଖ୍ୟତଃ କବି ଗୋପାଳକୃଷ୍ଣଙ୍କ ଗୀତ ଗୁଡ଼ିକ ସଂଗ୍ରହ କରିବାରେ, ତାହାଙ୍କ ଭୂମିକା ଉଲ୍ଲେଖଯୋଗ୍ୟ । ଯଦି ସେ ଏହି ମହତ୍ କାର୍ଯ୍ୟରେ ହାତ ଦେଇନଥାନ୍ତେ, ଗୋପାଳକୃଷ୍ଣଙ୍କ ଅନେକ କବିତା ଆଜି ହୁଏତ ଦେଖିବା ସମ୍ଭବପର ହୋଇନଥାନ୍ତା । ଭକ୍ତକବି ଗୋପାଳକୃଷ୍ଣଙ୍କର ସେ ଅନ୍ତରଙ୍ଗ ଥିଲେ ।

ତେଣୁ ଗୋପାଳକୃଷ୍ଣ, ଶ୍ରଦ୍ଧାରେ ହରିବନ୍ଧୁଙ୍କୁ "ସମୁଦ୍ର ପେଟା " ବୋଲି ସମ୍ବୋଧନ କରୁଥିଲେ । ସମ୍ଭବତଃ, ଗୋପାଳକୃଷ୍ଣଙ୍କ ସହ ଏହି ଆତ୍ମୀୟତାହିଁ, ଶ୍ରୀରାଧାକୃଷ୍ଣଙ୍କ ସମ୍ପର୍କରେ ଭକ୍ତି ରସାତ୍ମକ କବିତା ରଚନା କରିବାକୁ ତାଙ୍କୁ ପ୍ରେରଣା ଯୋଗାଇଥିଲା ।

ଭକ୍ତକବି ହରିବନ୍ଧୁ ବେହଲା ବାଦନ କରିବାରେ ଅସାଧାରଣ ଦକ୍ଷତା ଲାଭ କରିଥିଲେ । ସେ ଏକକାଳୀନ ଏକାଧିକ ବାଦ୍ୟଯନ୍ତ୍ର ବାଦନ କରିବାରେ ମଧ୍ୟ ସିଦ୍ଧହସ୍ତ ଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ, ମେଳିଆପୁଟରେ ରାଧାଗୋବିନ୍ଦ ମନ୍ଦିର ପ୍ରତିଷ୍ଠା ସମୟରେ ତ୍ରଙ୍କା ଆପୁଲୁ ନାମକ ଜଣେ ସଙ୍ଗୀତଜ୍ଞ ଆପଣା କନ୍ୟା ସହ ମଞ୍ଜୁଷା ଗଡ଼ରୁ ଆସି ଗାନ, ନୃତ୍ୟ ଏବଂ ଅଭିନୟ ପ୍ରଦର୍ଶନ କରି ନିଜର ବଡ଼ିମା ପ୍ରକାଶ କରିଥିଲେ । ଫଳରେ, ମହାରାଜାଙ୍କ ଆଜ୍ଞା ପାଇ, ହରିବନ୍ଧୁ ବେବର୍ତ୍ତା ଉକ୍ତ ସଙ୍ଗୀତଜ୍ଞଙ୍କର କେତେକ ତ୍ରୁଟି ଦର୍ଶାଇଥିଲେ । ସଙ୍ଗୀତଜ୍ଞ ତ୍ରଙ୍କା ଆପୁଲୁ ସେଥିରେ ସନ୍ତୁଷ୍ଟ ହୋଇ ଆପଣା କନ୍ୟାକୁ ସଙ୍ଗୀତରେ କିଛି ଗୁରୁତ୍ତ୍ୱ ଶିକ୍ଷା ଦେବା ନିମନ୍ତେ ହରିବନ୍ଧୁଙ୍କୁ ଅନୁରୋଧ କରିଥିଲେ ।

ପାରଳା ମହାରାଜା ପ୍ରତାପରୁଦ୍ର ଗଜପତି, ହରିବନ୍ଧୁଙ୍କ କବିତ୍ୱ ଏବଂ ସଙ୍ଗୀତ-ଜ୍ଞାନରେ ମୁଗ୍ଧ ହୋଇ, ରାଜଦରବାରରେ ସଭାସଦ୍‌ପଣ୍ଡିତ ଭାବେ ଶାଢ଼ୀ ପ୍ରଦାନ କରିଥିଲେ । ମହାରାଜାଙ୍କ ଠାରୁ ସେ ଆଜୀବନ ମାସିକ ପାରିତୋଷିକ ମଧ୍ୟ ପାଉଥିଲେ।

ଭକ୍ତକବି ହରିବନ୍ଧୁ ବେବର୍ତ୍ତା ଜ୍ୟୋତିଷ ଶାସ୍ତ୍ରରେ ମଧ୍ୟ ଅଗାଧ ପାଣ୍ଡିତ୍ୟ ଲାଭ କରିଥିଲେ । ଶୁଣାଯାଏ, ସେ ନିଜର ମୃତ୍ୟୁ ଦିବସ ଏବଂ ସମୟ ଜ୍ୟୋତିଷ ଗଣନା ଦ୍ୱାରା ବହୁ ପୂର୍ବରୁ ନିର୍ଣ୍ଣୟ କରିଥିଲେ । ଏପରିକି, ସେ ଓଡ଼ିଆ ଭାଷାରେ "ଜ୍ୟୋତିଷ ଶାସ୍ତ୍ର ସଂଗ୍ରହ " ନାମକ ଏକ ପୁସ୍ତକ ମଧ୍ୟ ରଚନା କରିଥିଲେ ।

ଭକ୍ତକବି ହରିବନ୍ଧୁ ବେବର୍ତ୍ତାଙ୍କର ବହୁମୁଖୀ ପ୍ରତିଭା ବାସ୍ତବିକ ଅବିସ୍ମରଣୀୟ । କବି ହରିବନ୍ଧୁ ୧୮୯୬ ଖ୍ରୀଷ୍ଟାବ୍ଦରେ ଇହଧାମ ତ୍ୟାଗ କରିଛନ୍ତି । ଆଜି ତାହାଙ୍କ ରଚିତ ଶତାଧିକ କବିତା ମାତ୍ର "ହରିବନ୍ଧୁ ପଦ୍ୟାବଳୀ " ନାମରେ ୧୯୩୩ ଖ୍ରୀଷ୍ଟାବ୍ଦରେ ସ୍ଥାନୀୟ ଗଜପତି ପ୍ରେସ୍‌ରୁ ପ୍ରକାଶ ପାଇଛି । ତଥାପି, ତାହାଙ୍କ ରଚିତ ଏହି ପଦ୍ୟାବଳୀ କବିଙ୍କ ବହୁମୁଖୀ ପ୍ରତିଭାର ଯେ ଏକ ମୂକ ପ୍ରମାଣ, ଏହା କହିବା ବାହୁଲ୍ୟମାତ୍ର ।

# ବିନ୍ଧାଣି ବୃନ୍ଦାବନଚନ୍ଦ୍ର ପଟ୍ଟନାୟକ

ଭକ୍ତକବି ଗୋପାଳକୃଷ୍ଣଙ୍କ ମୂର୍ତ୍ତିର ନିର୍ମାଣକର୍ତ୍ତା ବିନ୍ଧାଣି ବୃନ୍ଦାବନଚନ୍ଦ୍ର ପଟ୍ଟନାୟକ, ସମ୍ଭବତଃ ଊନବିଂଶ ଶତାବ୍ଦୀର ଦ୍ୱିତୀୟ ପାଦରେ ପାରଳାଖେମୁଣ୍ଡିର କରଣ ସାହିରେ ଜନ୍ମଗ୍ରହଣ କରିଥିଲେ । ଦାରୁ ଜିନିଷ ତିଆରି କରିବାରେ ସେ ଜଣେ କୁଶଳୀ କାରିଗର ଭାବରେ ଏ ଅଞ୍ଚଳର ସର୍ବତ୍ର ପରିଚିତ । ଜଣେ ଦକ୍ଷ ଚିକିତ୍ସକ ଭାବେ ମଧ୍ୟ ତାଙ୍କର ବହୁ ଖ୍ୟାତି ରହିଥିବା ଶୁଣାଯାଏ । ଯୁବାବସ୍ଥାରେ ଜଣେ ଶ୍ରେଷ୍ଠ କୁସ୍ତିକାର ଭାବେ ମଧ୍ୟ ସେ ବେଶ୍ ଜଣାଶୁଣା ଥିଲେ । ଏତଦ୍‌ବ୍ୟତୀତ, ଶିକାର କରିବା ସେହି ସମୟରେ ଏହାଙ୍କର ଏକ ସୌଖ ଥିଲା । କିନ୍ତୁ ପରବର୍ତ୍ତୀ ସମୟରେ ସେହି ମନୋବୃତ୍ତି ତାଙ୍କ ମନରୁ ଅସ୍ତମିତ ହୋଇଥିବା ଜଣାଯାଏ । ତାପରଠାରୁ ଜଣେ ବିନ୍ଧାଣି ଭାବରେ ସେ ନିଜର କର୍ମମୟ ଜୀବନ ପ୍ରାରମ୍ଭ କରିଥିଲେ ।

ବିନ୍ଧାଣି ବୃନ୍ଦାବନଚନ୍ଦ୍ରଙ୍କ କୃତିତ୍ୱ ସମ୍ବନ୍ଧରେ କିଛି ସୂଚନା ଦେବା ପୂର୍ବରୁ ତାଙ୍କ ଜୀବନର ଏକ କୌତୁକପ୍ରଦ ଘଟଣା ଉଲ୍ଲେଖଯୋଗ୍ୟ ମନେ ହୁଏ । ପାରଳା ମହାରାଜାଙ୍କ ଉଆସର ଅଗ୍ରଭାଗରେ, ସିଂହଦ୍ୱାର ସମ୍ମୁଖସ୍ଥ ଯେଉଁ ବିସ୍ତୀର୍ଣ୍ଣ ପଡ଼ିଆ ରହିଛି, ସେଠାରେ ଗୋଟିଏ ବିରାଟ ବୃକ୍ଷ ରହିଥାଏ । ଦିନେ ସେହି ବୃକ୍ଷରେ ତାଙ୍କ ଦ୍ୱାରା ଦାରୁରେ ନିର୍ମିତ ପ୍ରାୟ ପଚାଶ-ଷାଠିଏଟି ଚଢ଼େଇ ଝୁଲା ଯାଇଥିଲା । ମହାରାଜା ସାନ୍ଧ୍ୟ ଭ୍ରମଣ ସାରି ଉଆସକୁ ଫେରିବା ଅବ୍ୟବହିତ ପୂର୍ବରୁ, ଦାରୁରେ ନିର୍ମିତ ଗୋଟିଏ ଚନ୍ଦ୍ରଦୀପ ସେହି ବୃକ୍ଷ ମୂଳରେ ସେ ଜଳାଇଥିଲେ । ଫଳରେ, ଚନ୍ଦ୍ରଦୀପର ତେଜରେ ସତେ ଯେପରି ଶରତଚନ୍ଦ୍ରର ତେଜ ପରି ସେହି ଅଞ୍ଚଳ ଉଜ୍ଜ୍ୱଳମୟ ଦେଖାଯାଇଥିଲା । ସେହି ସମୟରେ ମହାରାଜା ଉଆସ ମଧ୍ୟରେ ପ୍ରବେଶ କରନ୍ତେ, ବୃକ୍ଷରେ ଝୁଲା ଯାଇଥିବା ଦାରୁରେ ନିର୍ମିତ ଚଢ଼େଇ ମାନେ ଆକାଶ ମାର୍ଗରେ ଉଡ଼ିଥିଲେ । ମହାରାଜା ଏହି ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ ଏବଂ କାରିଗରଙ୍କର ଭୂୟସୀ ପ୍ରଶଂସା କରି ତାଙ୍କୁ ସେଦିନ ସମ୍ମାନିତ କରିଥିଲେ । କିନ୍ତୁ ସେହିଦିନ ଠାରୁ ଚଢ଼େଇ ବୃନ୍ଦାବନ ଭାବରେ ସେ ଲୋକମୁଖରେ ପରିଚିତ ହୋଇଥିଲେ । ବର୍ତ୍ତମାନ ସୁଦ୍ଧା ଏହାଙ୍କ ବଂଶକୁ ଚଢ଼େଇ ଘର ନାମରେ ଅଭିହିତ କରାଯାଇଥାଏ ।

ବିନ୍ଧାଣି ବୃନ୍ଦାବନଚନ୍ଦ୍ର ତାଙ୍କ ଯୁବାବସ୍ଥାରେ ଜଣେ ଦକ୍ଷ ଶିକାରି ଭାବେ ଖ୍ୟାତି ଲାଭ କରିଥିଲେ । କିନ୍ତୁ ଦିନକର ଘଟଣା ତାଙ୍କ ମାନସ ପଟରେ ଏକ ବିରାଟ ପରିବର୍ତ୍ତନ ଘଟାଇଥିଲା । ସେ ନିକଟସ୍ଥ କୌଣସି ଜଙ୍ଗଲକୁ ଶିକାର ଉଦ୍ଦେଶ୍ୟରେ ଯାଇଥାନ୍ତି । କିନ୍ତୁ ହଠାତ୍ ଆକାଶରେ କଳାହାଣ୍ଡିଆ ମେଘ ଘୋଟି ଆସିଥିଲା । ପାହାଡ଼ ପରିବେଷ୍ଟିତ ଚତୁର୍ଦ୍ଦିଗର ମଧ୍ୟଭାଗରେ ଘଞ୍ଚ ଜଙ୍ଗଲ, ଏବଂ କୁଳୁକୁଳୁ ନାଦରେ ବହିଯାଉଥିବା ଚନ୍ନିକଟସ୍ଥ ଝରଣା ପାର୍ଶ୍ୱରେ ଗୋଟିଏ ମୟୂର ପୁଚ୍ଛ ବିସ୍ତାରିତ କରି

ଆକାଶର କୃଷ୍ଣବର୍ଣ୍ଣ ମେଘକୁ ଦେଖି ନୃତ୍ୟ କରୁଥାଏ । ବିଧିପ୍ରେରିତ ଭାବେ ଯେପରି, ମୟୂରଟିର ସେହି ଅପରୂପ ସୌନ୍ଦର୍ଯ୍ୟ ଏବଂ ଅଭିନବ ନୃତ୍ୟ ଭଙ୍ଗିମା ତାଙ୍କର କାଠିନ୍ୟ ହୃଦୟକୁ ସେଦିନ ଦ୍ରବିଭୂତ କରିଦେଇଥିଲା । ବିଶ୍ୱବିଜ୍ଞାଣି ଭଗବାନଙ୍କ ସୃଷ୍ଟିର ସୌନ୍ଦର୍ଯ୍ୟ ହୃଦୟଙ୍ଗମ ନକରି, ମନୁଷ୍ୟ କିପରି ତାଙ୍କର ଅମୃତମୟ ସୃଷ୍ଟିକୁ ଧ୍ୱଂସାଭିମୁଖୀ କରିଥାଏ, ତାହା ସେ ସେହିଦିନହିଁ ଉପଲବ୍ଧି କରିପାରିଥିଲେ । ତତ୍କ୍ଷଣେ ଶିକାର ଉଦ୍ଦେଶରେ ନେଇଥିବା ତାଙ୍କର ବନ୍ଧୁକଟିକୁ ଭାଙ୍ଗି ସେ ଫିଙ୍ଗି ଦେଇଥିଲେ । ସେହିଦିନ ଠାରୁ ଭଗବାନଙ୍କ ସୃଷ୍ଟିର ବୈଚିତ୍ର ପ୍ରଚାର ନିମନ୍ତେ ଜଣେ ବିଜ୍ଞାଣି ଭାବେ ସେ ସୃଜନ ଶକ୍ତିରେ ମନୋନିବେଶ କରିଥିଲେ । ଏହି ସନ୍ଦର୍ଭରେ ସୂଚନା ଦେବାକୁ ଯାଇ, ସ୍ୱର୍ଗତ ସୀମାଦ୍ରି ପଟ୍ଟନାୟକ (୧୮୯୫-୧୯୬୨) ପାଗଳା ପ୍ରଳାପ (ଅପ୍ରକାଶିତ) କାବ୍ୟର ଷଷ୍ଠ ଲହରୀରେ ଲେଖିଛନ୍ତି-

ବିଜ୍ଞାଣି ଦାରୁଖାନା ବୃନ୍ଦାବନ
ଥିଲେ ବହୁ ବିଦ୍ୟା ଗୁଣ ନିପୁଣ (୩୩)
ଦିନେ ମୃଗୟା ବିନୋଦରେ ଠିଆ
ଘନ ମତ୍ତ ନୃତ୍ୟେ ଶୀଳ ଝାଲିଆ (୩୪)
ରୂପ ଆଖିରେ ଦେଖି ସେ ଛାନିଆ
ବିଗଳିତ ହେଲା ସରସହିଆ (୩୫)
ପକ୍ଷୀର ଚନ୍ଦ୍ରିକା କେରା ସୁଷମା
ଅତୀତ ମର ଶିଳ୍ପ ଶକ୍ତି ସୀମା (୩୬)
ବିଲୋକି ବିଶ୍ୱ ବିଜ୍ଞାଣି ମହିମା
ହଜିଗଲା ନିଜ ଶିଳ୍ପ ଗାରିମା (୩୭)
ପ୍ରଭାତ ତେଜରେ ଯେସନ ତାରା
ଆଚମ୍ବିତେ ହେଲେ ସେ ଅମହରା (୩୮)
ଶତମୁଖେ କରି ତାର ପ୍ରଶଂସା
ଭାଙ୍ଗିଦେଲେ ଲୁହା ନଳି ସହସା (୩୯)
ଛାଡ଼ିଗଲା ଚିତ୍ତୁ ପାପ ଦୁରାଶା
ମେଲାଇଲା ପଲ୍ଲବ ନବ ଆଶା (୪୦)
ତତ୍ପରେ କଲେ ଅଟଳ ପଣ
ନିବର୍ତ୍ତିଲେ ଜୀବ ବଧୁ ଆପଣ (୪୧)
ସରଜନା ଶକ୍ତିରେ ଅନୁଦିନ
ଖଟାଇବେ ନିଜ ମନ ଧିଆନ (୪୨)

ବିଜ୍ଞାଣି ବୃନ୍ଦାବନଚନ୍ଦ୍ର, ବର୍ଣ୍ଣ ବୈଚିତ୍ର ଭରା ପ୍ରକୃତିର ମୁକସାକ୍ଷୀ ଭାବେ ପ୍ରତିୟମାନ, ପଶୁପକ୍ଷୀ ଏବଂ ବୃକ୍ଷଲତାଦିର ଚିତ୍ର ଆଙ୍କିବାକୁ ସର୍ବପ୍ରଥମେ ଆକୃଷ୍ଟ ହୋଇଥିବା ଶୁଣାଯାଏ । କିନ୍ତୁ ପରବର୍ତ୍ତୀ ସମୟରେ ସୋଲ ଏବଂ କାଠରେ ମୂର୍ତ୍ତିଗଠନ କରିବାରେ ସେ ଧୁରନ୍ଧର ହୋଇଥିଲେ । ସୋଲରେ ବିଭିନ୍ନ ରକମର ଫୁଲ ତିଆରି କରିବାରେ ମଧ୍ୟ ସେ ନିପୁଣ ଥିଲେ । ପାରଳାଖେମୁଣ୍ଡିର ଝୁଲଣ ଯାତ୍ରା ସମୟରେ ଅଦ୍ୟାବଧି ଏହାଙ୍କର କେତେକ କଳାକୃତି ଦେଖିବାକୁ ମିଳିଥାଏ । ପାରଳାର ପ୍ରସିଦ୍ଧ ରଥଯାତ୍ରା ସମୟରେ ରଥ ଉପରେ ଅବସ୍ଥାପିତ କରାଯାଉଥିବା ଗୋପୀକାମାନଙ୍କ କାଷ୍ଠ ନିର୍ମିତ ରମଣୀୟ ମୂର୍ତ୍ତି ବର୍ତ୍ତମାନ ସୁଦ୍ଧା ଏହାଙ୍କର ଶ୍ରେଷ୍ଠ କଳାକୃତିର ସ୍ୱାକ୍ଷର ବହନ କରିଥାଏ ।

ବିଜ୍ଞାଣି ବୃନ୍ଦାବନଚନ୍ଦ୍ର ଚିତ୍ର ସୃଷ୍ଟି ପାଇଁ ବ୍ୟବହୃତ ସମସ୍ତ ରଙ୍ଗ ନିଜେ ତିଆରି କରୁଥିଲେ । ଏଥିପାଇଁ ତାଙ୍କୁ ବହୁ ପରିଶ୍ରମ କରିବାକୁ ପଡୁଥିଲା । ସାମୁଦ୍ରିକ ଖୋଳରୁ ଧଳାରଙ୍ଗ, ହିଙ୍ଗୁଳି ଶିଳାରୁ ନାଲିରଙ୍ଗ, ହରିତାଳରୁ ହଳଦିଆ ରଙ୍ଗ ଏବଂ ଦୀପଶିଖାରୁ ନିର୍ଗତ କଳା ରେଣୁରୁ କଳାରଙ୍ଗ ପ୍ରଭୃତି ସେ ସଂଗ୍ରହ କରୁଥିଲେ । କଇଥ, ବେଲ ପ୍ରଭୃତି ଗଛରୁ ନିର୍ଗତ ଅଠାକୁ ମଧ୍ୟ ସେ ସଂଗ୍ରହ କରୁଥିଲେ । ତାପରେ ରାସାୟନିକ ପ୍ରକ୍ରିୟାରେ ଆବଶ୍ୟକ ଗୁଣ୍ଡକୁ କୌଣସି ନିର୍ଦ୍ଦିଷ୍ଟ ଅଠାରେ ମିଶାଇ ସେ ବିଭିନ୍ନ ରଙ୍ଗ ପ୍ରସ୍ତୁତ କରୁଥିଲେ ।

ବିଜ୍ଞାଣି ବୃନ୍ଦାବନଚନ୍ଦ୍ରଙ୍କ ନିଖୁଣ କଳାତ୍ମକ ବିଦ୍ୟାର ପଟାନ୍ତର ନାହିଁ । ସେ ସୋଲ ଏବଂ କାଷ୍ଠରେ ଯେଉଁ ପ୍ରତିମୂର୍ତ୍ତିମାନ ଗଠନ କରୁଥିଲେ, ତାହା ସତେ ଯେପରି ଜୀବନ୍ତ ଭଳି ଦେଖାଯାଉଥିଲା । ବିଜ୍ଞାଣିଙ୍କର ଏହିପରି ସୂକ୍ଷ୍ମ କାରିଗରି କୁଶଳତାକୁ ସନ୍ଦେହ କରାଯାଇନପାରେ । ଏହାର ଯଥାର୍ଥତା ତାଙ୍କ ଜୀବନର କେତେକ ଦୃଷ୍ଟାନ୍ତରୁ ମଧ୍ୟ ସ୍ପଷ୍ଟ ଭାବେ ପ୍ରମାଣିତ ହୁଏ ।

ଥରେ ପାରଳା ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ଗୁଣ୍ଡିଚା ଯାତ୍ରା ଦିନ ସ୍ଥାନୀୟ ଜଗନ୍ନାଥ ମଠକୁ ଶ୍ରୀପ୍ରଭୁଙ୍କ ଦର୍ଶନ ନିମନ୍ତେ ଯାଇଥାନ୍ତି । ପ୍ରାଚୀନ ନିୟମାନୁଯାୟୀ, ମଠର ତତ୍କାଳୀନ ମହନ୍ତ ଶ୍ରୀ ଭଗବାନ ଦାସ ଅଧିକାରୀ ମହାରାଜାଙ୍କୁ ସସମ୍ମାନେ ପାଛୋଟି ନେଇ ଶ୍ରୀପ୍ରଭୁଙ୍କ ନିମନ୍ତେ ମାଳା ଅର୍ପଣ କରିବା ବିଧି ରହିଥାଏ । କିନ୍ତୁ ସେହିଦିନ ନିକଟସ୍ଥ ବକୁଳ ବୃକ୍ଷ ମୂଳରେ ବିଜ୍ଞାଣି ବୃନ୍ଦାବନଚନ୍ଦ୍ରଙ୍କ ଦ୍ୱାରା, ପଦ୍ମାସନେ ଧ୍ୟାନମଗ୍ନ ଥିବା ନବନିର୍ମିତ ଶ୍ରୀ ଅଧିକାରୀଙ୍କ ଗୋଟିଏ ପ୍ରତିମୂର୍ତ୍ତି ରଖାଯାଇଥାଏ। ମହାରାଜା ସେହି ପ୍ରତିମୂର୍ତ୍ତିକୁ ସଜୀବ ଜ୍ଞାନ କରି ରାଗରେ ପ୍ରଜ୍ୱଳିତ ହୋଇ ତତ୍‌କ୍ଷଣେ ରାଜପ୍ରାସାଦକୁ ଫେରିଆସିଥିଲେ । କିନ୍ତୁ ପରେ ପ୍ରକୃତ ତଥ୍ୟଟି ଅନୁସନ୍ଧାନ ଦ୍ୱାରା ଜାଣିପାରି ସେ କାରିଗରଙ୍କୁ ବହୁ ପ୍ରଶଂସା କରିଥିଲେ । ତତ୍‌କ୍ଷଣେ ବିଜ୍ଞାଣି ବୃନ୍ଦାବନଚନ୍ଦ୍ରଙ୍କୁ ରାଜନିବାସକୁ ଡାକି ଭକ୍ତକବି ଗୋପାଳକୃଷ୍ଣଙ୍କ ମୂର୍ତ୍ତି ନିର୍ମାଣ କରିବାକୁ ମହାରାଜା ଆଦେଶ ଦେଇଥିଲେ ।

ବିଜ୍ଞାଣି ବୃନ୍ଦାବନଚନ୍ଦ୍ର, ଭକ୍ତକବି ଗୋପାଳକୃଷ୍ଣଙ୍କୁ ପ୍ରାୟ ଅର୍ଦ୍ଧଶତାଧିକ ବର୍ଷ ତଳେ ତାଙ୍କ ଯୁବକାବସ୍ଥାରେ ଦେଖିଥିଲେ । ତେଣୁ ଭକ୍ତକବିଙ୍କ ମୂର୍ତ୍ତି ନିର୍ମାଣରେ ତାଙ୍କୁ କୌଣସି ଅସୁବିଧା ହୋଇନଥିଲା । ସେ ତାଙ୍କର ପ୍ରାୟ ନବେ ବର୍ଷ ବୟସ ବେଳେ ସେହି ମୂର୍ତ୍ତିଟି ଗଠନ କରିଥିବା ଶୁଣାଯାଏ । ସେ ଏହିପରି ଜୀବନ୍ତ ଭାବେ ଭକ୍ତକବିଙ୍କ ମୂର୍ତ୍ତିଟି ଗଠନ କରିଥିଲେ ଯେ, ତାହା ଦେଖି କବିଙ୍କର ଜଣେ ସମର୍ଦ୍ଦୀୟ ସଜୀବ ଜ୍ଞାନ କରି ଚକ୍ଷୁରୁ ଲୋତକ ବୁହାଇଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ, ଭକ୍ତକବିଙ୍କ କନିଷ୍ଠ ପୁତ୍ରର ଏକମାତ୍ର ସନ୍ତତି (ଯେକି ନିଜ ପିତାମାତାଙ୍କ ମୃତ୍ୟୁ ପରେ ଆବାଲ୍ୟରୁ ଗୋପାଳକୃଷ୍ଣଙ୍କ ଦ୍ୱାରା ଲାଳିତପାଳିତ ହୋଇଥିଲେ) ସେହି ସମୟରେ ଜୀବିତ ଥିଲେ । ବିଜ୍ଞାଣି ବୃନ୍ଦାବନଚନ୍ଦ୍ରଙ୍କ ଦ୍ୱାରା ନବନିର୍ମିତ ମୂର୍ତ୍ତି, କବିଙ୍କ ପ୍ରାଙ୍ଗଣରେ ରଖାଯାଥାନ୍ତେ, ସେ କବିଙ୍କୁ ସଜୀବ ଜ୍ଞାନ କରି ସେହିଦିନ ଚହୁଟ କାନ୍ଦିଥିଲେ । ଏଥିରୁ କାରିଗରଙ୍କର ଅସାଧାରଣ ଶିଳ୍ପ ବୈଚକ୍ଷଣରେ ସୌନ୍ଦର୍ଯ୍ୟବୋଧ ଏବଂ ନିଖୁଣ କଳା ପ୍ରତିଭାର ସ୍ପଷ୍ଟ ପରିଚୟ ମିଳେ ।

ଏହିପରି ଭାବେ ନିଜ ଜୀବନର ଅଧିକାଂଶ ସମୟ କଳାତ୍ମକ ବିଦ୍ୟାରେ ମନୋନିବେଶ କରି, ବିଂଶ ଶତାବ୍ଦୀର ଦ୍ୱିତୀୟ ପାଦରେ ବିଜ୍ଞାଣି ବୃନ୍ଦାବନଚନ୍ଦ୍ର ପଟ୍ଟନାୟକ ଇହଧାମ ଛାଡ଼ି ଚାଲିଯାଇଥିଲେ । ସେ ଆଜି ଆଉ ନାହାନ୍ତି ସତ, କିନ୍ତୁ ବର୍ତ୍ତମାନ ସୁଦ୍ଧା ଗୋପାଳକୃଷ୍ଣ କୁଟୀରର ଏକ ଗମ୍ଭୀରା ମଧ୍ୟରେ ଅବସ୍ଥାପିତ ଭକ୍ତକବିଙ୍କ ସେହି ସାଧୁ ସୁନ୍ଦର ସୌଷ୍ଠବ ସମ୍ପନ୍ନ ସୌମ୍ୟ ସ୍ୱରୂପ ଦେଖିଲେ, ଶିଳ୍ପୀଙ୍କ ଅମର ଆତ୍ମା ନିକଟରେ ମସ୍ତକ ସ୍ୱତଃ ନତ ହୋଇପଡ଼େ । ସେ ଜୀବନର ପରବର୍ତ୍ତୀ ଅଧ୍ୟାୟରେ, ବିଶ୍ୱବିଜ୍ଞାଣିଙ୍କ ସୃଷ୍ଟିର ଅମୃତମୟ ସ୍ୱର୍ଶ ଉପଲବ୍ଧି କରି, ଜଣେ ବିଜ୍ଞାଣି ଭାବେ ଯେପରି ଭାବରେ ନିଖୁଣ କଳାତ୍ମକ ବିଦ୍ୟାରେ କୃତିତ୍ୱ ଅର୍ଜନ କରିଥିଲେ, ସେଥିପାଇଁ ସେ ଯେ ଚିର ସ୍ମରଣୀୟ ହୋଇ ରହିବେ, ଏଥିରେ କୌଣସି ସନ୍ଦେହ ନାହିଁ ।

## ସଂକ୍ଷିପ୍ତ ବଂଶବୃକ୍ଷ

ବୃନ୍ଦାବନଚନ୍ଦ୍ର ପଟ୍ଟନାୟକ

ଜଗବନ୍ଧୁ | ସୂର୍ଯ୍ୟନାରାୟଣ | ମାଧବ



# ଜାତୀୟ କବି ଅପନ୍ନା ପଣ୍ଡା

ଅପନ୍ନା ପଣ୍ଡା ଏକାଧାରରେ ଥିଲେ ଜଣେ ଉତ୍ତମ ଶିକ୍ଷକ, ଜାତୀୟତାବାଦୀ ନେତା, ଦେଶପ୍ରେମୀ, କବି ଏବଂ ନାଟ୍ୟକାର। ପାରଳାର ପ୍ରାଚୀନ କବିଙ୍କୁ ଲୋକଲୋଚନକୁ ଆଣିବାରେ ସେ ଥିଲେ ସର୍ବପ୍ରଥମ ପ୍ରବକ୍ତା । ସେ ଥିଲେ ସ୍ଥାନୀୟ ଉତ୍କଳ ହିତୈଷିଣୀ ସମାଜର ଜଣେ ଅଗ୍ରଗଣ୍ୟ କର୍ମୀ । ଉତ୍କଳ ସମ୍ମିଳନୀର ଆଜୀବନ ସଭ୍ୟ ଭାବେ, ଦେଶମିଶ୍ରଣ ଆନ୍ଦୋଳନରେ ମଧ୍ୟ ସେ ସକ୍ରୀୟ ଅଂଶ ଗ୍ରହଣ କରିଥିଲେ ।

ଅପନ୍ନା ପଣ୍ଡା ୧୮୬୪ ଖ୍ରୀଷ୍ଟାବ୍ଦରେ ପାରଳାଖେମୁଣ୍ଡିର ବଡ଼ବ୍ରାହ୍ମଣ ସାହିରେ ଜନ୍ମ ଗ୍ରହଣ କରିଥିଲେ । ବାଲ୍ୟ ସମୟରେ ପ୍ରାଥମିକ ଶିକ୍ଷା ସମାପ୍ତ କରି, ମିଡ଼ିଲ୍ ସ୍କୁଲରେ କୃତକାର୍ଯ୍ୟ ହୋଇଥିଲେ । କିନ୍ତୁ ୧୮୮୫ ଖ୍ରୀଷ୍ଟାବ୍ଦରେ ଜମିଦାରୀ ପକ୍ଷରୁ ପାରଳାରେ ହାଇସ୍କୁଲ ସେକ୍ସନ୍ ଖୋଲିବାରୁ, ସେ ପ୍ରବେଶିକା ପରୀକ୍ଷାରେ ମଧ୍ୟ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇଥିଲେ । ତତ୍ପରେ ଅପନ୍ନା ପଣ୍ଡା ସ୍ଥାନୀୟ ହାଇସ୍କୁଲରେ ଶିକ୍ଷକ ଭାବେ ନିଯୁକ୍ତି ପାଇ ନିଜକୁ ସମ୍ମାନିତ ମନେ କରିଥିଲେ ।

ଜଣେ ଛାତ୍ରବତ୍ସଳ ଶିକ୍ଷକ ଭାବେ ଅପନ୍ନା ପଣ୍ଡା ଏହି ଅଞ୍ଚଳରେ ବେଶ୍ ଜଣାଶୁଣା । ମୁଖ୍ୟତଃ ଇତିହାସ ଶିକ୍ଷକ ଭାବେ ହାଇସ୍କୁଲରେ ତାଙ୍କର ବିଶେଷ ଲୋକପ୍ରିୟତା ରହିଥିଲା । ଛାତ୍ରଙ୍କୁ ଉପଦେଶ ଦେଇ ଚରିତ୍ର ଗଠନ କରିବାରେ ତାଙ୍କର ଦକ୍ଷତା ଥିଲା ଅଦ୍ୱିତୀୟ । ଅପନ୍ନା ପଣ୍ଡାଙ୍କ କୃତ "କବିତାକଳିକା"ରେ ଏହି ଭାବ ପ୍ରତିଫଳିତ ହୋଇଅଛି । ସେ ଲେଖିଛନ୍ତି -

ଛାତ୍ରଗଣ ବିଦ୍ୟାଶିକ୍ଷାରେ      ମନ ଦେଇ ସତତ,
ପଢ଼ନ୍ତି ଯେ ଯାହା ପୁସ୍ତକ      ପ୍ରୀତ ହୋଇ ଅତ୍ୟନ୍ତ ॥
ଭକ୍ତି ଭାବେ ଗୁରୁ ଆଜ୍ଞାକୁ      ଶିରେ ସତତେ ଧରି,
ସାଧନ୍ତି ସ୍ୱକାର୍ଯ୍ୟ ସଧୀରେ      ମନ ପ୍ରଫୁଲ୍ଲ କରି ॥
ନିଶାନ୍ତ ପୂର୍ବରେ ଶଯ୍ୟାରୁ      ଉଠି ପ୍ରଦୀପ ଠାରେ,
ଘଣ୍ଟା ଦେଢ଼ ଘଣ୍ଟା ଯାପନ୍ତି      ନିତି ବିଦ୍ୟାଭ୍ୟାସରେ ॥
ତତ୍ପରେ ବ୍ୟାୟାମ ଶିକ୍ଷାରେ      କେତେ କାଳ ହରିଣ,
ବିଦ୍ୟାଳୟେ ଯାନ୍ତି ତାପରେ      ସାରି ସ୍ନାନ ଭୋଜନ ॥
ଦିନମଣି ଅସ୍ତ ସମୟେ      ଫେରି ବ୍ୟାୟାମେ ରତ,
ତତ୍ପରେ ପାଠ ପଢ଼ନ୍ତି      ନିତି ଏପରି ବ୍ରତ ॥

ନିରଳସ ଭାବେ ସେମାନେ	ଏହି ବ୍ରତ ପାଳନ୍ତି ,
ଅନାୟାସେ ବିଦ୍ୟାସାଗର	ପାରି ଶୀଘ୍ର ହୁଅନ୍ତି ॥
ଗୁରୁ ତୁଷ୍ଟ ହୁଏ ଏପରି	ଶିଷ୍ୟ ଦେବାରେ ଦେଖା,
ଏହି ପୁତ୍ର ଲାଗି ମାତାବି	ପୁତ୍ରବତୀରେ ଲେଖା ॥
ଛାତ୍ରଙ୍କ ମଧ୍ୟରେ ଏହିବି	ଅଟେ ଉତ୍ତମତମ,
ବାଳକେ ଏ ଛବି ହୃଦୟ-	ପଟେ କର ଧାରଣ ॥
ଶିକ୍ଷା କରି ଏହି ଭାବରେ	ଲଭ ମହା ଉନ୍ନତି,
ବୃଥାରେ ସମୟ ନ କାଟ	ଛାଡ଼ ଚପଳ ମତି ॥

ଅପନା ପଣ୍ଡାଙ୍କ ଶିକ୍ଷାଦାନରେ ଉଚ୍ଚକୋଟୀର ବାକ୍ପଟୁତା ସହ ଚରିତ୍ର ଗଠନୋନ୍ମୁଖୀ ଆଭିମୁଖ୍ୟ ପରିଲକ୍ଷିତ ହେଉଥିଲା। ଫଳତଃ, ମିତ୍ର ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁଙ୍କ ସ୍ୱୀକୃତି କ୍ରମେ, ଅପନା ପଣ୍ଡା ଯୁବରାଜ କୃଷ୍ଣଚନ୍ଦ୍ର ଗଜପତିଙ୍କ ଅଧ୍ୟାପନା କାର୍ଯ୍ୟରେ ନିଯୁକ୍ତି ପାଇଥିଲେ । ଏଠାରେ ଉଲ୍ଲେଖଯୋଗ୍ୟଯେ, ଶ୍ରୀ ରାଜଗୁରୁ ମହୋଦୟ ମଧ୍ୟ ମଝିମଝିରେ ଯୁବରାଜଙ୍କ ପାଠ ପ୍ରୋଗ୍ରେସ୍ ବୁଝିଥାନ୍ତି । ତଥାପି, ନିତ୍ୟ ଯୁବରାଜଙ୍କୁ ପଢ଼ାଇବା ଦାୟିତ୍ୱ ଅପନା ପଣ୍ଡାଙ୍କ ଉପରେ ହିଁ ନ୍ୟସ୍ତ ଥିଲା । ସେ ଉତ୍ତର ଜୀବନରେ, ପାରିକୁଦ ରାଜାଙ୍କର ଅଭିଭାବକ ଭାବେ ମଧ୍ୟ କିଛିକାଳ କାର୍ଯ୍ୟ କରିଥିଲେ ।

ଅପନାପଣ୍ଡା ଆବାଲ୍ୟରୁ ବିଭିନ୍ନ କାର୍ଯ୍ୟରେ ବ୍ୟାପୃତ ଥାଇ ମଧ ଓଡ଼ିଆ ଜାତୀୟ ଆନ୍ଦୋଳନର ମହାସ୍ରୋତରୁ କଦାପି ବିଛିନ୍ନ ହୋଇନଥିଲେ । ସେହି ସମୟରେ ଗଞ୍ଜାମ ଜିଲ୍ଲାର ଅଫିସ୍ ଗୁଡ଼ିକରେ ଓଡ଼ିଆ ଭାଷାର ପ୍ରଚଳନ ନଥିଲା । ତେଣୁ ପାରଳାର ଉତ୍କଳ ହିତୈଷିଣୀ ସମାଜ ପକ୍ଷରୁ ୧୮୮୬ ଖ୍ରୀଷ୍ଟାବ୍ଦରେ ଏକଲକ୍ଷ ସ୍ୱାକ୍ଷର ସଂଗ୍ରହ ଅଭିଯାନ ଆରମ୍ଭ କରାଯାଇଥିଲା । ୧୮୮୯ ଖ୍ରୀଷ୍ଟାବ୍ଦରେ ମାନ୍ଦ୍ରାଜ୍‌ର ଗଭର୍ଣ୍ଣର ଲର୍ଡ କାନ୍‌ମୋରା ଏବଂ ଗଞ୍ଜାମ କଲେକ୍ଟର ହାର୍‌ସ୍‌ପାଲ୍‌ଙ୍କ ଉପସ୍ଥିତିରେ କାଶିଳି ଠାରେ ଦରବାର ଚାଲିଥିବା ବେଳେ, ଏକଲକ୍ଷ ସ୍ୱାକ୍ଷର ସହ ଗଞ୍ଜାମ ଓଡ଼ିଆଙ୍କ ଆବେଦନ ଉପସ୍ଥାପନ କରାଯାଇଥିଲା । ଫଳତଃ ୧୮୯୦ ଖ୍ରୀଷ୍ଟାବ୍ଦ ଜାନୁୟାରୀରୁ ଗଞ୍ଜାମର ସରକାରୀ ଅଫିସ୍ ଗୁଡ଼ିକରେ ଓଡ଼ିଆ ଭାଷାର ପ୍ରଚଳନ ହେଲା । ଏହି ସ୍ୱାକ୍ଷର ସଂଗ୍ରହ ଅଭିଯାନରେ ଅପନା ପଣ୍ଡା ସକ୍ରିୟ ଭୂମିକା ଗ୍ରହଣ କରିଥିଲେ । ସମ୍ଭବତଃ ଏହି ଘଟଣା, ପରବର୍ତ୍ତୀ ସମୟରେ ରାଜପୃଷ୍ଠପୋଷକତା ଲାଭ କରିବାରେ ତାଙ୍କର ଯଥେଷ୍ଟ ସହାୟକ ହୋଇପାରିଥିଲା ।

ପାରଳାଖେମୁଣ୍ଡିର ନେତୃସ୍ଥାନୀୟ ଓଡ଼ିଆଙ୍କ ସହ ଅପର୍ଣ୍ଣା ପଣ୍ଡାଙ୍କର ଘନିଷ୍ଠ ସମ୍ପର୍କ ରହିଥିଲା । ଉତ୍କଳ ହିତୈଷିଣୀ ସମାଜର ପ୍ରତିଷ୍ଠାତା ଏବଂ ସଭାପତି ଓ ପାରଳା ମ୍ୟୁନିସିପାଲିଟିର ତଦାନୀନ୍ତନ ଚେୟାର୍‌ମ୍ୟାନ୍ ପ୍ରାଚଣ୍ଡିତ ଶ୍ୟାମସୁନ୍ଦର ରାଜଗୁରୁ ତାଙ୍କର ପରମ ମିତ୍ର ଥିଲେ । ମଣିକାଞ୍ଚନ ସହଯୋଗ ପରି ରାଜଭ୍ରାତା ପଦ୍ମନାଭ ଗଜପତିଙ୍କ ସହ ମଧ୍ୟ ତାଙ୍କର ସମ୍ପର୍କ ଥିଲା ଅତି ନିବିଡ଼ । ଓଡ଼ିଆ ଭାଷା, ସାହିତ୍ୟ ଏବଂ ଜାତୀୟତା ସମ୍ବନ୍ଧରେ ଏମାନଙ୍କର ଐକ୍ୟ ବିଚାରଧାରା ପରିଲକ୍ଷିତ ହେଉଥିଲା ।

ଅପର୍ଣ୍ଣା ପଣ୍ଡା ସ୍ଥାନୀୟ ଗଜପତି ପ୍ରେସ୍‌ରେ ପ୍ରକାଶ ପାଉଥିବା ପୁସ୍ତକ ଗୁଡ଼ିକର ପ୍ରୁଫ୍ ସଂଶୋଧନ କରିବାରେ ଶ୍ରମ ସ୍ୱୀକାର କରିବାକୁ କୁଣ୍ଠା ପ୍ରକାଶ କରୁନଥିଲେ । ଏହି କାର୍ଯ୍ୟଦକ୍ଷତା ଏବଂ ରାଜଭକ୍ତି ଲକ୍ଷ୍ୟ କରି ରାଜଭ୍ରାତା ପଦ୍ମନାଭ ଦେବ, ତାଙ୍କୁ ଗଜପତି ପ୍ରେସ୍‌ର ମ୍ୟାନେଜର୍ ପଦରେ ନିଯୁକ୍ତି ଦେଇଥିଲେ । ଫଳତଃ, ହାଇସ୍କୁଲରେ ଶିକ୍ଷକତା, ରାଜକୁମାରଙ୍କ ଅଧ୍ୟାପନା ଏବଂ ପ୍ରେସ୍ କାର୍ଯ୍ୟ - ଏକକାଳୀନ ଭାବେ ତାଙ୍କୁ ପାଳନ କରିବାକୁ ପଡୁଥିଲା । ରାଜନୈତିକ କ୍ଷେତ୍ରରେ ମଧ୍ୟ ରାଜଭ୍ରାତାଙ୍କ ସହ ତାଙ୍କର ଘନିଷ୍ଠ ସହଯୋଗ ରହିଥିବା ଲକ୍ଷ୍ୟ କରାଯାଏ । ଉଲ୍ଲେଖ ଅଛି - ଅପର୍ଣ୍ଣା ପଣ୍ଡା ୧୮୯୫ ଖ୍ରୀଷ୍ଟାବ୍ଦରେ ଡ଼ିସେମ୍ବର ମାସରେ ରାଜଭ୍ରାତାଙ୍କ ସହ ପୁନା ଯାତ୍ରା କରି ମହା ଜାତୀୟ ସମିତିରେ ଯୋଗ ଦେଇଥିଲେ ।

ପୁନା ନଗରୀ ଦର୍ଶନ କରି, ଏହାର ଗୌରବମୟ ଐତିହ୍ୟ ସ୍ମୃତ "କବିତାକଳିକା" ପୁସ୍ତକରେ ବର୍ଣ୍ଣନା କରି ଲେଖିଛନ୍ତି -

ମହାରାଷ୍ଟ୍ର ରାଜଧାନୀ ଶ୍ରୀ ପୁନା ନଗର
ତୋର ଦେହେ ବୀର ଧୀର କବି ମହାଜନ
ଜନ୍ମି, ଭାରତରେ କୀର୍ତ୍ତି କଲେ ସଂସ୍ଥାପନ
ଭାରତ ବିଜୟୀ ପୁତ୍ର ଶିବାଜୀ ତୋହର
ରଣେ ଦୁଷ୍ଟ ଯବନଙ୍କୁ କଲାକ ସଂହାର
କାର୍ଯ୍ୟ କ୍ଷେତ୍ରେ କୁଶଳ ଯେ ରନଡ଼େ ବିଦ୍ୱାନ
ଭାରତରେ ଥିଲା ସେହି ଅମୂଲ୍ୟ ରତନ (ଇତ୍ୟାଦି)

ଏହି କବିତାଂଶରେ ଅପର୍ଣ୍ଣା ପଣ୍ଡାଙ୍କ ଜାତୀୟତା ଭାବର ଏକ ସ୍ପଷ୍ଟ ଚିତ୍ର ପ୍ରତିଫଳିତ ହୋଇଛି ।

ଅପନ୍ନା ପଣ୍ଡା ଏବଂ ପଦ୍ମନାଭ ଦେବଙ୍କ ମିତ୍ରତାର ପ୍ରତୀକ ସ୍ୱରୂପ "ପ୍ରହ୍ଲାଦ ନାଟକ" ଅଦ୍ୟାପି ଏକ ମୂକସାକ୍ଷୀ ଭାବେ ଦଣ୍ଡାୟମାନ । ରାଜଭ୍ରାତାଙ୍କ କୃତ ଏହି ନାଟକରେ ଶ୍ରୀଯୁକ୍ତ ପଣ୍ଡାଙ୍କ ରଚିତ ଏକ ଗୀତ ସନ୍ନିବେଶିତ ହୋଇଛି । ଏହା "ଶ୍ରୀପଦ୍ମନାଭ ଗଜପତିଙ୍କ ଜୀବନୀ" ପୁସ୍ତକରେ ଅପନ୍ନା ପଣ୍ଡା ସ୍ୱୟଂ ସ୍ୱୀକାର କରିଅଛନ୍ତି । ସେହି ଗୀତଟି ନିମ୍ନରେ ପ୍ରଦତ୍ତ ହେଲା -

(ରାଗ-ପାହୁଡ଼ବରାଡ଼ି, ଆଦିତାଳ)

ସକଳ ଭୂତ ଆଦି କାରଣ,　　ମୋ ବନ୍ଦନ ଘେନ　　(ଘୋଷା)
ସୁରନର ଦୁଃଖ ସହିନପାରି,　　ଜଗତ ମଧ୍ୟେ ତୁ ଅବତରି
ଦାନବ କୁଳ କରି ସଂହାର,　　ସଂସାରେ ଧରମ କଲୁ ସ୍ଥାପନ　(୧)
ବରାହ ରୂପକୁ ଧରି ଶ୍ରୀହରି,　　ଦନ୍ତାଗ୍ରେ ପୃଥିବୀ ଉଦ୍ଧରି ଧରି
ତ୍ରିଲୋକ କଣ୍ଟକ ଅସୁର ବୀର,　　ହିରଣାକ୍ଷ ଶିର କଲୁ ଛେଦନ　(୨)
ବ୍ରହ୍ମାଙ୍କ ବରରେ ଦାନବେଶ୍ୱର,　　ଭକତକୁ ଦଣ୍ଡ ଦେଲା ଅପାର
ତା ଗର୍ବ ଖର୍ବ କରିବା ଛଳେ,　　ନରସିଂହ ରୂପ କଲୁ ଧାରଣ　(୩)
ଅଚିନ୍ତ୍ୟ ଅବ୍ୟକ୍ତ ଅନନ୍ତ ନାମ,　　ଚିଦାନନ୍ଦ ପ୍ରଭୁ ପବିତ୍ର ଧାମ
କରୁଣା ନିଧାନ ଲକ୍ଷ୍ମୀରମଣ,　　ଆଶ୍ରିତ ଜନ କରୁ ପୋଷଣ　(୪)

ଏହି ଗୀତଟିରୁ ଅପନ୍ନା ପଣ୍ଡାଙ୍କ କାବ୍ୟ ଶୈଳୀ, ପାଣ୍ଡିତ୍ୟତା ଓ ଭକ୍ତିମତ୍ତାର ଯଥେଷ୍ଟ ପରିଚୟ ମିଳେ ।

ବିଧି ନିର୍ଦ୍ଦେଶରେ ଯେପରି, ୧୯୦୪ ଖ୍ରୀଷ୍ଟାବ୍ଦ ଫେବୃୟାରୀ ମାସରେ ରାଜଭ୍ରାତା ପଦ୍ମନାଭ ଗଜପତି ଏହି ଇହସଂସାର ତ୍ୟାଗ କରିଥିଲେ ଏଥିରେ ଅତ୍ୟନ୍ତ ମର୍ମାହତ ହୋଇ, ଅପନ୍ନା ପଣ୍ଡା ସେହିବର୍ଷ ମାର୍ଚ୍ଚ ମାସରେ ଶ୍ରୀ ପଦ୍ମନାଭ ଗଜପତିଙ୍କ ଜୀବନୀ ଲେଖା ପ୍ରାରମ୍ଭ କରି ଡିସେମ୍ବର ମାସରେ ପୂର୍ଣ୍ଣ କରିଥିଲେ । ପାରଳାଖେମୁଣ୍ଡି ମହାରାଜା ଗୌରଚନ୍ଦ୍ର ଗଜପତି ଏହି ପୁସ୍ତକର ମୁଦ୍ରାଙ୍କନ ଭାର ଗ୍ରହଣ କରିବାକୁ ସ୍ୱୀକୃତି ପ୍ରଦାନ କରିଥିଲେ । କିନ୍ତୁ ସେ ସ୍ୱୟଂ କନିଷ୍ଠ ଭ୍ରାତାଙ୍କ ମୃତ୍ୟୁରେ ମନୋବ୍ୟାଧିସଙ୍କୁଳ ହୋଇ ଦିନକୁ ଦିନ ରୁଗ୍ଣ ହୋଇଯାଇଥିଲେ । ଫଳତଃ ୧୯୦୫ ଖ୍ରୀଷ୍ଟାବ୍ଦ ଏପ୍ରେଲ୍ ମାସରେ ପାରଳା ମହାରାଜା ଗୌରଚନ୍ଦ୍ର ଗଜପତି ମଧ୍ୟ ଇହସଂସାରରୁ ବିଦାୟ ନେଇଥିଲେ । ରାଜ ପରିବାରର ଏପରି କ୍ରମାନ୍ୱୟ ଧକ୍କାରେ ଅତ୍ୟନ୍ତ ବ୍ୟଥିତ ହୋଇ ରାଜଭକ୍ତ ଶ୍ୟାମସୁନ୍ଦର ରାଜଗୁରୁ ୧୯୦୯ ଖ୍ରୀଷ୍ଟାବ୍ଦରେ ମୃତ୍ୟୁମୁଖର ଯାତ୍ରୀ ହେଲେ । ତେଣୁ ଏହି ଦୁଃଖଦ ଏବଂ ସଙ୍କଟମୟ ପରିସ୍ଥିତିରେ, ଅପନ୍ନା ପଣ୍ଡା ନିଜକୁ ଅସହାୟ ମନେ କରିବା ସ୍ୱାଭାବିକ । ତଥାପି ସେ ସମ୍ପୂର୍ଣ୍ଣ ନିରୁତ୍ସାହିତ ହୋଇ ଏକ ସ୍ଥାଣୁ ପ୍ରାୟ କାଳଯାପନ କରିଥିଲେ।

ପାରଳା ମହାରାଜାଙ୍କ ମୃତ୍ୟୁ ସମୟରେ ରାଜକୁମାର କୃଷ୍ଣଚନ୍ଦ୍ର ଗଜପତି ନାବାଳକ ଥିଲେ । ତେଣୁ ପାରଳାଖେମୁଣ୍ଡି ଜମିଦାରୀ କୋର୍ଟ ଅଫ୍ ୱାର୍ଡସ୍ ଅଧୀନରେ ରହିଥିଲା । ରାଜକୁମାରଙ୍କ ଉଚ୍ଚଶିକ୍ଷା ପାଇଁ ତାଙ୍କୁ ମାଡ୍ରାଜର ନିଉଇଙ୍ଗଟନ୍ କଲେଜକୁ ପଠାଗଲା । ୧୯୧୩ ଖ୍ରୀଷ୍ଟାବ୍ଦରେ ସେ ସାବାଳକ ହେବାରୁ ପାରଳା ଫେରି ଆସିଥିଲେ । ଅଭିଷେକ ଉତ୍ସବ ସମାପନାନ୍ତେ, ସେ ଜମିଦାରୀର ପରିଚାଳନା ଭାର ଗ୍ରହଣ କରିଥିଲେ।

ଆପଣା ଶିଷ୍ୟଙ୍କ ପ୍ରତ୍ୟାବର୍ତ୍ତନ ସହ, ପାରଳାର ରାଜକୀୟ ଗୌରବମୟ ପରମ୍ପରାର ପୁନଃ ସଂସ୍ଥାପନ ଯୋଗୁଁ ଅପନ୍ନା ପଣ୍ଡା ମାନସପଟରେ ନୂତନ ସ୍ପନ୍ଦନ ଏବଂ ଉତ୍ସାହ ସୃଷ୍ଟି କରିଥିଲା । ମହାରାଜାଙ୍କ ସ୍ୱୀକୃତି ଅନୁଯାୟୀ ୧୯୧୫ ଖ୍ରୀଷ୍ଟାବ୍ଦରେ ଅପନ୍ନା ପଣ୍ଡାଙ୍କ କୃତ "ଶ୍ରୀ ପଦ୍ମନାଭ ଗଜପତିଙ୍କ ଜୀବନୀ" ପୁସ୍ତକ ଗଜପତି ପ୍ରେସ୍‌ରେ ପ୍ରକାଶ ପାଇଥିଲା । ବାସ୍ତବିକ ଏହି ପୁସ୍ତକ, ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଗୁରୁଦକ୍ଷିଣାର ସ୍ୱାକ୍ଷର ବହନ କରେ ।

ଏହି ଜୀବନୀ ପୁସ୍ତକର ଏପେଣ୍ଡିକ୍ସ ୧ରେ ଅପନ୍ନା ପଣ୍ଡା ରାଜଭ୍ରାତା ପଦ୍ମନାଭଙ୍କ ଜନ୍ମପତ୍ରିକା ସମୀକ୍ଷା କରି ଜ୍ୟୋତିଷ ସମ୍ବନ୍ଧୀୟ ବହୁ ତଥ୍ୟ ଉପସ୍ଥାପନ କରିଅଛନ୍ତି । ସେଥିର ଏପେଣ୍ଡିକ୍ସ ୨ରେ, ସେ ନିଜକୁ ରାଜଭ୍ରାତାଙ୍କ ପ୍ରିୟ ଭୃତ୍ୟ ଭାବେ ପରିଚୟ ଦେଇଛନ୍ତି । ଏହି ପୁସ୍ତକରେ, ରାଜଭ୍ରାତାଙ୍କ ମୃତ୍ୟୁ ଜନିତ ଶୋକରେ ଅଧୀର ହୋଇ, ଦାଣ୍ଡିବୃତ୍ତରେ ଏକ ଗୀତ ଲେଖିଛନ୍ତି, ଯାହା ତାଙ୍କ ରାଜଭକ୍ତିର ଜ୍ୱଳନ୍ତ ନିଦର୍ଶନ ।

ଅପନ୍ନା ପଣ୍ଡାଙ୍କ ରଚିତ "ଢଗମାଳିକା ଚନ୍ଦ୍ର ବୋଧିନୀ" ମଧ୍ୟ ଗଜପତି ପ୍ରେସ୍‌ରୁ ୧୯୩୧ ଖ୍ରୀଷ୍ଟାବ୍ଦରେ ପ୍ରକାଶ ପାଇଥିଲା। ଏଥିରେ ପ୍ରାୟ ୩୨୦ଟି ଢଗ ସନ୍ନିବେଶିତ ହୋଇଛି । ୧୯୦୫ ଖ୍ରୀଷ୍ଟାବ୍ଦରେ ସେ ଏହି ଢଗ ସମୂହ ସଂଗ୍ରହ କରିଥିଲେ । କିନ୍ତୁ ଢଗ ଗୁଡ଼ିକ କେବଳ ପ୍ରକାଶ କରିଦେଲେ, ତାହା ପାଠକ ପାଠିକାଙ୍କର କଦାପି ହୃଦୟଙ୍ଗମ ହୋଇପାରିବ ନାହିଁ । ତେଣୁ ଢଗ ଗୁଡ଼ିକର ମୂଳତତ୍ତ୍ୱ ଅନୁସନ୍ଧାନ କରିବାରେ ତାଙ୍କୁ ଅନେକ ବର୍ଷ ଲାଗିଥିଲା । ଇତି ମଧ୍ୟରେ ଇଂରାଜୀ "ଇସ୍ପପ୍" ଗଳ୍ପ ମନେ ପଡ଼ିବାରୁ, ତାହାର ଅନୁକରଣରେ ଓଡ଼ିଆ ଢଗର ଅର୍ଥ, ତାତ୍ପର୍ଯ୍ୟ ଏବଂ ସ୍ଥାନେ ସ୍ଥାନେ ଗଳ୍ପ ମଧ୍ୟ ଲେଖିଥିଲେ । ଫଳରେ ଏହି ପୁସ୍ତକ ପାଠକ ପାଠିକାଙ୍କ ମନୋରଞ୍ଜିତ ହୋଇପାରିଥିଲା । ମୁଖ୍ୟତଃ ଓଡ଼ିଆ ସାହିତ୍ୟର ଏକ ଅଭିନବ କୃତି ଭାବେ ଏହା ସର୍ବତ୍ର ଆଦୃତ ହୋଇପାରିଛି ।

ଅପନ୍ନା ପଣ୍ଡାଙ୍କ ସଂଗୃହିତ ଢଗ ଗୁଡ଼ିକ ଅତି ପ୍ରାଚୀନ । ବିଶେଷତଃ, ଏହି ସମସ୍ତ ଢଗ ପାରଳା ତଥା ଗଞ୍ଜାମ ଜିଲ୍ଲା ସହ ସମ୍ପୃକ୍ତ । ଏଥିରେ ଦୈନନ୍ଦିନ ଜୀବନର ବହୁ ସାମାଜିକ ଛବି ଦେଖିବାକୁ ମିଳିଥାଏ । କେତେକ ଜ୍ୟୋତିଷୀ ତଥ୍ୟ ମଧ୍ୟ ଏଥିରେ ସନ୍ନିହିତ ହୋଇ ରହିଛି । ଉଦାହରଣ ସ୍ୱରୂପ -

ଫୀଲବ ପେଢ ପିନ୍ଧିବ ଅଣ୍ଡା, କେବେ ନ ଛାଡ଼ିବ ଉଡାର ପକ୍ଷା

- ଏହି ଦ୍ୱଗର ବିଶଦ ବାଖ୍ୟା କରିବାକୁ ଯାଇ,ସେ ଟିକାଲି ରାଜବଂଶର କିଛି ଐତିହାସିକ ତଥ୍ୟର ସୂଚନା ଦେଇଛନ୍ତି । ଅର୍ଥାତ୍ , ଟେକିଲି ମହାରାଜା ପଦ୍ମନାଭ ଦେବ ଆପଣା ଜ୍ୟେଷ୍ଠ ପୁତ୍ର ଗୋପୀନାଥଙ୍କୁ ରାଜ୍ୟରୁ ତଡ଼ିଦେବା ଏବଂ ତାଙ୍କ ସେବାରେ ବାରଜଣ ସେବକ ନିଯୁକ୍ତ ରହିବା ଓ ବାରବର୍ଷ ପରେ ଗଞ୍ଜାମ ଜିଲ୍ଲା କଲେକ୍ଟର, ଗୋପୀନାଥ ଦେବଙ୍କ ନିର୍ଦ୍ଦୋଷ ବୁଝି ପାରି ରାଜ୍ୟର ଅର୍ଦ୍ଧେକ ଭାଗ ତାଙ୍କୁ ଅର୍ପଣ କରିବା ଏବଂ ଅନ୍ୟାର୍ଦ୍ଧ କନିଷ୍ଠ ଭ୍ରାତ କୃଷ୍ଣଚନ୍ଦ୍ର ଦେବଙ୍କୁ ଦେବା (ଇତ୍ୟାଦି) ସେ ଉଲ୍ଲେଖ କରିଛନ୍ତି । ସେଥିରୁ ଅପନା ପଣ୍ଡାଙ୍କ ରଚିତ "ଦ୍ୱଗମାଳିକା ଦ୍ୱେତବୋଧିନୀ"ରୁ ବହୁବିଧ ତଥ୍ୟ ସମୂହର ଏକ ମଧୁର ସମ୍ମିଶ୍ରଣ କହିଲେ ସତ୍ୟର ଅପଳାପ ହେବ ନାହିଁ ।

ଅପନା ପଣ୍ଡା ଆବାଲ୍ୟରୁ ସଙ୍ଗୀତ ଚୌପଦୀ ମାନ ରଚନା କରିବାରେ ଥିଲେ ସିଦ୍ଧହସ୍ତ । କିନ୍ତୁ ଗଦ୍ୟ ରଚନାରେ ତାଙ୍କର ବିଶେଷ ପ୍ରବେଶ ନଥିଲା । "କଳାବତୀ ନାଟକ" ଗଦ୍ୟ ରଚନାରେ ଥିଲା ତାଙ୍କର ସର୍ବପ୍ରଥମ ପ୍ରୟାସ । ଉକ୍ତ ପୁସ୍ତକର ମୁଦ୍ରାଙ୍କନ ପୂର୍ବରୁ ତାହା ମଧୁସୂଦନ ରାଓଙ୍କ ଦ୍ୱାରା ସଂଶୋଧିତ ହୋଇଥିଲା । ବ୍ୟାସକବି ଫକୀରମୋହନ ମଧ୍ୟ ସେଥିର କିଛି ସଂଶୋଧନ କରିଛନ୍ତି । ସ୍ଥାନୀୟ ପ୍ରାବନ୍ଧିକ ଶ୍ୟାମସୁନ୍ଦର ରାଜଗୁରୁ ମହୋଦୟ ମଧ୍ୟ ପୁସ୍ତକର ଆମୂଳଚୂଳ ପାଠ କରି ମାର୍ଜନା କରିଥିଛନ୍ତି । ପରିଶେଷରେ ୧୯୦୨ ଖ୍ରୀଷ୍ଟାବ୍ଦରେ "କଳାବତୀ ନାଟକ" ପୁସ୍ତକାକାରରେ ଗଜପତି ପ୍ରେସ୍‌ରୁ ପ୍ରକାଶ ପାଇଥିଲା । ଏହି ନାଟକ ଲେଖିବାରେ ତାଙ୍କର ଏକ ଅନ୍ତର୍ନିହିତ ଉଦ୍ଦେଶ୍ୟ ରହିଥିଲା । ହିନ୍ଦୁ ସମ୍ପ୍ରଦାୟ ସ୍ୱଦେଶ ପ୍ରୀତିର ଉତ୍ତମ ଆଦର୍ଶ ଉପସ୍ଥାପନ କରି ନିଜ ଭାଷା, ଜାତି ଏବଂ ସାଂସ୍କୃତିକ ଉତ୍କର୍ଷ ହୃଦୟଙ୍ଗମ କରନ୍ତୁ, ଏହାହିଁ ଏହି ନାଟକ ରଚନାର ପ୍ରଧାନ ଲକ୍ଷ୍ୟ ।

ଏତଦ୍‌ବ୍ୟତୀତ ୧୯୨୧ ଖ୍ରୀଷ୍ଟାବ୍ଦରେ ଅପନା ପଣ୍ଡାଙ୍କ କୃତ "ଛାନ୍ଦଚନ୍ଦ୍ରିକା" ହାଇକୋର୍ଟ ଓକିଲ ପରଶୁରାମ ପାତ୍ର, ବି.ଏ.ବି.ଏଲ୍‌ଙ୍କ ଆର୍ଥିକ ସହାୟତାରେ ପ୍ରକାଶ ପାଇଥିଲା । ତାଙ୍କ ରଚିତ "କବି ଜୀବନୀ" ପୁସ୍ତକାକାରରେ ବ୍ରହ୍ମପୁରର ଆଶା ପ୍ରେସ୍‌ରେ ୧୯୨୫ ଖ୍ରୀଷ୍ଟାବ୍ଦରେ ପ୍ରକାଶ ପାଇଥିଲା । "କବିତା କଳିକା" (ପ୍ରଥମ ଏବଂ ଦ୍ୱିତୀୟ ଭାଗ), "ଛାନ୍ଦ ସଂଗ୍ରହ" ଏବଂ ଅନେକ ଚଉପଦୀ ମଧ୍ୟ ସେ ରଚନା କରିଛନ୍ତି ।

ଅପନା ପଣ୍ଡାଙ୍କର ଜ୍ୟୋତିଷ ଶାସ୍ତ୍ରରେ ମଧ୍ୟ ଅସାଧାରଣ ପାଣ୍ଡିତ୍ୟ ରହିଥିଲା । ସେ ପାରଳାର ଅନ୍ୟତମ ବିଶିଷ୍ଟ ଜ୍ୟୋତିଷୀ, ବଡ଼ବ୍ରାହ୍ମଣ ସାହି ନିବାସୀ ସିଦ୍ଧାନ୍ତି ନୀଳମଣି ପାଣିଗ୍ରାହୀ

(୧୮୬୯-୧୯୪୬)ଙ୍କର ପରମ ମିତ୍ର ଥିଲେ । ଅପନ୍ନା ପଣ୍ଡା ଓ ସିଦ୍ଧାନ୍ତି ପାଣିଗ୍ରାହୀଙ୍କ ସହାୟତା ଏବଂ ରାଜ ପୃଷ୍ଠପୋଷକତାରେ ପ୍ରତିବର୍ଷ ସ୍ଥାନୀୟ ଗଜପତି ପ୍ରେସରୁ ଏକ ପତ୍ରିକା ପ୍ରକାଶ ପାଉଥିଲା ।

ଏପରି ଭାବେ ପାରଳାଖେମୁଣ୍ଡିର ବିଭିନ୍ନ ଅନୁଷ୍ଠାନ ସହ ସମ୍ପୃକ୍ତ ରହି ଅପନ୍ନା ପଣ୍ଡା ୧୯୩୨ ଖ୍ରୀଷ୍ଟାବ୍ଦ ଜୁଲାଇ ୫ ତାରିଖ ଦିନ ଇହଧାମ ତ୍ୟାଗ କରିଥିଲେ । ସେ ଆଜୀବନ ଉତ୍କଳ ହିତୈଷିଣୀ ସମାଜ ଓ ଉତ୍କଳ ସମ୍ମିଳନୀର କର୍ମୀ ଭାବେ ଓଡ଼ିଶା ପ୍ରଦେଶ ଗଠନ, ଓଡ଼ିଆ ଭାଷା ଓ ସାଂସ୍କୃତିକ ଚେତନା ଜାଗ୍ରତ କରିବାରେ କାର୍ଯ୍ୟ କରିଥିଲେ । ଓଡ଼ିଆ ସାହିତ୍ୟର ବିକାଶ ନିମନ୍ତେ ମଧ୍ୟ ସେ ଯଥାସାଧ୍ୟ ସାଧନା କରି ଯଶସ୍ୱୀ ହୋଇଛନ୍ତି । ଏତଦ୍‌ବ୍ୟତୀତ, ପ୍ରାତଃ ସ୍ମରଣୀୟ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଶିକ୍ଷାଗୁରୁ ଭାବେ, ସେ ବାସ୍ତବିକ ଓଡ଼ିଆଜାତିର ଅଗ୍ରପୂଜ୍ୟ ଏବଂ ବନ୍ଦନୀୟ ଅଟନ୍ତି । ସେହି ମହାମାନଙ୍କ ସ୍ମୃତିଚାରଣ କରି ଓଡ଼ିଶାବାସୀ ସତତ ଗୌରବାନ୍ୱିତ ମନେ କରନ୍ତୁ, ଏହାହିଁ କାମନା ।



# ଜାତୀୟ ଯଜ୍ଞ ପୁରୋଧା ପ୍ରାବନ୍ଧିକ ଶ୍ୟାମସୁନ୍ଦର ରାଜଗୁରୁ

ଶ୍ୟାମସୁନ୍ଦର ରାଜଗୁରୁ ଆଦ୍ୟ ଜାତୀୟ ଯଜ୍ଞର ପୁରୋଧା ଭାବେ ଉତ୍କଳୀୟଙ୍କ ମାନସପଟରେ ଦେଶାତ୍ମବୋଧର ବୀଜ ବୁଣିଥିଲେ । ସେ ମଧ୍ୟ ଥିଲେ ଜଣେ ଜ୍ଞାନ ତେଜସ୍ୱୀ, ଯାହାଙ୍କ ଆଜୀବନ ତେପସ୍ୟାର ଫଳସ୍ୱରୂପ "ପ୍ରବନ୍ଧାବଳୀ" ଓଡ଼ିଆ ସାହିତ୍ୟ ଭଣ୍ଡାରର ଏକ ଅମୂଲ୍ୟ ସମ୍ପଦ ଭାବେ ଶ୍ରୀବର୍ଦ୍ଧନ କରିଛି ।

ପଣ୍ଡିତ ଶ୍ୟାମସୁନ୍ଦର ରାଜଗୁରୁ ୧୮୬୬ ଖ୍ରୀଷ୍ଟାବ୍ଦ ଫେବୃୟାରୀ ୧୨ ତାରିଖରେ ଓଡ଼ିଆ ସାହିତ୍ୟର ଲୀଳାକ୍ଷେତ୍ର ପାରଳାଖେମୁଣ୍ଡିର ରାଜଗୁରୁ ସାହିରେ ଜନ୍ମଗ୍ରହଣ କରିଥିଲେ । ବାଲ୍ୟକାଳରେ ପ୍ରାଥମିକ ଶିକ୍ଷା ଶେଷ କରି, ସେ କର୍ମକାଣ୍ଡ ଅଧ୍ୟୟନ କରିଥିଲେ । ୧୮୮୨ ଖ୍ରୀଷ୍ଟାବ୍ଦରେ ଇଂରାଜୀ ଶିକ୍ଷା ଆରମ୍ଭ କରି ୧୮୮୭ ଖ୍ରୀଷ୍ଟାବ୍ଦରେ ପାରଳା ହାଇସ୍କୁଲରୁ ମାଧ୍ୟମିକ ପରୀକ୍ଷାରେ ସେ ଉତ୍ତୀର୍ଣ୍ଣ ହୋଇଥିଲେ । ସେହି ସମୟରେ ପାରଳାରେ କଲେଜ୍ ଶିକ୍ଷା ଆରମ୍ଭ ହୋଇନଥାଏ । ତେଣୁ ୧୮୯୦ ଖ୍ରୀଷ୍ଟାବ୍ଦରେ ବ୍ରହ୍ମପୁର କଲେଜରୁ ସେ ଏଫ୍.ଏ. ପାସ୍ କରିଥିଲେ । ୧୮୯୨ ଖ୍ରୀଷ୍ଟାବ୍ଦରେ ରାଜମହେନ୍ଦ୍ରୀ ଗଭର୍ଣ୍ଣମେଣ୍ଟ କଲେଜରୁ କୃତିତ୍ୱର ସହ ବି.ଏ. ପରୀକ୍ଷାରେ ସେ ଉତ୍ତୀର୍ଣ୍ଣ ହୋଇଥିଲେ । ଫଳରେ, ତତ୍କାଳୀନ ବୃହତ୍ ଗଞ୍ଜାମ୍ ଜିଲ୍ଲାର ସେ ଥିଲେ ସର୍ବପ୍ରଥମ ଗ୍ରାଜୁଏଟ୍ ।

ସେତେବେଳେ ସେ ଇଚ୍ଛା କରିଥିଲେ, ସରକାରଙ୍କ କୌଣସି ଉଚ୍ଚ ପଦବୀରେ ଅଧିଷ୍ଠିତ ହୋଇପାରିଥାନ୍ତେ । କିନ୍ତୁ ବିଦେଶୀ ସରକାରଙ୍କ ଅଧୀନରେ ଚାକିରୀ କରିବା ପ୍ରସ୍ତାବକୁ ବିରୋଧ କରି, ଏପରିକି ଡେପୁଟି କଲେକ୍ଟର ପଦବୀକୁ ମଧ୍ୟ ସେ ପ୍ରତ୍ୟାଖ୍ୟାନ କରିଥିବା ଜନଶ୍ରୁତିରୁ ଜଣାଯାଏ । ଅନ୍ୟପକ୍ଷରେ ଓଡ଼ିଆ ଭାଷା ଏବଂ ଓଡ଼ିଆ ଜାତିର ବିକାଶ ନିମନ୍ତେ ଆଜୀବନ କାର୍ଯ୍ୟକରି ନିଃସ୍ୱାର୍ଥପର ସେବା ମନୋଭାବର ସେ ପରିଚୟ ଦେଇଛନ୍ତି । ସେ ମଧ୍ୟ ସମାଜର ପ୍ରଚଳିତ କୁସଂସ୍କାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ପଶ୍ଚାତ୍‌ପଦ ହୋଇନାହାନ୍ତି ।

ଅତ୍ୟନ୍ତ କୌତୂହଳର ବିଷୟ ଏହିଯେ, ତତ୍କାଳୀନ ସାମାଜିକ ନିୟମାନୁଯାୟୀ ବ୍ରାହ୍ମଣ ସମ୍ପ୍ରଦାୟଙ୍କ ନିମନ୍ତେ ନିଶ ରଖିବା ନିଷେଧ ଥାଏ । କିନ୍ତୁ ଶ୍ୟାମସୁନ୍ଦର ରାଜଗୁରୁ ଏହାର ବିରୋଧ କରି, ନିଜେ ମୋଟା ନିଶ ରଖିଥିଲେ ଏବଂ ରକ୍ଷଣଶୀଳ ବ୍ରାହ୍ମଣଙ୍କୁ ସମାଲୋଚନା କରିଥିଲେ ।

ବାଲ୍ୟକାଳରୁହିଁ ପଣ୍ଡିତ ଶ୍ୟାମସୁନ୍ଦର ରାଜଗୁରୁ ମାତୃଭାଷାର ବିକାଶ ନିମନ୍ତେ ସଙ୍କଳ୍ପବଦ୍ଧ ହୋଇଥିଲେ । ଓଡ଼ିଆ ଭାଷାକୁ କଚେରୀରେ ସ୍ୱୀକୃତି ଦେବା ନିମନ୍ତେ ଛାତ୍ରାବସ୍ଥାରେହିଁ ସେ ଉଦ୍ୟମ ଆରମ୍ଭ କରିଥିଲେ । ଏହାର ଫଳସ୍ୱରୂପ ଉତ୍କଳହିତୈଷିଣୀ ସମାଜ ୧୮୮୫ ଖ୍ରୀଷ୍ଟାବ୍ଦରେ ସ୍ଥାପନ କରାଯାଇଥିଲା । ଆଜୀବନ ଏହି ସଂସ୍ଥାର ସଭାପତି ରୂପେ ସେ ଓଡ଼ିଆ ଭାଷା ଏବଂ ଓଡ଼ିଆ ଜାତିର ଉନ୍ନତି ସାଧନ ନିମନ୍ତେ ଉଦ୍ୟମ କରିଯାଇଛନ୍ତି । ରାଧାଚରଣ ଅଧିକାରୀ, ବୃନ୍ଦାବନ ଦାସ, ଅପନ୍ନା ପଣ୍ଡା, ନୀଳମଣି ପରିଛା, ବୃନ୍ଦାବନଚନ୍ଦ୍ର ପାଣିଗ୍ରାହୀ, ଜଗନ୍ମୋହନ ଦାସ, ବଳଭଦ୍ର ମହାପାତ୍ର ପ୍ରଭୃତି ସ୍ଥାନୀୟ ନେତୃବୃନ୍ଦ ମଧ୍ୟ ଶ୍ରୀରାଜଗୁରୁଙ୍କୁ ଏହି କାର୍ଯ୍ୟରେ ସହାୟକ ହୋଇଥିଲେ । ପାରଳା ମହାରାଜା ଏବଂ ଗଡ଼ଜାତ ଅଞ୍ଚଳର ବିଷୋଇ ଓ ଦୋରା ମାନେ ମଧ୍ୟ ଏହି ଅନୁଷ୍ଠାନର ପୃଷ୍ଠପୋଷକତା କରି, ଶ୍ରୀରାଜଗୁରୁଙ୍କ ସ୍ୱପ୍ନକୁ ସାକାର କରିଛନ୍ତି ।

୧୮୯୨ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ୫ ତାରିଖ ଦିନ ପଣ୍ଡିତ ଶ୍ୟାମସୁନ୍ଦର ରାଜଗୁରୁ ରାଜାଭ୍ରାତା ପଦ୍ମନାଭ ଦେବ (ଚନ୍ଦ୍ର ମହାରାଜା)ଙ୍କ ଅଧ୍ୟାପନା ଭାର ଗ୍ରହଣ କରିଥିଲେ । ପରବର୍ତ୍ତୀ ସମୟରେ ବାଳକ କୃଷ୍ଣଚନ୍ଦ୍ର ଗଜପତିଙ୍କ ପାଠ ପ୍ରୋଗ୍ରେସ୍ ବୁଝିବା ଦାୟିତ୍ୱ ମଧ୍ୟ ତାଙ୍କ ଉପରେ ନ୍ୟସ୍ତ ଥିଲା । ଏପରି ଭାବେ କାଳକ୍ରମେ ଗୁରୁଶିଷ୍ୟ ଜନୀତ ପରମ୍ପରା ଯୋଗୁଁ ରାଜପରିବାର ସହ ତାଙ୍କର ନିବିଡ଼ ସମ୍ପର୍କ ସ୍ଥାପିତ ହୋଇଥିଲା । ରାଜଭ୍ରାତା ସ୍ୱୟଂ ଥିଲେ ଜଣେ ଉଚ୍ଚକୋଟୀର ନାଟ୍ୟ ଲେଖକ ଏବଂ ନାଟ୍ୟକଳାର ପୃଷ୍ଠପୋଷକ । ଅନ୍ୟପକ୍ଷରେ ଶ୍ୟାମସୁନ୍ଦର ରାଜଗୁରୁ ଜଣେ ସୁସହିତ୍ୟିକ ଏବଂ ସାଂସ୍କୃତିକ ବିକାଶ ସାଧନର ଜଣେ ପଥ ପ୍ରଦର୍ଶକ । ତେଣୁ ମଣିକାଞ୍ଚନ ପରି ଉଭୟଙ୍କ ସମ୍ପର୍କ ମଧ୍ୟ ଦୃଢ଼ୀଭୂତ ହୋଇପାରିଥିଲା ।

ଏଠାରେ ଉଲ୍ଲେଖଯୋଗ୍ୟ, ୧୮୯୩ ଖ୍ରୀଷ୍ଟାବ୍ଦରେ ଓଡ଼ିଆ ନାଟକ ଗୁଡ଼ିକର ବହୁଳ ସଫଳତା ଲକ୍ଷ୍ୟକରି, ତାଳବୃକ୍ଷର ଖୁଣ୍ଟି ଓ ଛଣରେ ଛପର କରି ପାରଳାଖେମୁଣ୍ଡି ଠାରେ ଏକ ଅସ୍ଥାୟୀ ମଞ୍ଚ ନିର୍ମାଣ କରାଯାଇଥିଲା । ଏଥିପ୍ରତି ରାଜଭ୍ରାତା ପଦ୍ମନାଭ ଦେବଙ୍କ ପୃଷ୍ଠପୋଷକତା ରହିଥାଏ । ଏହି ଅବସରରେ ଏକ ସ୍ଥାୟୀ ମଞ୍ଚ ନିର୍ମାଣ ନିମନ୍ତେ ପଣ୍ଡିତ ଶ୍ୟାମସୁନ୍ଦର ରାଜଗୁରୁ ପ୍ରସ୍ତାବ ଦେଇଥିଲେ । ଫଳରେ, ରାଜଭ୍ରାତାଙ୍କ ସାହାଯ୍ୟ କ୍ରମେ ଇଟା-ପଥରରେ ଏକ ପକ୍କା ରଙ୍ଗମଞ୍ଚ ନିର୍ମିତ ହୋଇ ପଦ୍ମନାଭ ରଙ୍ଗାଳୟ ନାମରେ ତାହା ନାମିତ ହୋଇଥିଲା । ୧୯୪୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ତାହା କ୍ରିୟାଶୀଳ ରହି, ଓଡ଼ିଶାରେ ନାଟ୍ୟ ଆନ୍ଦୋଳନ ସୃଷ୍ଟି କରିଥିଲା । ଏହାହିଁ ଓଡ଼ିଶାର ସର୍ବପ୍ରଥମ ରଙ୍ଗମଞ୍ଚ । ଏହାର ପରିଚାଳନା ଭାର ପଣ୍ଡିତ ଶ୍ୟାମସୁନ୍ଦର ରାଜଗୁରୁଙ୍କ ଉପରେ ନ୍ୟସ୍ତ ଥିଲା । ମହାରାଜାଙ୍କ ଗଜପତି ପ୍ରେସ୍ ମଧ୍ୟ ତାହାଙ୍କ ତତ୍ତ୍ୱାବଧାନରେ ପରିଚାଳିତ ହେଉଥିଲା

ପୁନଃ ଏଠାରେ ଉଲ୍ଲେଖନୀୟ ଯେ, ୧୮୮୭ ଖ୍ରୀଷ୍ଟାବ୍ଦରେ ପାରଳାଖେମୁଣ୍ଡି ପୌରପାଳିକା ପ୍ରତିଷ୍ଠା ହୋଇଥିଲା । ଏହାର ଅଭ୍ୟୁଦୟ ଠାରୁ ବ୍ରିଟିଶ୍ ଉଚ୍ଚ କର୍ତ୍ତୃପକ୍ଷ ମାନେ ହିଁ ଏହାର ଅଧ୍ୟକ୍ଷ ପଦବୀ ଗ୍ରହଣ କରୁଥିଲେ । କିନ୍ତୁ ଶ୍ୟାମସୁନ୍ଦର ରାଜଗୁରୁ ବେସରକାରୀ ଭାବେ ସର୍ବପ୍ରଥମ ଥର ପାଇଁ ୧୮୯୪ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସରେ ପାରଳା ପୌରପାଳିକାର ଅଧ୍ୟକ୍ଷ ଦାୟିତ୍ୱ ଗ୍ରହଣ କରିଥିଲେ । ସେ ନିଜର ବଳିଷ୍ଠ ବ୍ୟକ୍ତିତ୍ୱ ଏବଂ ଲୋକପ୍ରିୟତା ଯୋଗୁଁ ଦୀର୍ଘ ପନ୍ଦର ବର୍ଷ କାଳ ପାରଳା ପୌରପାଳିକାର ଅଧ୍ୟକ୍ଷ ଭାବେ କାର୍ଯ୍ୟ କରିଛନ୍ତି । ଏହି ପଦବୀରେ ରହି, ସେ ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ ପ୍ରଭୃତି ବହୁ ଲୋକ ହିତକର କାର୍ଯ୍ୟ ହାତକୁ ନେଇ, ପାରଳାଖେମୁଣ୍ଡିକୁ ଏକ ଆଦର୍ଶ ସହରରେ ପରିଣତ କରିଥିଲେ । ସେ ଶ୍ରୀକାକୋଲ୍ମ ତାଲୁକା ବୋର୍ଡ ଓ ଗଞ୍ଜାମ ଜିଲ୍ଲା ବୋର୍ଡର ମଧ୍ୟ ସଭ୍ୟ ଭାବେ ଦକ୍ଷତାର ସହ କାର୍ଯ୍ୟ କରିଛନ୍ତି ।

ଶ୍ୟାମସୁନ୍ଦର ରାଜଗୁରୁ ଭାରତୀୟ ଜାତୀୟ କଂଗ୍ରେସ୍‌ର ଶୈଶବାବସ୍ଥାରେ କଂଗ୍ରେସ୍ ସହ ନିବିଡ଼ ସମ୍ପର୍କ ସ୍ଥାପନ କରିଥିଲେ। ସେ ୧୮୯୪ ଖ୍ରୀଷ୍ଟାବ୍ଦରେ ମାନ୍ଦ୍ରାଜ୍, ୧୮୯୫ ଖ୍ରୀଷ୍ଟାବ୍ଦରେ ପୁନା ଏବଂ ୧୮୯୭ ଖ୍ରୀଷ୍ଟାବ୍ଦରେ ଅମରାବତୀ ଅଧିବେଶନରେ ଯୋଗ ଦେଇଥିଲେ । ଅମରାବତୀ ଅଧିବେଶନରେ ସେ ଥିଲେ କଂଗ୍ରେସ୍ ବିଷୟ ନିର୍ବାଚନ କମିଟିର ସଭ୍ୟ ।

କିନ୍ତୁ ପରବର୍ତ୍ତୀ ସମୟରେ ଭାରତୀୟ ଜାତୀୟ ସ୍ରୋତରୁ ସେ ନିଜକୁ ଅଲଗା ରଖି, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ଏକ ମଞ୍ଚ ପ୍ରସ୍ତୁତିର ଆବଶ୍ୟକତାକୁ ଗୁରୁତ୍ୱ ଦେଇଥିଲେ । ଫଳତଃ, ଖଲିକୋଟ ରାଜା ହରିହର ମର୍ଦ୍ଦରାଜ ଦେବ, ପାରଳା ମହାରାଜା ଗୌରଚନ୍ଦ୍ର ଗଜପତି, ରାଜଭ୍ରାତା ପଦ୍ମନାଭ ଦେବ, ଶ୍ୟାମସୁନ୍ଦର ରାଜଗୁରୁ, ନୀଳମଣି ବିଦ୍ୟାରତ୍ନ, ହରିହର ପଣ୍ଡା, ପର୍ଶୁରାମ ପାତ୍ର, ଶ୍ରୀବତ୍ସ ପଣ୍ଡା, ନରସିଂହ ଦାସ ପ୍ରଭୃତି ଗଞ୍ଜାମର ନେତୃ ସ୍ଥାନୀୟ ଓଡ଼ିଆଙ୍କ ଉଦ୍ୟମରେ ଗଞ୍ଜାମ ଜାତୀୟ ସମିତି ଚିଲିକା କୂଳସ୍ଥ ରମ୍ଭା ରାଜବାଟିରେ ୧୯୦୨ ଖ୍ରୀଷ୍ଟାବ୍ଦରେ ଗଠନ କରାଯାଇଥିଲା । ଏହାର ଏକ ସ୍ୱତନ୍ତ୍ର ଅଧିବେଶନ ଶ୍ୟାମସୁନ୍ଦର ରାଜଗୁରୁଙ୍କ ପୌରହିତ୍ୟରେ ୧୯୦୩ ଖ୍ରୀଷ୍ଟାବ୍ଦ ଏପ୍ରେଲ୍ ୧୧ ଏବଂ ୧୨ ତାରିଖ ଦିନ ବ୍ରହ୍ମପୁରର ପଥଦେଉଳ ପ୍ରାଙ୍ଗଣରେ ଅନୁଷ୍ଠିତ ହୋଇଥିଲା । ଏହି ସଭାରେ ଉତ୍କଳଗୌରବ ମଧୁସୂଦନ ଦାସ, ଗୋପବନ୍ଧୁ ଦାସ, ଫକୀରମୋହନ ସେନାପତି, ବିଶ୍ୱନାଥ କର, କର୍ମବୀର ଗୌରୀଶଙ୍କର, ପଲ୍ଲୀକବି ନନ୍ଦକିଶୋର ପ୍ରଭୃତି ଜନନାୟକ ମଧ୍ୟ ଯୋଗ ଦେଇଥିଲେ । ଏହି ଅଧିବେଶନରେ ଘୋଷଣା କରାଯାଇଥିଲା ଯେ, ସମଗ୍ର ପ୍ରାକୃତିକ ଓଡ଼ିଶାର ସର୍ବସାଧାରଣଙ୍କୁ ନେଇ ନିକଟରେ ଏକ ବୃହତ୍ ସମ୍ମିଳନୀ ଗଠନ କରାଯିବ । ଏହାର ପରିଣାମ ସ୍ୱରୂପ ୧୯୦୩ ଖ୍ରୀଷ୍ଟାବ୍ଦ ଡ଼ିସେମ୍ବର ୩୦ ଏବଂ ୩୧ ତାରିଖରେ ମଧୁସୂଦନ ଦାସଙ୍କ ନେତୃତ୍ୱରେ ଉତ୍କଳ ସମ୍ମିଳନୀ କଟକର ଇଦ୍‌ଗା ପଡ଼ିଆରେ ଗଠନ କରାଗଲା

। ଏହାର ପ୍ରଥମ ଅଧିବେଶନରେ ମୟୁରଭଞ୍ଜ ରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ପୌରହିତ୍ୟକରିଥିଲେ । ସେହିଠି ଏହି ମଞ୍ଚରୁ ସ୍ୱତନ୍ତ୍ର ଉତ୍କଳପ୍ରଦେଶ ଗଠନ ନିମନ୍ତେ ଦାବୀମାନ ଉପସ୍ଥାପିତ କରାଗଲା। ତେଣୁ ଉତ୍କଳ ସମ୍ମିଳନୀର ଆଦ୍ୟ ଯଜ୍ଞବେଦୀ ନିର୍ମାଣ ନିମନ୍ତେ, ପଣ୍ଡିତ ଶ୍ୟାମସୁନ୍ଦର ରାଜଗୁରୁଙ୍କ ଅବଦାନ ଜାତୀୟ ଇତିହାସର ଏକ ସ୍ମରଣୀୟ ଅଧ୍ୟାୟ ଅଟେ ।

ପଣ୍ଡିତ ଶ୍ୟାମସୁନ୍ଦର ରାଜଗୁରୁ ଓଡ଼ିଆ ଜାତିକୁ ଉଦ୍‌ବୁଦ୍ଧ କରିବା ପାଇଁ ଇଂରାଜୀ ଭାଷାରେ "FEAST AND FASTS OF THE ORIYAS"ନାମକ ଏକ ପୁସ୍ତକ ରଚନା କରିଥିଲେ । ଓଡ଼ିଆ ଅକ୍ଷର ଜାଣିନଥିବା ବଙ୍ଗାଳୀକରଣ ପ୍ରଭୃତି କେତେକ ସମ୍ପ୍ରଦାୟଙ୍କ ନିମନ୍ତେ ଏହା ଇଂରାଜୀ ଭାଷାରେ ଲେଖାଯାଇଥିଲା । ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ନିମନ୍ତେ ସ୍ମାରକପତ୍ର ସହ ଏହି ପୁସ୍ତକ ବ୍ରିଟିଶ୍ ଉଚ୍ଚ କର୍ତ୍ତୃପକ୍ଷଙ୍କ ସମ୍ମୁଖରେ ଉପସ୍ଥାପନ କରାଯାଇଥିଲା ।

ଶ୍ୟାମସୁନ୍ଦର ରାଜଗୁରୁ ଓଡ଼ିଶାର ପ୍ରଥମ ଇଂରାଜୀ ସାପ୍ତାହିକ ପତ୍ରିକା "The Ganjam News"ର ସମ୍ପାଦକ ଥିଲେ । ଗଞ୍ଜାମ ଓଡ଼ିଆଙ୍କ ଦୁଃଖଦୁର୍ଦ୍ଦଶା ବ୍ରିଟିଶ୍ କର୍ତ୍ତୃପକ୍ଷଙ୍କୁ ଅବଗତ କରାଇ ତାର ସମାଧାନ କରିବା ଥିଲା ଏହି ପତ୍ରିକାର ମୁଖ୍ୟ ଉଦ୍ଦେଶ୍ୟ । ଶ୍ରୀଯୁକ୍ତ ରାଜଗୁରୁଙ୍କ ଏହି ଆଦର୍ଶ ଏବଂ ଆଭିମୁଖ୍ୟକୁ ପ୍ରଶଂସା କରି ବ୍ୟାସକବି ଫକିରମୋହନ "ଉତ୍କଳ ଭ୍ରମଣ" କାବ୍ୟରେ ଯଥାର୍ଥରେ ଲେଖିଥିଲେ -

ପଶ୍ଚିମରେ ପେଟ୍ରିଅଟ୍, ଦକ୍ଷିଣେ ନିଉଜ୍<br>
ଉତ୍ତରେ ଏସବୁ କଥା ମୂଳରୁ ରିଫିଉଜ୍<br>
ଏହିପରି ଜଣେ ଯେବେ ଥାଆନ୍ତେ ଉତ୍ତରେ<br>
ବୁଲୁଥାନ୍ତି ମୁହିଁ ହାତ ପକାଇ ନିଶରେ ।

ଏପରି ଭାବେ ବହୁବିଧ କାର୍ଯ୍ୟାବଳୀରେ ବ୍ୟସ୍ତ ରହି ମଧ୍ୟ ସାହିତ୍ୟସାଧନାରୁ ସେ ବିରତ ହେଉନଥିଲେ । ଶ୍ୟାମସୁନ୍ଦର ରାଜଗୁରୁଙ୍କ ରଚିତ ପ୍ରବନ୍ଧ ସମୂହ, ତାଙ୍କର ଅସାଧାରଣ ଜ୍ଞାନର ପରିଚୟ ପ୍ରଦାନ କରେ । ସେ ସାରଳାଦାସ, ବଳରାମ ଦାସ ପ୍ରଭୃତି ପ୍ରାଚୀନ କବିଙ୍କ ଜୀବନୀ ଓ କୃତି ଗୁଡ଼ିକ ସମ୍ବନ୍ଧରେ ପ୍ରବନ୍ଧମାନ ରଚନା କରିଛନ୍ତି । ଓଡ଼ିଆ ଛାନ୍ଦ, ବିଭକ୍ତି, ସର୍ବନାମ, ଅବ୍ୟୟାଦି ସମ୍ବନ୍ଧରେ ମଧ୍ୟ କେତୋଟି ପ୍ରବନ୍ଧ ଲେଖିଛନ୍ତି । ଏତଦ୍‌ବ୍ୟତୀତ ଧ୍ୱନ୍ୟାତ୍ମକ ଭାଷାକୁ କେନ୍ଦ୍ର କରି କେତୋଟି ଭାଷାତାତ୍ତ୍ୱିକ ଆଲୋଚନା ପ୍ରବନ୍ଧାକାରରେ ରଚନା କରିଛନ୍ତି । ଶ୍ୟାମସୁନ୍ଦର ରାଜଗୁରୁ କର୍ତ୍ତୃକ ଉପରୋକ୍ତ ପ୍ରବନ୍ଧ ସମୂହ ଉତ୍କଳ ସାହିତ୍ୟ ପତ୍ରିକାରେ ଧାରାବାହିକ ଭାବେ ପ୍ରକାଶ ପାଇଥିଲା । ପରବର୍ତ୍ତୀ ସମୟରେ ତାହା ସଂଗୃହୀତ ହୋଇ ୧୯୧୨ ଖ୍ରୀଷ୍ଟାବ୍ଦରେ

ପ୍ରବନ୍ଧାବଳୀ ନାମରେ ଗଜପତି ପ୍ରେସ୍‌ରୁ ମୁଦ୍ରିତ ହେଲା । ଏହି ପୁସ୍ତକର ଉପାଦେୟତା ହୃଦୟଙ୍ଗମ କରି ୧୯୬୪ଖ୍ରୀଷ୍ଟାବ୍ଦରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପକ୍ଷରୁ ଏହା ପୁନଃ ମୁଦ୍ରଣ କରାଯାଇଛି । ତେଣୁ କବିବର ରାଧାନାଥ ରାୟ ଉତ୍କଳ ସାହିତ୍ୟ ସମାଜର ପ୍ରଥମ ବାର୍ଷିକ ଅଧିବେଶନରେ ଯଥାର୍ଥରେ କହିଥିଲେ - "ଓଡ଼ିଶାର ଅନ୍ୟାନ୍ୟ ବ୍ୟକ୍ତିଙ୍କ ମଧ୍ୟରେ ସୁପଣ୍ଡିତ ବାବୁ ଶ୍ୟାମସୁନ୍ଦର ରାଜଗୁରୁ, ବି.ଏ. ମହାଶୟ ଏ ବିଷୟରେ (ଉତ୍କଳ ସାହିତ୍ୟ ଇତିହାସ ପ୍ରଣୟନ ବିଷୟରେ ) ପ୍ରଶଂସନୀୟ ଅଧ୍ୟବସାୟ ପ୍ରଦର୍ଶନ କରି ଆମମାନଙ୍କର ଧନ୍ୟବାଦାର୍ହ ହୋଇଅଛନ୍ତି ।"

ଧ୍ୱନ୍ୟାତ୍ମକ ସମାଲୋଚନା ଉତ୍କଳ ସାହିତ୍ୟ ପତ୍ରିକାର ୯ମ ଭାଗ ୧୨ଶ ସଂଖ୍ୟାରେ ପ୍ରକାଶ ପାଇଥିଲା । ପରବର୍ତ୍ତୀ ସଂଖ୍ୟା ଗୁଡ଼ିକରେ ଶ୍ୟାମସୁନ୍ଦର ରାଜଗୁରୁଙ୍କ ଦ୍ୱାରା ଏହାର ପ୍ରତିବାଦ ଏବଂ ସମ୍ପାଦକଙ୍କର ଉତ୍ତର ଏବଂ ପ୍ରତ୍ୟୁତ୍ତରାଦି ଧାରାବାହିକ ଭାବେ ପ୍ରକାଶ ପାଇଛି । ଆଧୁନିକ ଉତ୍କଳ ଭାଷାର ଶୈଳୀ ଓ ଶବ୍ଦ ପ୍ରୟୋଗ ସମ୍ବନ୍ଧରେ ତାଙ୍କର କି ଧାରଣା ଥିଲା, ତାହା ଏଥିରୁ ସୂଚିତ ହୁଏ । ପୁସ୍ତକରେ ପ୍ରାଦେଶିକ ଶବ୍ଦ ଦୋଷଯୁକ୍ତ ନୁହଁ ବୋଲି ସେ ମାକ୍‌ସ୍‌ମୁଲର୍ ଏବଂ ଭିଟ୍ନି ସାହେବଙ୍କ ଅମୂଲ୍ୟ ମତ ଉପସ୍ଥାପନ କରିଛନ୍ତି । କାରଣ ତାଙ୍କ ମତରେ ଉନ୍ନତିଶୀଳ ଭାଷା ସର୍ବଦା ପରିବର୍ତ୍ତନଶୀଳ ଅଟେ । ଅତଏବ, ପ୍ରାଦେଶିକ ଭାଷାର ଶବ୍ଦ ଓ ଶୈଳୀ ଓଡ଼ିଆ ଭାଷାର ଶ୍ରୀବର୍ଦ୍ଧନ କରିବା ସ୍ୱାଭାବିକ । ଏତଦ୍‌ବ୍ୟତୀତ ସେ ସବୁ ଶବ୍ଦର ଆଦି, ଅନ୍ତ ଏବଂ ଗତି ଅନୁଧ୍ୟାନ କରି ଓଡ଼ିଆ ଭାଷାର ଇତିହାସକୁ ସମୃଦ୍ଧ କରିବାକୁ ସେ ପ୍ରକାରନ୍ତରରେ ନିର୍ଦ୍ଦେଶ ଦେଇଛନ୍ତି ।

ଶ୍ୟାମସୁନ୍ଦର ରାଜଗୁରୁ ବହୁ ପୁରାତନ ତାଳପତ୍ର ପୋଥି ସଂଗ୍ରହ କରି ଏବଂ ଅଧ୍ୟୟନ ପୂର୍ବକ ଲୁପ୍ତ ସାରସ୍ୱତ ବିଭବର ପୁନରୁଦ୍ଧାର କରିଥିଲେ । ଏହି ସାରସ୍ୱତ ସାଧନାକୁ ସ୍ୱୀକୃତି ଦେଇ ପଣ୍ଡିତ ନୀଳକଣ୍ଠ ଦାସ୍, ଗୋପୀନାଥ ନନ୍ଦଙ୍କ "ଭାଷାତତ୍ତ୍ୱ"ର ଗ୍ରନ୍ଥ ପ୍ରବେଶରେ ଶ୍ରୀରାଜଗୁରୁଙ୍କ ସମ୍ବନ୍ଧରେ ଯଥାର୍ଥରେ ଲେଖିଥିଲେ - "ଓଡ଼ିଶାରେ ଓଡ଼ିଆ ଭାଷାରେ ସ୍ୱତନ୍ତ୍ର ଓ ସମୂହ ଭାବରେ ଭାଷାତତ୍ତ୍ୱ ତଥା ବ୍ୟାକରଣରେ ସମ୍ୟକ ସ୍ୱାଧୀନ ପରିଶୀଳନର ପ୍ରଥମ ଉଦ୍ୟମ ଶ୍ୟାମସୁନ୍ଦର ରାଜଗୁରୁ ଆରମ୍ଭ କରିଥିଲେ । ଉତ୍କଳ ସାହିତ୍ୟ ପ୍ରଚାର ପତ୍ରରେ ଓଡ଼ିଆ ଭାଷା ଓ ଛାନ୍ଦ ସମ୍ବନ୍ଧରେ କେତୋଟି ମାତ୍ର ମୌଳିକ ପ୍ରବନ୍ଧ ପ୍ରକାଶ କରି, ସେ ଅକାଳରେ ଇହଧାମ ତ୍ୟାଗ କଲେ ଓ ତାଙ୍କ ପରେ ପଣ୍ଡିତ ଗୋପୀନାଥ ନନ୍ଦ ଓଡ଼ିଆ ତଥା ପ୍ରାକୃତ ଭାଷାତତ୍ତ୍ୱର ସ୍ୱାଧୀନ ପରିଶୀଳନରେ ଅଦ୍ୟାପି ଅଦ୍ୱିତୀୟ କହିଲେ ଚଳେ । ବଙ୍ଗ ଦ୍ୱାରା ସାକ୍ଷାତ୍ ପ୍ରଭାବିତ ଉତ୍କଳ ଖଣ୍ଡରେ ଜନ୍ମ ହୋଇଥିଲେ ହୁଏତ ଶ୍ୟାମସୁନ୍ଦର ଓ ଗୋପୀନାଥ ପିଲାଦିନୁ ଭାଷାକୁ ଭିନ୍ନ ଭାବରେ ଦେଖିପାରିଥାନ୍ତେ, ମାତ୍ର ଗଞ୍ଜାମରେ ପ୍ରାକୃତିକ ଉତ୍କଳର ପ୍ରାୟ ଦକ୍ଷିଣ ସୀମାରେ ରହି ସେମାନେ ଭାଷାକୁ ପ୍ରାଣରୁ ଅଧିକା ମଣି ଆରାଧନା କରୁଥିଲେ ।" (ଇତ୍ୟାଦି)

ପରିଶେଷରେ ବକ୍ତବ୍ୟ ଏହିଯେ, ରାଜଭ୍ରାତା ପ୍ରିୟ ପଦ୍ମନାଭ ଦେବଙ୍କ ଅକାଳ ମୃତ୍ୟୁ, ପଣ୍ଡିତ ରାଜଗୁରୁଙ୍କ ଜୀବନର ଏକ ଦାରୁଣ ଦୁଃଖପୂର୍ଣ୍ଣ ଘଟଣା । ବିଶେଷତଃ ଏହି ଘଟଣା ପରଠାରୁ ସେ ଅତ୍ୟନ୍ତ ଦୁର୍ବଳ ହୋଇ ପଡ଼ିଥିଲେ । ଅତ୍ୟଧିକ ଚିନ୍ତା ଏବଂ ମାନସିକ ଅସ୍ଥିରତା ଯୋଗୁଁ ରକ୍ତଚାପରେ ପୀଡ଼ିତ ହୋଇ ୧୯୦୯ ଖ୍ରୀଷ୍ଟାବ୍ଦ ଜୁଲାଇ ୧୨ ତାରିଖ ଦିନ ପ୍ରାତଃସ୍ମରଣୀୟ ଶ୍ୟାମସୁନ୍ଦର ରାଜଗୁରୁ ମହାପ୍ରୟାଣ କରିଥିଲେ । ଏଥିରେ ଅତ୍ୟନ୍ତ ଦୁଃଖପ୍ରକାଶ କରି ତତ୍କାଳୀନ ଗଞ୍ଜାମ କଲେକ୍ଟର ମହୋଦୟ ମ୍ୟୁନିସିପାଲିଟିର ବାର୍ଷିକ ରିପୋର୍ଟରେ ଉଲ୍ଲେଖ କରିଛନ୍ତି - "ଶ୍ୟାମସୁନ୍ଦର ରାଜଗୁରୁଙ୍କ ଅକାଳ ବିୟୋଗରେ କେବଳ ପାରଳାଖେମୁଣ୍ଡି ମ୍ୟୁନିସିପାଲ୍ଟି ନୁହେଁ, ମାତ୍ର ସମଗ୍ର ଗଞ୍ଜାମ କ୍ଷତିଗ୍ରସ୍ତ ହୋଇଅଛି ।" କାରଣ.ଓଡ଼ିଆ ଭାଷା ଏବଂ ଓଡ଼ିଆ ଜାତିର ଐକ୍ୟ ଓ ବିକାଶ ପାଇଁ ସେ ଯେଉଁ ସାଧନା ଏବଂ କାର୍ଯ୍ୟ କରିଯାଇଛନ୍ତି, ସେଥିଯୋଗୁଁ ସେ ଓଡ଼ିଆ ସାହିତ୍ୟ ଏବଂ ଓଡ଼ିଶାର ଜାତୀୟ ଇତିହାସରେ ଚିର ସ୍ମରଣୀୟ ହୋଇ ରହିବେ ।



### ବିଶେଷ ଦ୍ରଷ୍ଟବ୍ୟ-

ପ୍ରାବନ୍ଧିକ ଶ୍ୟାମସୁନ୍ଦର ରାଜଗୁରୁ ୧୮୬୩ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିବା, ଡ଼କ୍ଟର୍ ସତ୍ୟନାରାୟଣ ରାଜଗୁରୁଙ୍କ "History of the Gangas"ରୁ ଜଣାଯାଏ । ଐତିହାସିକ ଡ଼କ୍ଟର୍ ରାଜଗୁରୁ ପ୍ରାବନ୍ଧିକ ଶ୍ୟାମସୁନ୍ଦର ରାଜଗୁରୁଙ୍କ ପୁତୁରା ଅଟନ୍ତି । ଏହି ପରିପ୍ରେକ୍ଷୀରେ, ରାଜଗୁରୁ ପରିବାରର ଏକ ସଂକ୍ଷିପ୍ତ ବଂଶବୃକ୍ଷ ଦ୍ରଷ୍ଟବ୍ୟ ।



# ଭାଷାତାତ୍ତ୍ୱିକ ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା

ଓଡ଼ିଶା ଚାରୋଟି ବିଭିନ୍ନ ପ୍ରଦେଶରେ ଖଣ୍ଡବିଖଣ୍ଡିତ ହୋଇ ରହିଥାଏ । ଶିକ୍ଷିତ ଓଡ଼ିଆ ଜନସାଧାରଣ ବିଦେଶୀ ଇଂରାଜୀ ଭାଷାରେ କଥା କହିବାକୁ ଅଧିକ ଗୌରବ ମନେ କରୁଥାନ୍ତି । ପଶ୍ଚିମ ଓଡ଼ିଶାରେ ହିନ୍ଦୀ, ଉତ୍ତର ଓଡ଼ିଶାରେ ବଙ୍ଗଳା ଏବଂ ଦକ୍ଷିଣ ଓଡ଼ିଶାରେ ତୈଲଙ୍ଗ ସଂସ୍କୃତି ଓଡ଼ିଆ ଜାତିର ସାଂସ୍କୃତିକ ପରମ୍ପରାକୁ ମୁଖ ବ୍ୟାଦାନ କରି ସତତ ଚାହିଁ ବସିଥାନ୍ତି । ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଏକ ପକ୍ଷରେ ବଙ୍ଗୀୟ ମାନେ ଓଡ଼ିଆ ଭାଷାକୁ ବଙ୍ଗଳାର ଏକ ଉପଭାଷା ବୋଲି ପ୍ରଚାର କରୁଥାନ୍ତି ଏବଂ ଅନ୍ୟପକ୍ଷରେ ଗଞ୍ଜାମର ସରକାରୀ ଅଫିସ୍ ଗୁଡ଼ିକରେ ତେଲୁଗୁ ଭାଷାର ପ୍ରଚଳନକୁହିଁ ସ୍ୱୀକୃତି ଦିଆଯାଇ ଓଡ଼ିଆଭାଷାକୁ ଉପେକ୍ଷା କରାଯାଇଥାଏ । ଓଡ଼ିଆ ଭାଷା ଏବଂ ଓଡ଼ିଆ ଭାଷୀଙ୍କ ପ୍ରତି ଏଭଳି ଅବିଚାର କରାଯାଉଥିବା ସମୟରେ ପଣ୍ଡିତ ଗୋପୀନାଥ ନନ୍ଦଙ୍କର ଆବିର୍ଭାବ ଘଟିଥିଲା ।

ସାହିତ୍ୟ ସାଧନାକୁ ନିଜ ଜୀବନର ବ୍ରତ ଭାବେ ଗ୍ରହଣ କରି ପୁଣ୍ୟପୀଠ ପାରଳାର ଯେଉଁ କେତେକ ଓଡ଼ିଆ ନିଜର ଅନବଦ୍ୟ ସୃଷ୍ଟି ସମ୍ଭାର ଦ୍ୱାରା ଓଡ଼ିଆଜାତିକୁ ମହିମାନ୍ୱିତ କରିଛନ୍ତି, ସେମାନଙ୍କ ମଧ୍ୟରେ ପଣ୍ଡିତ ନନ୍ଦ ଥିଲେ ଅନ୍ୟତମ । ସେ ୧୮୬୯ ଖ୍ରୀଷ୍ଟାବ୍ଦ ଅଗଷ୍ଟ ୨୧ ତାରିଖରେ ମଞ୍ଜୁଷା ଗ୍ରାମର ମାତୁଳ ଗୃହରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମଥିଲା- ରଘୁନାଥ ନନ୍ଦ ଏବଂ ମାତାଙ୍କ ନାମ ରମାଦେବୀ

ପଣ୍ଡିତ ନନ୍ଦଙ୍କ ପୂର୍ବପୁରୁଷ ପୁରୀ ନିକଟସ୍ଥ ବୀରବଳଭଦ୍ରପୁର ଶାସନରୁ ଆସି ପାରଳା ମହାରାଜାଙ୍କ ପୃଷ୍ଠପୋଷକତା ଲାଭ କରିଥିଲେ । ପୁରୁଷାନୁକ୍ରମେ ରାଜବୈଦ୍ୟ ଭାବେ ପାରଳା ରାଜବଂଶ ସହ ଏମାନଙ୍କ ଘନିଷ୍ଠ ସମ୍ପର୍କ ଥିଲା । ସେହି ପବିତ୍ର ବଂଶରେ ଜନ୍ମଲାଭ କରି, ପଣ୍ଡିତ ଗୋପୀନାଥ ନନ୍ଦ ଓଡ଼ିଆ ସାହିତ୍ୟକୁ ଯେଉଁ ଅମର ଦାନ ଦେଇଛନ୍ତି, ତାହାର ଦୃଷ୍ଟାନ୍ତ ଅନ୍ୟତ୍ର ବିରଳ ।

ପାଞ୍ଚ ବର୍ଷ ବୟସରେ ପଣ୍ଡିତ ଗୋପୀନାଥ ନନ୍ଦ ରାଜଗୁରୁ ସାହି ନିକଟସ୍ଥ ଚାଟଶାଳୀରେ ବିଦ୍ୟାରମ୍ଭ କରିଥିଲେ । ଅବଧାନ ନିତ୍ୟାନନ୍ଦ ଶତପଥୀଙ୍କ ଅଧ୍ୟାପନାରେ ସେ ଉଭୟ ଓଡ଼ିଆ ଏବଂ ତେଲୁଗୁ ଭାଷା ଶିକ୍ଷା କରିଥିଲେ । ତତ୍‌ପରେ ୧୮୮୩ ଖ୍ରୀଷ୍ଟାବ୍ଦରେ ସ୍ଥାନୀୟ ମଧ୍ୟ ଇଂରାଜୀ ବିଦ୍ୟାଳୟରୁ ସେ ଶିକ୍ଷାଲାଭ କରିଥିଲେ ।

ଏଠାରେ ଉଲ୍ଲେଖଯୋଗ୍ୟ, ୧୮୮୩ ଖ୍ରୀଷ୍ଟାବ୍ଦରେ ପଣ୍ଡିତ ନନ୍ଦଙ୍କ ବିବାହ କାର୍ଯ୍ୟ ସମ୍ପନ୍ନ ହୋଇଥାଏ । କିନ୍ତୁ ତାହାର ଠିକ୍ ବର୍ଷକ ପରେ ପତ୍ନୀ ଏବଂ ମାତାଙ୍କ ବିୟୋଗ ତାଙ୍କ ମନକୁ ବ୍ୟତିବ୍ୟସ୍ତ କରିଥିଲା । ତେଣୁ ସଂସାରରୁ ଦୁଃଖମଣି, ଦିନେ ପଣ୍ଡିତ ଗୋପୀନାଥ ନନ୍ଦ ସନ୍ୟାସ ବ୍ରତ ଗ୍ରହଣ କରିବାକୁ ବୃନ୍ଦାବନ ଅଭିମୁଖେ ଯାତ୍ରା କରିଥିଲେ । କିନ୍ତୁ କଟକ ଠାରୁ ତାଙ୍କୁ ଫେରାଇ ଅଣାଯାଇଥିଲା । ପଣ୍ଡିତ ନନ୍ଦଙ୍କ ମାନସିକ ସ୍ଥିରତା ନିମନ୍ତେ ୧୮୮୬ ଖ୍ରୀଷ୍ଟାବ୍ଦରେ ତାଙ୍କର ଦ୍ୱିତୀୟ ବିବାହ କରାଯାଇଥିଲା । ତତ୍ପରେ ସେ ଆଉ ସ୍କୁଲକୁ ନଯାଇ,ସ୍ୱଗୃହରେ ପିତାଙ୍କ ଠାରୁ ସଂସ୍କୃତ ଶିକ୍ଷା କରିଥିଲେ । ଏତଦ୍‌ବ୍ୟତୀତ,ପାଲି,ପ୍ରାକୃତ, ହିନ୍ଦୀ, ବଙ୍ଗଳା ଏବଂ ତାମିଲ୍ ଭାଷା ଆୟତ୍ତ କରିବା ନିମନ୍ତେ ସେ ଦୀର୍ଘ ୧୫ବର୍ଷ ପର୍ଯ୍ୟନ୍ତ କଠିନ ସାଧନା କରିଥିଲେ ।

ସାହିତ୍ୟ ସାଧନାର ଆଦ୍ୟକୃତି ଭାବେ ମେଘଦୂତ, ମୁକୁନ୍ଦାନନ୍ଦଭାଣ, ଉଲ୍ଲାସ, ରାଧାମାଧବ ବିଳାସ, ଉପରୂପକ, ଉଦ୍ଧୋହବ, କୁମାରବିଜୟ, ବାଳରାମାୟଣ ଆଦି ବହୁ କାବ୍ୟକବିତା ସେ ରଚନା କରିଛନ୍ତି । ଉଦ୍ଧବଦୂତ (୧୯୦୩), ପିୟୂଷଧାରା (୧୯୧୪) ଏବଂ ବିନ୍ଦୁଶୀୟ (୧୯୧୫) ଯଥାର୍ଥରେ ପଣ୍ଡିତ ନନ୍ଦଙ୍କ ଭକ୍ତିକ ଚିନ୍ତାଧାରା ଏବଂ ଅସାଧାରଣ ଧୀଶକ୍ତିର ଏକ ସ୍ୱଚ୍ଛ ପ୍ରତିଫଳନ । ସଂସ୍କୃତ ଛନ୍ଦ ନିୟମରେ "ଉଦ୍ଧବଦୂତ" , ସଂସ୍କୃତ ଚୌର ପଞ୍ଚାଶିକା ଅନୁକରଣରେ "ବିନ୍ଦୁଶୀୟ" କାବ୍ୟ ଏବଂ ରାଧାକୃଷ୍ଣଙ୍କ ପ୍ରେମ ବିଷୟକ "ପିୟୂଷଧାରା" କବିଙ୍କ ଭକ୍ତିପ୍ରାଣତାର ଏକଏକ ଶ୍ରେଷ୍ଠନମୂନା ।

କାଳକ୍ରମେ ପଣ୍ଡିତ ନନ୍ଦଙ୍କ ପ୍ରତିଭା ବିକଶିତ ହେବା ସଙ୍ଗେ ସଙ୍ଗେ, ତାଙ୍କ ପାଣ୍ଡିତ୍ୟର ସୁଦୂର ପ୍ରସାର ଘଟିଥିଲା । ପାରଳା ରାଜଦରବାରରେ ଆୟୋଜିତ ବୁଧ ହଂସ କେଳି ସରୋବରରେ ବିଭିନ୍ନ ଭାଷାର ବହୁ ଗୁଢ଼ତତ୍ତ୍ୱ ସମ୍ବନ୍ଧରେ ନିୟମିତ ଚର୍ଚ୍ଚା କରି, ରାଜା ପ୍ରଜା ନିର୍ବିଶେଷରେ ସେ ସମସ୍ତଙ୍କର ଶ୍ରଦ୍ଧାଭାଜନ ହୋଇଥିଲେ । ଫଳତଃ ରାଜଭ୍ରାତା ନାଟ୍ୟକାର ପଦ୍ମନାଭ ଦେବ, ପ୍ରାବନ୍ଧିକ ଶ୍ୟାମସୁନ୍ଦର ରାଜଗୁରୁ, ସାହିତ୍ୟିକ ଅପନ୍ନା ପଣ୍ଡା, ଆସ୍ଥାନ ପଣ୍ଡିତ ଗୁରୁଦଣ୍ଡି ଭେଙ୍କଟାଚଳ ଶାସ୍ତ୍ରୀ ପ୍ରମୁଖ ବିଦ୍ୱାନ ବ୍ୟକ୍ତି ପଣ୍ଡିତ ନନ୍ଦଙ୍କ ପ୍ରଶଂସା କରିଥିଲେ । ଇତି ମଧ୍ୟରେ ୧୮୯୬ ଖ୍ରୀଷ୍ଟାବ୍ଦରେ ପାରଳାରେ କଲେଜ୍ ସେକ୍‌ସନ୍ ପ୍ରାରମ୍ଭ ହୁଏ। ତେଣୁ କଲେଜ୍ ନିମନ୍ତେ ଓଡ଼ିଆ ଏବଂ ସଂସ୍କୃତ ଭାଷା-ପ୍ରବୀଣ ଆବଶ୍ୟକ ହୁଅନ୍ତେ, ମହାରାଜାଙ୍କ ରାଜସମସ୍ଥାନ, ବିଶିଷ୍ଟ ବ୍ୟକ୍ତିଙ୍କ ପରାମର୍ଶ କ୍ରମେ ପଣ୍ଡିତ ଗୋପୀନାଥ ନନ୍ଦଙ୍କ ନାମ ନିର୍ବାଚିତ ହେଲା । ପଣ୍ଡିତ ନନ୍ଦଙ୍କ ବହୁ ଶାସ୍ତ୍ରଦର୍ଶିତା ଓ ଅସାଧାରଣ ପାଣ୍ଡିତ୍ୟ ଯୋଗୁଁ ବିଶ୍ୱବିଦ୍ୟାଳୟ ଡିଗ୍ରୀ ନଥିବା ସତ୍ତ୍ୱେ ରାଜାସ୍ କଲେଜ୍‌ରେ ତାହାଙ୍କୁ ଉଭୟ ଓଡ଼ିଆ ଏବଂ ସଂସ୍କୃତ ବିଭାଗର ହେଡ୍‌ପଣ୍ଡିତ ଭାବେ ନିଯୁକ୍ତି ଦିଆଯାଇଥିଲା ।

ଆଜୀବନ ରାଜାସ୍ କଲେଜ୍‌ର ଜଣେ ଛାତ୍ରବତ୍ସଳ ଶିକ୍ଷକ ଭାବେ ପଣ୍ଡିତ ନନ୍ଦ ଅଶେଷ ସୁନାମ ଅର୍ଜନ କରିଛନ୍ତି । ପାଠ ପଢ଼ାଇବା ପୂର୍ବରୁ ନୋଟ୍ ପ୍ରସ୍ତୁତ କରି ଅତି ସରଳ ପଦ୍ଧତିରେ ଶିକ୍ଷା ଦେବା ଯୋଗୁଁ ଛାତ୍ରମାନେ ସାହିତ୍ୟ ଅଧ୍ୟୟନ ପ୍ରତି ବିଶେଷ ଭାବେ ଲାଳାୟିତ ହେଉଥିଲେ । ପଣ୍ଡିତ ନନ୍ଦଙ୍କ ଅସାଧାରଣ ପାଣ୍ଡିତ୍ୟ, ବହୁଭାଷା ଧୂରୀଣତା ଏବଂ ଅପୂର୍ବ ଶିକ୍ଷାଦାନ ପଦ୍ଧତି ଯୋଗୁଁ ସାହିତ୍ୟ ଅଧ୍ୟୟନ ପ୍ରତି ଛାତ୍ରମାନଙ୍କ ମଧ୍ୟରେ ଅଶେଷ ଆଗ୍ରହ ସୃଷ୍ଟି ହେଉଥିଲା । ଏହାର ସୁବିସ୍ତୃତ ବିବରଣ ଅଧ୍ୟାପକ ସୁଦର୍ଶନ ଆଚାର୍ଯ୍ୟଙ୍କ ଲିଖିତ "ପଣ୍ଡିତ ଗୋପୀନାଥ ନନ୍ଦଙ୍କ କ୍ଲାସ୍ ନୋଟ" ପ୍ରବନ୍ଧରୁ ସୂଚିତ ହୁଏ ।

ଏଠାରେ ଉଲ୍ଲେଖଯୋଗ୍ୟ ଏହିଯେ, ସେହି ସମୟରେ ଏଫ୍.ଏ. କ୍ଲାସ୍ ନିମନ୍ତେ "ଜାନକୀ ପରିଣୟ ନାଟକ" ଓଡ଼ିଆ ଭାଷାରେ ଅନୁବାଦିତ ହୋଇନଥିବାରୁ, ଏଫ୍.ଏ. କ୍ଲାସ୍‌ର ଓଡ଼ିଆ ପିଲାଙ୍କ ନିମନ୍ତେ ଅନ୍ୟ ପୁସ୍ତକ ପଢ଼ାଯାଉଥିଲା । ଏହାର ସୁଯୋଗ ନେଇ ତତ୍‌କାଳୀନ ଇତିହାସ ଅଧାପକ ଶ୍ରୀଯୁକ୍ତ ଗିଡୁଗୁ ରାମମୂର୍ତ୍ତି ଏବଂ କେତେକ ତୈଲଙ୍ଗ ଅଧାପକ ପରିହାସ ଛଳରେ ଗୋପୀନାଥ ନନ୍ଦଙ୍କୁ କହିଥିଲେ - "ଦେଖନ୍ତୁ, କଲେଜ୍ କ୍ଲାସ୍‌ରେ ଆମ ଭାଷାରେ କି ଭଳି ଉଚ୍ଚ ଧରଣର ପୁସ୍ତକ ପଢ଼ାଯାଉଛି । ଗଣ ନିବନ୍ଧ ପଦ୍ୟ ଶୈଳୀରେ ରଚିତ ଆମ "ଜାନକୀ ପରିଣୟ ନାଟକ" ସଦୃଶ ଖଣ୍ଡିଏ ପୁସ୍ତକ ଆପଣଙ୍କ ସାହିତ୍ୟରେ ଅଛି କି "- ଇତ୍ୟାଦି । ତାହା ଶୁଣି ଅଭିମାନରେ ପଣ୍ଡିତ ନନ୍ଦଙ୍କ ହୃଦୟ ଅସ୍ତବ୍ୟସ୍ତ ହୋଇଯାଇଥିଲା । କାରଣ ଓଡ଼ିଆ ସାହିତ୍ୟରେ ଉଚ୍ଚକୋଟୀର ପଦ୍ୟ ପରିପାଟୀରେ ରଚିତ ସମକକ୍ଷ ନାଟକର ଅଭାବ ସେ ଯଥାର୍ଥରେ ହୃଦୟଙ୍ଗମ କରିଥିଲେ । ପରନ୍ତୁ ଓଡ଼ିଆ ଭାଷାର ଜୀବନ୍ତ ସ୍ଥାନ ଉପରେ ଆଘାତ ସୃଷ୍ଟି କଲାଭଳି ମନ୍ତବ୍ୟ ଦେବା ତୈଲଙ୍ଗ ଅଧ୍ୟାପକଙ୍କ ଯୁକ୍ତିସଙ୍ଗତ ନଥିଲା । ଶେଷରେ ମୂଳ ସଂସ୍କୃତ ଗ୍ରନ୍ଥରୁ ଅବିକଳ ଓଡ଼ିଆ ଅନୁବାଦ କରି ଏକ ଉଚ୍ଚକୋଟୀର "ଜାନକୀ ପରିଣୟ ନାଟକ" ରଚନା କରିବାରୁ ସେଦିନ ସେ ସଙ୍କଳ୍ପବଦ୍ଧ ହୋଇଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ, ମହାନୁଭବ ରାମଚନ୍ଦ୍ର ମଖୀନ୍ଦ୍ରଙ୍କ କୃତ ପ୍ରଥମ ଜାନକୀ ପରିଣୟ ନାଟକ ହେଉଛି ଏକ ମୂଳ ସଂସ୍କୃତ ନାଟକ ।

ପଣ୍ଡିତ ନନ୍ଦ ୧୯୦୦ ଖ୍ରୀଷ୍ଟାବ୍ଦ ଜୁଲାଇ ମାସରେ "ଜାନକୀ ପରିଣୟ ନାଟକ"ର ରଚନା ପୂର୍ଣ୍ଣ କରିଥିଲେ । ଏଥିରେ ମୂଳଗ୍ରନ୍ଥର ଶ୍ଳୋକ ଗୁଡ଼ିକୁ ବିଭିନ୍ନ ବୃତ୍ତରେ ଭାଷାନ୍ତରିତ କରାଯାଇଛି । ଉତ୍କଳ ସାହିତ୍ୟର ଉପଯୋଗାର୍ଥେ ଗଣନିବନ୍ଧ ପଦ୍ୟଶୈଳୀ ଏବଂ ମିତ୍ରାକ୍ଷର ଶବ୍ଦ ସଂଯୋଜନାରେ ରଚିତ ଏହି କୃତି ଓଡ଼ିଆ ସାହିତ୍ୟ ଭଣ୍ଡାରର ଏକ ଅମୂଲ୍ୟ ରତ୍ନ । ଏହା ପଣ୍ଡିତ ନନ୍ଦଙ୍କ ଭାଷା ଏବଂ ଜାତି ପ୍ରୀତିର ଏକ ଜ୍ୱଳନ୍ତ ସ୍ୱାକ୍ଷର ବହନ କରିଛି । ଏହି କୃତି ସମ୍ବନ୍ଧରେ ଅଧ୍ୟାପକ ଗିଡୁଗୁ ରାମମୂର୍ତ୍ତି ଲେଖିଛନ୍ତି -

"I compared your Oriya translation of several passages in the "Janaki Parinaya" with the Original and found it quite accurate. The beauty of the Sanskrit Original is literally transferred into the Oriya translation. To put it briefly, I am of opinion, that, the Oriya literature is enriched by your literacy production."

ଜୟପୁର ମହାରାଜା ଶ୍ରୀବିକ୍ରମଦେବ ବର୍ମା ମଧ୍ୟ ଏଥି ସମ୍ବନ୍ଧରେ ଯଥାର୍ଥରେ ଲେଖିଥିଲେ -

"ଛନ୍ଦୋବଦ୍ଧ ଏବଂ ସୁଲଳିତ ସଂସ୍କୃତୋତ୍କଳ ଶବ୍ଦ ମିଶ୍ରିତ ଏତଦ୍ ପଦ୍ୟାବଳୀ ଉତ୍କଳ ସରସ୍ୱତୀଙ୍କର ନୂତନ ମୌକ୍ତିକ ପ୍ରବାଳ ହାରାବଳି ପରି ଅତ୍ୟନ୍ତ ମଞ୍ଜୁଳ ହୋଇଛି । ତେଣୁ ଏହାର ଉପାଦେୟତା ହୃଦୟଙ୍ଗମ କରି, ସାହିତ୍ୟ ରସିକ ପାରଳା ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ମହୋଦୟ ୧୯୧୫ ଖ୍ରୀଷ୍ଟାବ୍ଦରେ ଏହି ପୁସ୍ତକର ମୁଦ୍ରଣ ଭାର ଗ୍ରହଣ କରି ଉତ୍କଳ ସାହିତ୍ୟ ପ୍ରେସ୍, କଟକରୁ ପ୍ରକାଶ କରିଅଛନ୍ତି ।"

ଜାନକୀ ପରିଣୟ ନାଟକ ରଚନାର ପରବର୍ତ୍ତୀ ସମୟରେ ଜଣେ ଉଚ୍ଚକୋଟୀର ନାଟ୍ୟଲେଖକ ଭାବେ ପଣ୍ଡିତ ନନ୍ଦଙ୍କ ଖ୍ୟାତି ପରିବ୍ୟାପ୍ତ ହୋଇଥିଲା । ଏହି ସମୟରେ ରାଜଭ୍ରାତା ପଦ୍ମନାଭ ଦେବଙ୍କ ପ୍ରଚେଷ୍ଟାରେ ଓଡ଼ିଶାର ସର୍ବପ୍ରଥମ ରଙ୍ଗାଳୟ ପାରଳାଖେମୁଣ୍ଡିରେ ପ୍ରତିଷ୍ଠିତ ହୋଇ ସାରିଥାଏ । ଦିନେ ରାଜଭ୍ରାତା ପଣ୍ଡିତ ନନ୍ଦଙ୍କୁ ଡ଼କାଇ ଏକ ରାଙ୍ଗୋପଯୋଗୀ ହେବାଭଳି ସଂସ୍କୃତ ନାଟକ ଗୁଡ଼ିକୁ ଅନୁବାଦ କରିବାକୁ କହିଥିଲେ । ଫଳତଃ ପଣ୍ଡିତ ନନ୍ଦ ୧୯୦୧ ଖ୍ରୀଷ୍ଟାବ୍ଦରେ ଉତ୍ତର ରାମଚରିତର ପ୍ରଥମ ଭାଗକୁ "ସୀତାବନବାସ" ନାମକରଣ ପୂର୍ବକ ରଚନା କରିଥିଲେ । ଅଭିନୟ ନିମନ୍ତେ ଏହି ନାଟକର ଉପଯୋଗୀତା ସମଗ୍ର ଓଡ଼ିଶାରେ ଆଲୋଡ଼ନ ସୃଷ୍ଟି କରିଥିଲା । ତେଣୁ ୧୯୦୨ ଖ୍ରୀଷ୍ଟାବ୍ଦରେ ଏହା ପୁସ୍ତକାକାରରେ ପ୍ରକାଶ ପାଇଥିଲା । ପାରଳା ରାଜବଂଶର ପ୍ରେରଣା ଯୋଗୁଁ ତାଙ୍କର ଲେଖନୀ ପରବର୍ତ୍ତୀ ସମୟରେ ଓଡ଼ିଆ ନାଟକର ଆଦିପର୍ବକୁ ଅଧିକରୁ ଅଧିକତର ସମୃଦ୍ଧ କରିଥିଲା । ଏହି ପରିପ୍ରେକ୍ଷୀରେ ପଣ୍ଡିତ ନନ୍ଦଙ୍କ କୃତ "ବିକ୍ରମୋବଂଶୀୟ" (୧୯୦୮), "ଦ୍ରୌପଦୀ ବସ୍ତ୍ରହରଣ" (୧୯୦୮), "ରାମାଶ୍ୱମେଧ" (୧୯୧୩), ଏବଂ "ଉନ୍ମତ୍ତ ରାଘବ" (୧୯୧୫) ମଧ୍ୟ ସମ ଭାବରେ ଅଗ୍ରଗଣ୍ୟ ବିବେଚିତ ହୁଏ । ଉପରୋକ୍ତ ନାଟକ ସମୂହ ଅନୁଜ ବଳଭଦ୍ର ନନ୍ଦଙ୍କ ନିର୍ଦ୍ଦେଶନାରେ ସ୍ଥାନୀୟ ରଙ୍ଗାଳୟରେ ଅଭିନୀତ ହୋଇଅଛି ।

ପଣ୍ଡିତ ଗୋପୀନାଥ ନନ୍ଦଙ୍କ ବହୁମୁଖୀ ପ୍ରତିଭା କେବଳ କାବ୍ୟକବିତା ଏବଂ ନାଟକାଦି ମଧ୍ୟରେ ସୀମିତ ନଥିଲା । କୌଣସି ଭାଷାକୁ ପ୍ରତିଷ୍ଠିତ କରିବାକୁ ହେଲେ, ସେହି ଭାଷାରେ ବ୍ୟବହୃତ ଶବ୍ଦ ଗୁଡ଼ିକର ମୂଳତତ୍ତ୍ୱ ନିର୍ଣ୍ଣୟ କରିବାକୁ ହେବ, ଏହା ସେ ଯଥାର୍ଥରେ ହୃଦୟଙ୍ଗମ କରିଥିଲେ । ତେଣୁ ସେ ସାହିତ୍ୟ ସାଧନାର ପ୍ରାରମ୍ଭରୁହିଁ ଓଡ଼ିଆ ଶବ୍ଦ ଗୁଡ଼ିକର ଅନୁଶୀଳନ କରି ଲିପିବଦ୍ଧ କରୁଥିଲେ । ଏପରିକି ସାହିତ୍ୟରେ ବ୍ୟବହୃତ ଶବ୍ଦ ସହ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ବ୍ୟବହୃତ ଲୌକିକ ଶବ୍ଦ ଗୁଡ଼ିକର ପର୍ଯ୍ୟାଲୋଚନା କରି, ସେ ନିଜର ଅସାଧାରଣ ପାଣ୍ଡିତ୍ୟର ପରିଚୟ ଦେଇଛନ୍ତି । ଏଥିପାଇଁ ଜଣେ ଯୋଗୀଙ୍କ ଭଳି କଠୋର ସାଧନା ଦ୍ୱାରା ଶବ୍ଦତତ୍ତ୍ୱବୋଧ ଅଭିଧାନ ଏବଂ ଭାଷାତତ୍ତ୍ୱ ରଚନା କରିବାରେ ସେ କୃତକାର୍ଯ୍ୟ ହୋଇପାରିଛନ୍ତି । ଏଥିପାଇଁ ବହୁଭାଷା ଆୟତ୍ତ କରି ସେ ଯେଉଁ ଧୈର୍ଯ୍ୟ ଏବଂ ଗବେଷଣାତ୍ମକ ଚିନ୍ତାଧାରାର ନିୟୋଗ କରିଛନ୍ତି, ତାହାର ଦୃଷ୍ଟାନ୍ତ ଅନ୍ୟତ୍ର ବିରଳ ।

ପଣ୍ଡିତ ନନ୍ଦ ୧୯୦୩ ଖ୍ରୀଷ୍ଟାବ୍ଦରେ ଓଡ଼ିଆ ଶବ୍ଦତତ୍ତ୍ୱବୋଧ ଅଭିଧାନର ରଚନା ପୂର୍ଣ୍ଣ କରିଥିଲେ । ଏହି ପୁସ୍ତକର ପ୍ରକାଶନ ନିମନ୍ତେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ୩୦୦୦ ଙ୍କୋ ଆର୍ଥିକ ସାହାଯ୍ୟ ଦେଇଥିଲେ । କେବଳ ସେତିକି ନୁହେଁ, ଗ୍ରନ୍ଥର ନିର୍ଭୁଲ ପାଣ୍ଡୁଲିପି ଲେଖିବା ନିମନ୍ତେ ପଣ୍ଡିତ ନନ୍ଦଙ୍କୁ ୮ ମାସ ସବେତନ ଛୁଟୀ ମଞ୍ଜୁର ଦେଇଥିଲେ । ମହାରାଜାଙ୍କର ଏଭଳି ବଦାନ୍ୟତା ଏବଂ ସାହିତ୍ୟ ଅନୁରାଗ ସମ୍ବନ୍ଧରେ ଚିନ୍ତା କଲେ, କେଉଁ ଓଡ଼ିଆର ଶରୀରରେ ରୋମାଞ୍ଚ ସୃଷ୍ଟି ନହେବ? ବାସ୍ତବରେ ମହାରାଜାଙ୍କ ସ୍ୱପ୍ନ ଏବଂ ପଣ୍ଡିତ ଗୋପୀନାଥନନ୍ଦଙ୍କ ସାଧନାର ସ୍ୱାକ୍ଷର ବହନ କରି ଓଡ଼ିଆ ଶବ୍ଦତତ୍ତ୍ୱବୋଧ ଅଭିଧାନ ଓଡ଼ିଆସାହିତ୍ୟଇତିହାସରେ ଏକ ସୁବର୍ଣ୍ଣ ଅଧ୍ୟାୟ ସୃଷ୍ଟିକରିଛି । ଏହି ବିରାଟ ଗ୍ରନ୍ଥଟି ୧୯୧୬ ଖ୍ରୀଷ୍ଟାବ୍ଦରେ ଉତ୍କଳସାହିତ୍ୟ ପ୍ରେସ୍, କଟକରୁ ପ୍ରକାଶ ପାଇଛି ।

ପଣ୍ଡିତ ନନ୍ଦ ଅଭିଧାନ ରଚନାର ଠିକ୍ ପରବର୍ତ୍ତୀସମୟରେ ଓଡ଼ିଆ ଭାଷାର ବ୍ୟାକରଣ ରଚନାରେ ନିଜକୁ ନିୟୋଜିତ କରିଥିଲେ । ଓଡ଼ିଆ ବ୍ୟାକରଣର ବହୁ ଗୁଢ଼ତତ୍ତ୍ୱାଦି ସମ୍ବନ୍ଧରେ ଆଲୋଚନା କରି ସେ ଏହି ଗ୍ରନ୍ଥ ରଚନା କରିଛନ୍ତି । ସଂସ୍କୃତ ପଣ୍ଡିତ ହୋଇ ପ୍ରାକୃତ ଭାଷାତତ୍ତ୍ୱର ସେ ଯେଉଁ ପରିଶୀଳନ କରିଛନ୍ତି, ତାହା ଅନନ୍ୟ ଓ ଅସାଧାରଣ । ଏକହଜାର ପୃଷ୍ଠାର ଏହି ବିରାଟ ଗ୍ରନ୍ଥରେ ଓଡ଼ିଆ ଭାଷା ଓ ବ୍ୟାକରଣର ପ୍ରକୃତି ତନ୍ନତନ୍ନ କରି ସେ ପର୍ଯ୍ୟାଲୋଚନା କରିଛନ୍ତି । ପୁସ୍ତକାକାରରେ ପ୍ରକାଶିତ ହେବା ପୂର୍ବରୁ ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ଏହା ପ୍ରକାଶ ପାଇଥିଲା । କିନ୍ତୁ ପଣ୍ଡିତ ନନ୍ଦଙ୍କ ଗବେଷଣା ଲବ୍ଧ ଜ୍ଞାନ ଅତିକ୍ରମ କରିନପାରି, ଏହା ଅସାର ଓ ପ୍ରକାଶର ଅଯୋଗ୍ୟ ବୋଲି କେତେକ ବିଶିଷ୍ଟ ବ୍ୟକ୍ତି ୧୯୧୬ ଖ୍ରୀଷ୍ଟାବ୍ଦରେ କଟକର ଟ୍ରେନିଂ ସ୍କୁଲ ଠାରେ ଆୟୋଜିତ ଏକ ସଭାରେ ମତ ଦେଇଥିଲେ ।

ଏହି ସମୟରେ ଉତ୍କଳମଣି ଗୋପବନ୍ଧୁ ପାରଳା ଗସ୍ତରେ ଆସି ପରିଛା ମଠରେ ଅବସ୍ଥାନ କରିଥାନ୍ତି । ପଣ୍ଡିତ ଗୋପୀନାଥ ନନ୍ଦ କେତେକଙ୍କ ଉପରୋକ୍ତ ବିଦ୍ରୂପ ଓ ପ୍ରତିକୂଳ ମତରେ ବ୍ୟଥିତ ହୋଇ ଓଡ଼ିଆ ଭାଷାତତ୍ତ୍ୱର ପାଣ୍ଡୁଲିପି ଗୁଡ଼ିକୁ ବୁହୁଲି ବାନ୍ଧି ଉତ୍କଳମଣିଙ୍କ ସମ୍ମୁଖରେ ରଖି ଶୋକାକୁଳ କଣ୍ଠରେ ଏଗୁଡ଼ିକୁ ପୋଡ଼ି ଜାଳି ଦେବାକୁ କହିଥିଲେ । ପଣ୍ଡିତ ଗୋପବନ୍ଧୁ ନନ୍ଦଙ୍କ ହୃଦୟର ବ୍ୟଥା ହୃଦୟଙ୍ଗମ କରି ଆଶ୍ୱାସନା ଦେଇ କହିଥିଲେ, "ଏସବୁ ଧରି ସତ୍ୟବାଦୀ ଆସ, କଣ୍ଠ (ନୀଳକଣ୍ଠ ଦାଶ) ଏସବୁ ବୁଝିବ, କାରଣ ସେ ଏବିଷୟ ଭଲ ଜାଣେ ।"

ପଣ୍ଡିତ ଗୋପୀନାଥ ନନ୍ଦ ପାଣ୍ଡୁଲିପି ଗୁଡ଼ିକୁ ଧରି ସତ୍ୟବାଦୀ ଯାଇଥିଲେ । ସେଠାରେ ପୂଣ୍ୟାତ୍ମା ଗୋପବନ୍ଧୁଙ୍କ ସୂଚନା କ୍ରମେ ପଣ୍ଡିତ ନୀଳକଣ୍ଠ ଗ୍ରନ୍ଥର ପାଣ୍ଡୁଲିପି ଅନୁଧ୍ୟାନ କରିଥିଲେ । ଅଠର ପୃଷ୍ଠା ବ୍ୟାପୀ ତାଙ୍କର ସେହି ସୁଦୀର୍ଘ ଆଲୋଚନା, "ଗ୍ରନ୍ଥ ପ୍ରବେଶ" ଭାବେ ଓଡ଼ିଆ ଭାଷାତତ୍ତ୍ୱ ଗ୍ରନ୍ଥର ପ୍ରାରମ୍ଭରେ ଛପାଯାଇଛି ।

ସେ ଲେଖିଛନ୍ତି- "ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଭାଷାତତ୍ତ୍ୱ ଏକା ଓଡ଼ିଆରେ କାହିଁକି, ଭାରତରେ ସମସ୍ତ ଚଳିତ ଭାଷାରେ ଗୋଟିଏ ନୂତନ ଗ୍ରନ୍ଥ । ଓଡ଼ିଆର ପ୍ରଚାର ଓଡ଼ିଶାରେ ମାତ୍ର ପ୍ରସାର ନଲଭି ଉପାନ୍ତ ଭୂମିରେ ଠାଏ ଠାଏ ତାହାର ନିର୍ବାସନ ଉଦ୍ୟମ ହେଉଥିବା ବେଳେ, ନନ୍ଦେ ଓଡ଼ିଆ ଭାଷାତତ୍ତ୍ୱ ଆଲୋଚନା କରି, ଭାରତର ତଥା ପୃଥିବୀର ଭାଷା ସମୂହ ମଧ୍ୟରେ ଓଡ଼ିଆର ଏକ ନିର୍ଦ୍ଦିଷ୍ଟ ସ୍ଥାନ ନିର୍ଣ୍ଣୟ କରି ଯେ ମସ୍ତିଷ୍କ ଚାଳନା କରିଅଛନ୍ତି, ସେତେକେ ମଧ୍ୟ ଦୃଷ୍ଟି ପ୍ରସାର କରି ଦେଖିବା ପାଇଁ ଓଡ଼ିଶାରେ ବୀର ପୁରୁଷର ଏକାନ୍ତ ଅଭାବ କହି, ନନ୍ଦେ ଏ ଗ୍ରନ୍ଥ ବଳରେ ଓଡ଼ିଶା ତଥା ଭାରତରେ ଭାଷା ଆଲୋଚନାର ମୂଳଭିତ୍ତି ସ୍ଥାପନ କରିଅଛନ୍ତି ବୋଲି ସମ୍ମାନିତ ହେବେ । ପଣ୍ଡିତ ନୀଳକଣ୍ଠଙ୍କ ଭାଷା ବିଚାରରେ ଏହି ଅପୂର୍ବ ଜ୍ଞାନଚର୍ଚ୍ଚା ଓଡ଼ିଆ ସାହିତ୍ୟରେ ଅତୁଳନୀୟ ସମ୍ଭାର ।"

"ଓଡ଼ିଆ ଭାଷାତତ୍ତ୍ୱ" ନାମରେ ଏହି ଗ୍ରନ୍ଥ ୧୯୨୭ ଖ୍ରୀଷ୍ଟାବ୍ଦରେ କଟକର ମୁକୁର ପ୍ରେସ୍‌ରୁ ପ୍ରକାଶ ପାଇଛି । ଏହି ଗ୍ରନ୍ଥଟି ଯୋଗୁଁ ସେ ଆଜି ଓଡ଼ିଆ ଜାତିର ପାଣିନୀ ଏବଂ ଓଡ଼ିଆ ବ୍ୟାକରଣର ପ୍ରତିଷ୍ଠାତା ଭାବେ ଏ ଜାତିର ପ୍ରାତଃ ସ୍ମରଣୀୟ ଅଟନ୍ତି ।

"ଭାରତ ଦର୍ପଣ" ପଣ୍ଡିତ ନନ୍ଦଙ୍କର ଅନ୍ୟ ଏକ ଅଦ୍ୱିତୀୟ କୃତି । ଏହା ସାରଳା ମହାଭାରତରେ ଏକ ସମାଲୋଚନାତ୍ମକ ବିଶ୍ଳେଷଣ । ପଣ୍ଡିତ ଗୋପୀନାଥ ନନ୍ଦଙ୍କ ନିଷ୍ଠାପର ସାଧନାର ଏହା ପ୍ରତିଫଳନ । ଯେଉଁ ସମୟରେ ଓଡ଼ିଶାର ସାହିତ୍ୟିକ ବୃନ୍ଦ ଓଡ଼ିଆ ସାହିତ୍ୟର ଅନୁଶୀଳନରେ ଆଦର ପ୍ରଦର୍ଶନ କରୁନଥିଲେ, ସେହି ସମୟରେ ପଣ୍ଡିତ ନନ୍ଦ ଏହି ଗ୍ରନ୍ଥ ପ୍ରଣୟନ କରିଥିଲେ । ଉତ୍କଳ ସାହିତ୍ୟ ପତ୍ରିକାରେ ଏହା ଦୁଇବର୍ଷ ଧାରାବାହିକ ଭାବେ ପ୍ରକାଶ ପାଇଥିଲା । ଏହି ମଧ୍ୟରେ କେତେକ ବିରୁଦ୍ଧବାଦି ପଣ୍ଡିତ ନନ୍ଦଙ୍କ ପ୍ରବନ୍ଧ ପଢ଼ିବାର ଶ୍ରମ ଓ ସହିଷ୍ଣୁତା ସ୍ୱୀକାର

କରିନାହାନ୍ତି । ସେମାନଙ୍କୁ ଲକ୍ଷ୍ୟ କରି ଉତ୍କଳ ସାହିତ୍ୟର ସମ୍ପାଦକ ଶ୍ରୀଯୁକ୍ତ ବିଶ୍ୱନାଥ କର ଏକୋନବିଂଶ ଭାଗର ୪ର୍ଥ ସଂଖ୍ୟାରେ ଲେଖିଥିଲେ - "ଅଥଚ ଯେଉଁ ନନ୍ଦ ମହାଶୟ ଏହି ପ୍ରକାଣ୍ଡ ଗ୍ରନ୍ଥକୁ ଛାପା ଓ ବିଭିନ୍ନ ତାଳପତ୍ର ଲେଖା ପୋଥି ମିଳାଇ ସୂକ୍ଷ୍ମ ଭାବରେ ଆଲୋଚନା କରିଅଛନ୍ତି ଏବଂ ମୂଳ ସଂସ୍କୃତ ଓ ହିନ୍ଦୀ, ବଙ୍ଗଳା, ତୈଲଙ୍ଗ ଭାଷାର ମହାଭାରତ ସଙ୍ଗେ ତୁଳନା କରି ଏହାର ଉତ୍କର୍ଷାପକର୍ଷ ନିର୍ଦ୍ଦେଶ କରିଅଛନ୍ତି, ତାକୁ ଏମାନେ ଅକୁଣ୍ଠିତ ଚିତ୍ତରେ ଉପହାସରେ ଉଡ଼ାଇଦେବାକୁ ଉଦ୍ୟତ ।" ପରିଶେଷରେ ସମ୍ପାଦକ ମହୋଦୟ ସେହି ସଂଖ୍ୟାରେ ସ୍ୱମତ ଉପସ୍ଥାପନ କରି ଲେଖିଛନ୍ତି - "ନନ୍ଦ ମହାଶୟ ଯେ ଉତ୍କଳ ଖଣ୍ଡର ସାହିତ୍ୟ କ୍ଷେତ୍ରରେ ଜଣେ ନିଷ୍ଠାପର ସାଧକ, ତାଙ୍କର ମହାଭାରତ ସମାଲୋଚନା ତାହାର ଜ୍ୱଳନ୍ତ ସାକ୍ଷୀ ।"

ଉତ୍କଳ ସେବକ ପତ୍ରିକାର ସମ୍ପାଦକ ମଧ୍ୟ ପତ୍ରିକାର ୪ର୍ଥ ଭାଗ ନବମ ସଂଖ୍ୟାରେ ଉଲ୍ଲେଖ କରିଛନ୍ତି - "ଉତ୍କଳ ସାହିତ୍ୟରେ ପ୍ରକାଶିତ ଭାରତର ସମାଲୋଚନା ତାଙ୍କର ଗବେଷଣା ଶକ୍ତିର ସୁନ୍ଦରତମ ନିଦର୍ଶନ ।" ଉତ୍କଳଗୌରବ ମଧୁବାବୁ ଏବଂ ଉତ୍କଳମଣି ଗୋପବନ୍ଧୁ ମଧ୍ୟ ଏହି କୃତିର ଭୂୟସୀ ପ୍ରଶଂସା କରି ସ୍ୱମତ ଉପସ୍ଥାପନ କରିଛନ୍ତି ।

ଉତ୍କଳଗୌରବ ଜଷ୍ଟିସ୍ ଦାସ୍ ମହୋଦୟ ୧୯୧୫ ଖ୍ରୀଷ୍ଟାବ୍ଦ ଅଗଷ୍ଟ ୧୮ ତାରିଖ ଦିନ କଟକ ଠାରୁ ଏକ ପତ୍ର ଦ୍ୱାରା ଜଣାଇଛନ୍ତି - "I have gone through the review of Sarala Das's Oriya Mahabharat which appeared from time to time in the "Utkal Sahitya" Magazine. It does much credit to its author, Pandit Gopinath Nanda of the Parlakimedi Raja's College and I have no hesitation in thinking that if it appears in the form of a book it can be profitably read by Oriya students preparing for the Intermediate and B.A. degree Examinations, as affording a good model of style as well as many useful informations."

ଉତ୍କଳଗୌରବ ମଧୁସୂଦନ ଦାସଙ୍କ ଉପରୋକ୍ତ ସ୍ୱପ୍ନକୁ ସାର୍ଥକ କରି ଏହି ଗ୍ରନ୍ଥଟି "ଭାରତ ଦର୍ପଣ" ନାମରେ ୧୯୨୮ ଖ୍ରୀଷ୍ଟାବ୍ଦରେ ପୁସ୍ତକାକାରରେ ପ୍ରକାଶ ପାଇଥିଲା । ୧୯୬୪ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ସାହିତ୍ୟ ଏକାଡେମୀ ଏହାର ପୁନଃ ମୁଦ୍ରଣ କରିଅଛନ୍ତି । ଏତଦ୍‌ବ୍ୟତୀତ ପଣ୍ଡିତ ନନ୍ଦ, ଜଗନ୍ନାଥ ଦାସଙ୍କ ଭାଗବତ ଏବଂ ବଳରାମ ଦାସଙ୍କ ଦାଣ୍ଡିରାମାୟଣ ସମ୍ବନ୍ଧରେ ସମାଲଚନାତ୍ମକ ପ୍ରବନ୍ଧ ମାନ ଲେଖି ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ କରିଥିଲେ ।

ପଣ୍ଡିତ ଗୋପୀନାଥ ନନ୍ଦଙ୍କ ବହୁମୁଖୀ ପ୍ରତିଭା ଏବଂ ଅସାଧାରଣ ପାଣ୍ଡିତ୍ୟ ସର୍ବଭାରତୀୟ ସ୍ତରରେ ଆଦୃତ ପଣ୍ଡିତ ମଣ୍ଡଳୀଙ୍କୁ ମଧ୍ୟ ମୁଗ୍ଧ କରିଥିଲା । ଫଳତଃ, ୧୯୨୦ ଖ୍ରୀଷ୍ଟାବ୍ଦରେ ମାନ୍ଦ୍ରାଜ୍‌ର ସର୍ବଭାରତୀୟ ପଣ୍ଡିତ ମହାସମ୍ମିଳନୀ ଆନୁକୂଲ୍ୟରେ ପ୍ରିନ୍‌ସ୍ ଅଫ୍ ୱେଲ୍‌ସ୍‌ଙ୍କ ଦ୍ୱାରା ପଣ୍ଡିତ ନନ୍ଦଙ୍କୁ "କାଇଜର୍-ଇ-ହିନ୍ଦ୍" ଉପାଧିରେ ଭୂଷିତ କରି ସମ୍ମାନିତ କରାଯାଇଥିଲା । ଏହି ଗୌରବ, ପଣ୍ଡିତ ନନ୍ଦଙ୍କ ସାଧନାମୟ ଜୀବନର ଏକ ଫଳପ୍ରଦ ଦୃଷ୍ଟାନ୍ତ ମାତ୍ର ।

ସ୍ଥାନୀୟ ରାଜାସ୍ କଲେଜ୍‌ର ସଂସ୍କୃତ ଏବଂ ଓଡ଼ିଆ ହେଡ୍ ପଣ୍ଡିତ ଭାବେ, ୧୯୨୩ ଖ୍ରୀଷ୍ଟାବ୍ଦରେ ଗୋପୀନାଥ ନନ୍ଦଙ୍କ କର୍ମମୟ ଜୀବନର ସମାପ୍ତି ଘଟିଥିଲା । ୧୯୨୪ ଖ୍ରୀଷ୍ଟାବ୍ଦ ଜାନୁୟାରୀ ୧୪ ତାରିଖ, ରାତ୍ର ପ୍ରାୟ ୧୨ ଘଣ୍ଟା ସମୟରେ ସେ ଏହି ଇହସଂସାରରୁ ମଧ୍ୟ ଅବସର ନେଇଥିଲେ । ଶୁଣାଯାଏ, ଅତ୍ୟଧିକ ରକ୍ତଚାପ ଯୋଗୁଁ ମୁଖଦ୍ୱାରରୁ ରକ୍ତସ୍ରାବ ହୋଇ ତାଙ୍କର ପ୍ରାଣବାୟୁ ଉଡ଼ିଯାଇଥିଲା । ଅତ୍ୟନ୍ତ ପରିତାପର ବିଷୟ ଏହିଯେ, ପଣ୍ଡିତ ନନ୍ଦଙ୍କର ସର୍ବଶ୍ରେଷ୍ଠ କୃତି ଓଡ଼ିଆ ଭାଷାତତ୍ତ୍ୱ ତାଙ୍କ ଜୀବଦ୍ଦଶାରେ ପ୍ରକାଶନରୁ ବଞ୍ଚିତ ହୋଇଥିଲା । ସେ ଆଜି ନାହାନ୍ତି ସତ, ତଥାପି ତାଙ୍କ ସାଧନା ପ୍ରସୂତ ଗ୍ରନ୍ଥ ସମୂହ ସଦେ ଓଡ଼ିଆ ଜାତିର ପ୍ରାଣରେ ନବଜୀବନ ସଞ୍ଚାର କରୁଥିବ, ଏଥିରେ ଟିକେହେଁ ସନ୍ଦେହ ନାହିଁ ।

ଉତ୍କଳମଣି ଗୋପବନ୍ଧୁ ସତ୍ୟବାଦୀ ମାସିକ ପତ୍ରିକାର ପ୍ରଥମ ଭାଗ ୮ମ ଓ ୯ମ ମିଶ୍ରିତ ସଂଖ୍ୟାରେ ପଣ୍ଡିତ ନନ୍ଦଙ୍କ ସମ୍ବନ୍ଧରେ ଯଥାର୍ଥରେ ଲେଖିଥିଲେ - "ସାହିତ୍ୟ କ୍ଷେତ୍ରରେ ଅବଶ୍ୟ ଆଉ କେତେକଙ୍କର ଉଦ୍ୟମ ଦେଖାଯାଉଅଛି, ମାତ୍ର ନୈଷ୍ଠିକ ସାଧନା ଅତି ଅଳ୍ପଙ୍କର ଅଛି । ସେମାନଙ୍କ ମଧ୍ୟରେ ପାରଳାର ପଣ୍ଡିତ ଶ୍ରୀଗୋପୀନାଥ ନନ୍ଦ ମହାଶୟଙ୍କ ନାମ ଉଲ୍ଲେଖଯୋଗ୍ୟ। ନାମରେ ପ୍ରୟାସ ନାହିଁ, ଅର୍ଥରେ ପିପାସା ନାହିଁ, ନିନ୍ଦାସ୍ତୁତି ପ୍ରତି ଭ୍ରୁକ୍ଷେପ ନାହିଁ । ଅନନ୍ୟ ଚିତ୍ତରେ କେବଳ ସାହିତ୍ୟ ନିମନ୍ତେ ସାହିତ୍ୟର ଅନୁଶୀଳନ ନନ୍ଦ ମହାଶୟଙ୍କର ବ୍ରତ ହୋଇଅଛି । ସାହିତ୍ୟରେ ଯେଉଁ ବିଭାଗରେ ସେ କାର୍ଯ୍ୟ କରୁଅଛନ୍ତି, ଅବିଶ୍ରାନ୍ତ ଏବଂ ସାଧନା ବିନା ସେଥିରେ କୃତିତ୍ୱ ଲାଭ କରିବା ସହଜ ନୁହେଁ ।"

୧୯୧୫ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ୩ ତାରିଖ ଦିନ ଲିଖିତ ଏକ ଚିଠିରେ ମଧ୍ୟ ପଣ୍ଡିତ ନନ୍ଦଙ୍କ ପ୍ରତି ଉତ୍କଳମଣି ଗୋପବନ୍ଧୁଙ୍କ ଅନ୍ତର୍ନିହିତ ଭାବାବେଗ ପରିସ୍ଫୁଟ ହୋଇଥାଏ । ସେଥିରେ ସେ ଲେଖିଥିଲେ - "ଆପଣଙ୍କୁ କହିବାର ସଙ୍ଗତ ନୁହେଁ, କିନ୍ତୁ ଏହା ଯଥାର୍ଥରେ ପ୍ରାଣର କଥାଯେ, ଯେତେବେଳେ ଓଡ଼ିଶାର ଚାରିଆଡ଼କୁ ଚାହୁଁ, ସାହିତ୍ୟ କ୍ଷେତ୍ରରେ ଏକମାତ୍ର ନୀରବ ସାଧକ ବୋଲି

ଆପଣଙ୍କର ଉପରେ ଆଖି ପଡ଼େ । ଦୂରରୁ ମନେ ମନେ ଆମେମାନେ ନମସ୍କାର କରୁ । ଆପଣଙ୍କର ନିଷ୍ଠା ଓ ନିରଭିମାନତା ଆମମାନଙ୍କର ନିତ୍ୟସ୍ମରଣୀୟ । " ପଣ୍ଡିତନନ୍ଦଙ୍କ ସମ୍ବନ୍ଧରେ ଏହି ସମ୍ମାନସୂଚକ ଭାବ ଓଡ଼ିଆ ଜାତିର କଦାପି ବିସ୍ମୃତ ହେବନାହିଁ ।

ଓଡ଼ିଆ ଭାଷା ଆନ୍ଦୋଳନର ଜଣେ ମହାରଥୀ ଭାବେ ପଣ୍ଡିତ ଗୋପୀନାଥ ନନ୍ଦ ଓଡ଼ିଆ ଜାତିର ସ୍ୱତନ୍ତ୍ରତା ପ୍ରତିପାଦିତ କରିଥିଲେ । ଏତଦ୍ୱାରା ପଡ଼ୋଶୀ ବଙ୍ଗୀୟ ଏବଂ ତୈଲଙ୍ଗମାନଙ୍କ ଓଡ଼ିଆ ଭାଷା ବିରୋଧୀ ଆନ୍ଦୋଳନକୁ ସମାପ୍ତ କରି ସେମାନଙ୍କର କଣ୍ଠରୋଧ କରିବାରେ ସେ ସକ୍ଷମ ହୋଇଥିଲେ । ଜାତୀୟ ସାହିତ୍ୟ ଏକାଡ଼େମୀ ଆନୁକୂଲ୍ୟରେ ପ୍ରକାଶିତ "ଓଡ଼ିଆ ସାହିତ୍ୟ ଇତିହାସ "ରେ ଏଥିକୁ ପୂର୍ଣ୍ଣପ୍ରାଣରେ ସ୍ୱୀକାର କରି ଡ଼କ୍ଟର୍ ମାନସିଂହ ଲେଖିଛନ୍ତି - "ଆଧୁନିକ ଯୁଗରେ ଫକୀରମୋହନଙ୍କ ପରେ ସାହିତ୍ୟସେବା ନିମିତ୍ତ ଜାତିର ଅଯାଚିତ ସମ୍ମାନ ଓ ଅକୃତ୍ରିମ ଭକ୍ତି ପାଇବାକୁ ଯୋଗ୍ୟ ହେଉଛନ୍ତି ପାରଳାଖେମୁଣ୍ଡିର ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା ।" ତେଣୁ, ବାସ୍ତବରେ ଓଡ଼ିଆ ଭାଷାକୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ପ୍ରଦାନ କରିବା ନିମନ୍ତେ ପଣ୍ଡିତ ନନ୍ଦଙ୍କର ଏହି ସାଧନାମୟ ଜୀବନ ଓଡ଼ିଆ ସାହିତ୍ୟ ଇତିହାସର ଏକ ସୁବର୍ଣ୍ଣ ଅଧ୍ୟାୟ ।

- - -



# ନାଟ୍ୟକାର ଅପନ୍ନା ପରିଛା

ପରିଛା ବଂଶ, ବୈଷ୍ଣବମତାବଲମ୍ବୀ ଏବଂ ପାରଳାଖେମୁଣ୍ଡିର ଗୋଟିଏ ବିଶିଷ୍ଟ ରାଜ ସମ୍ମାନିତ ବଂଶ ରୂପେ ଖ୍ୟାତି ଲାଭ କରିଥିଲା । ସେହି ବଂଶରେ ଅପନ୍ନା ପରିଛା ୧୮୭୯ ଖ୍ରୀଷ୍ଟାବ୍ଦ ମେ ମାସ ୨୨ ତାରିଖରେ ରାଜଗୁରୁ ସହିତରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ଲକ୍ଷ୍ମୀନାରାୟଣ ଏବଂ ମାତାଙ୍କ ନାମ ରାଜମଣି ।

ସେ ଏକାଧାରରେ ଥିଲେ ଜଣେ କବି ଏବଂ ନାଟ୍ୟକାର । ଜଣେ ଉଚ୍ଚକୋଟୀର ଅଭିନେତା ଭାବେ ମଧ୍ୟ ତାଙ୍କର ବିଶେଷ ଖ୍ୟାତି ରହିଥିଲା । ଯୁବକ ମାନଙ୍କ ମଧ୍ୟରେ ସାଂସ୍କୃତିକ ଚେତନା ଜାଗ୍ରତ କରିବାରେ ସେ ଏକ କେନ୍ଦ୍ର ବିନ୍ଦୁ ଥିଲେ ।

ସହିତ୍ୟିକ ଅପନ୍ନା ପରିଛାଙ୍କ ଛାତ୍ର ଜୀବନ ପାରଳାଖେମୁଣ୍ଡିର ଗୋଟିଏ ଚାଟଶାଳୀରେ ଆରମ୍ଭ ହୋଇଥିଲା । ପରବର୍ତ୍ତୀ ସମୟରେ, ସ୍ଥାନୀୟ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ତାହାଙ୍କ ଶିକ୍ଷା ସମାପ୍ତ ହେଲା । କିନ୍ତୁ ତୁଳସୀ ଦୁଇପତ୍ରରୁ ବାସିଲା ପରି, ଆବାଲ୍ୟରୁ ତାଙ୍କର ପ୍ରତିଭା ବିକଶିତ ହୋଇଥିଲା । କଠୋର ଅଧ୍ୟବସାୟ ଏବଂ ପଠନ ସ୍ପୃହା ତାଙ୍କ ପ୍ରତିଭାକୁ ପରିମାର୍ଜିତ କରିଥିଲା । ଫଳରେ ଓଡ଼ିଆ, ସଂସ୍କୃତ, ବଙ୍ଗଳା ଏବଂ ଇଂରାଜୀ ଭାଷାରେ ସେ ବିଶେଷ ଜ୍ଞାନ ଲାଭ କରିଥିଲେ ।

"ଚନ୍ଦ୍ରହାସ", ଅପନ୍ନା ପରିଛାଙ୍କ ଛାତ୍ର ଜୀବନରେ ଲିଖିତ ପ୍ରଥମ ନାଟକ । ଜୈମିନୀ ଭାରତର ଚନ୍ଦ୍ରହାସ-ବିଷୟା ପରିଣୟ ପ୍ରସଙ୍ଗକୁ ଅବଲମ୍ବନ କରି ଏହା ରଚିତ ହୋଇଛି । ପ୍ରାବନ୍ଧିକ ଶ୍ୟାମସୁନ୍ଦର ରାଜଗୁରୁଙ୍କ ପୃଷ୍ଠପୋଷକତାରେ ତାହା ସ୍ଥାନୀୟ ରାଜଗୁରୁ ସହିତରେ ଅଭିନୀତ ହୋଇଥିଲା । ତଦ୍‌ବଧି ସେ ଯୁବକ ଅପନ୍ନା ପରିଛାଙ୍କୁ ନାଟକ ରଚନା ପ୍ରତି ଉତ୍ସାହିତ କରିଥିଲେ । ଘଟଣା ପ୍ରବାହରେ ପାରଳାଖେମୁଣ୍ଡିର ରାଜାସାହେବ୍ ଗୌରଚନ୍ଦ୍ର ଗଜପତି ଏବଂ ରାଜଭ୍ରାତ ପଦ୍ମନାଭ ଗଜପତିଙ୍କ ପ୍ରେରଣା ମଧ୍ୟ ସେ ଲାଭ କରିଥିଲେ ।

ରାଜଭ୍ରାତା ପଦ୍ମନାଭ ଗଜପତିଙ୍କର, ଅପନ୍ନା ପରିଛାଙ୍କ ପ୍ରତି ଅସୀମ ଶ୍ରଦ୍ଧା ରହିଥିଲା । ଓଡ଼ିଆ ସହିତ୍ୟ ଏବଂ ସଂସ୍କୃତିର ବିକାଶ ନିମନ୍ତେ ଦୁହିଁଙ୍କ ମଧ୍ୟରେ ବହୁ ସମୟ ଧରି ଆଲୋଚନା ହୁଏ । ନାଟକ ରଚନା ପ୍ରତି ଏବଂ ନାଟ୍ୟଦଳ ସଙ୍ଗଠିତ କରିବା ନିମନ୍ତେ, ସେ ଯୁବକ ପରିଛାଙ୍କୁ ଉତ୍ସାହିତ କରିଥିବା ଜଣାଯାଏ । କେବଳ ସହିତ୍ୟ ନୁହେଁ, ରାଜନୀତି କ୍ଷେତ୍ରରେ ମଧ୍ୟ ଦୁହିଁଙ୍କର

ଅତି ନିବିଡ଼ ସମ୍ପର୍କ ରହିଥିଲା । ୧୮୯୫ ଖ୍ରୀଷ୍ଟାବ୍ଦ ଡ଼ିସେମ୍ବର ମାସରେ, ଯୁବକ ପରିଛାଙ୍କୁ ନେଇ ସେ ପୁନାନଗର ଯାତ୍ରା କରିଥିଲେ । ଏଥିରୁ ଅପନ୍ନା ପରିଛାଙ୍କ ରାଜନୈତିକ ଚିନ୍ତାଧାରାର ବିକାଶ ଘଟିଥିବା ବିଷୟଂଶ ଆଭାସ ମିଳେ ।

ଛାତ୍ର ଜୀବନର ଅବସାନ ପରେ, ସ୍ଥାନୀୟ ବଡ଼ବ୍ରାହ୍ମଣ ସାହିର ସୁଭଦ୍ରା ଦେବୀ ନାମ୍ନୀ ଜଣେ କନ୍ୟାଙ୍କର ସେ ପାଣିଗ୍ରହଣ କରିଥିଲେ । ଏହିଠାରୁ ତାଙ୍କର କର୍ମମୟ ଜୀବନ ପ୍ରାରମ୍ଭ ହୋଇଥିଲା ।

ଚାକିରି କରିବାକୁ ତାଙ୍କୁ ଯେତେବେଳେ କୁହାଗଲା,ସେ ତାହା ସମ୍ପୂର୍ଣ୍ଣ ରୂପେ ପ୍ରତ୍ୟାଖ୍ୟାନ କରିଥିଲେ । ପରାଧୀନ ଭାରତରେ ବ୍ରିଟିଶ୍ ପ୍ରଭୁତ୍ୱର ଗୋଲାମ୍ ହୋଇ ରହିବାକୁ ସେ ପସନ୍ଦ କରିନଥିଲେ । ଅନ୍ୟର ନିର୍ଭରଶୀଳ ନହୋଇ ନିଜର ସ୍ଥିତି ଦୃଢ଼ କରିପାରିଥିବା ଦୃଷ୍ଟାନ୍ତ, ତାଙ୍କ କର୍ମମୟ ଜୀବନରେହିଁ ଦୃଷ୍ଟିଗୋଚର ହୋଇଥାଏ । ଏହା ତାଙ୍କ ଗଭୀର ଦେଶଭକ୍ତିର ଏକ ସ୍ପଷ୍ଟ ପ୍ରତିଫଳନ ।

ପରିଛା ବଂଶର ଇଷ୍ଟ ଦେବତା ରସିକରାଜଙ୍କ ଗୋଟିଏ ମନ୍ଦିର ଗୃହର ଅନତି ଦୂରରେ ରହିଥାଏ । ସେହି ମନ୍ଦିର ପାର୍ଶ୍ୱରେ ପାରଳାଖେମୁଣ୍ଡି ରାଜାଙ୍କ ପ୍ରଦତ୍ତ ଦାନ ଭୂମି ମଧ୍ୟ ବିଶେଷ ପରିମାଣରେ ରହିଥିଲା । ସେସବୁର ପରିଚାଳନା ଭାର ଅପନ୍ନା ପରିଛା ଗ୍ରହଣ କରିଥିଲେ । ତାଙ୍କର ନିଷ୍ଠା ଏବଂ କାର୍ଯ୍ୟଦକ୍ଷତା ଯୋଗୁଁ, ସେ ରାଧାକାନ୍ତ ମଠର ପରିଚାଳନା ଭାର ମଧ୍ୟ ଗ୍ରହଣ କରିଥିଲେ ।

କିନ୍ତୁ କର୍ମମୟ ଜୀବନର ବହୁବିଧ ଜଞ୍ଜାଳ ମଧ୍ୟରେ, ସାହିତ୍ୟସାଧନାକୁ ସେ ନିଜ ଜୀବନର ବ୍ରତ ଭାବେ ଗ୍ରହଣ କରିନେଇଥିଲେ। ଅପନ୍ନା ପରିଛାଙ୍କ ଏତାଦୃଶ ସାହିତ୍ୟାନୁରାଗ ଏବଂ ସାଂସ୍କୃତିକ ଚେତନାରେ ପରମ ପ୍ରୀତ ହୋଇ ପାରଳାଖେମୁଣ୍ଡି ମହାରାଜା ସ୍ଥାନୀୟ ପଦ୍ମନାଭ ରଙ୍ଗାଳୟର ପ୍ରଧାନ ପରିଚାଳକ ରୂପେ ତାଙ୍କୁ ନିଯୁକ୍ତ କରିଥିଲେ । ୧୯୧୪ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ନିଷ୍ଠା ଏବଂ ଦକ୍ଷତାର ସହ, ସେ ଏହି କାର୍ଯ୍ୟ ପରିଚାଳନା କରିଛନ୍ତି ।

ଅପନ୍ନା ପରିଛାଙ୍କ କର୍ମରେ ନିଷ୍ଠା ଏବଂ ଦକ୍ଷତାର ଅଭାବ ନଥିଲା । କିନ୍ତୁ ତାଙ୍କ କର୍ମପଥରେ ଯଦି କୌଣସି ପ୍ରତିବନ୍ଧକ ସୃଷ୍ଟି କରାଯାଏ, ସେ ତାହା ସହ୍ୟ କରିପାରୁନଥିଲେ । ସେ ଥିଲେ ଜଣେ ସ୍ୱାଧୀନଚେତା ବ୍ୟକ୍ତି । ଜିଦ୍‌ଖୋର୍ ମନୋବୃତ୍ତି ତାଙ୍କ ଚରିତ୍ରର ଏକ ମୁଖ୍ୟସ୍ଥାନ ଅଧିକାର କରିଥିଲା । ଏହି ପରିପ୍ରେକ୍ଷୀରେ, ତାଙ୍କ ଜୀବନର ଏକ ଘଟଣା ଉଲ୍ଲେଖଯୋଗ୍ୟ ମନେ ହୁଏ ।

୧୯୧୪ ଖ୍ରୀଷ୍ଟାବ୍ଦ । ପାରଳାଖେମୁଣ୍ଡିରେ ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ ଅନୁଷ୍ଠିତ ହେଉଥାଏ । ସମ୍ମିଳନୀରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ବହୁ ସାହିତ୍ୟିକ ଏବଂ ନେତା ଏକତ୍ରିତ ହୋଇଥାନ୍ତି । ସେହି ସମୟରେ ସ୍ଥାନୀୟ ରଙ୍ଗାଳୟ ପକ୍ଷରୁ ଅପନ୍ନା ପରିଛାଙ୍କ ଉଦ୍ୟମରେ କେତୋଟି ନାଟକ ଅଭିନୀତ ହୋଇଥିଲା । ପାରଳାଖେମୁଣ୍ଡିର ସଙ୍ଗୀତ ଏବଂ ସାଂସ୍କୃତିକ ଉତ୍କର୍ଷତା ପ୍ରମାଣିତ କରିବା ଏଥିର ମୁଖ୍ୟ ଉଦ୍ଦେଶ ଥିଲା । କାରଣ, ଏଠାର ନାଟକର ଭାଷା, ଦକ୍ଷିଣରେ ପ୍ରଚଳିତ ଗ୍ରାମ୍ୟଭାଷା ବୋଲି ଉତ୍ତର ଓଡ଼ିଶାର କେତେକ ସାହିତ୍ୟିକ ସେହି ସମୟରେ ଆକ୍ଷେପ କରୁଥିଲେ । କିନ୍ତୁ ସମ୍ମିଳନୀ ପରେ କୌଣସି କାରଣରୁ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ସହ ତାଙ୍କର ମତାନ୍ତର ହୋଇଥିଲା । ତେଣୁ ସ୍ଥାନୀୟ ରଙ୍ଗାଳୟର ଦାୟିତ୍ୱ ଭାର ଗ୍ରହଣ କରିବାକୁ ସେ ଅନିଚ୍ଛା ପ୍ରକାଶ କରିଥିଲେ ।

ପଦ୍ମନାଭ ରଙ୍ଗାଳୟରୁ ବିଦାୟ ନେଇ, ଅପନ୍ନା ପରିଛା ନିଜ କର୍ତ୍ତବ୍ୟ ପଥରୁ ବିଚ୍ୟୁତ ହୋଇନଥିଲେ । ସେ ନିଜ ମଠରେ ଗୋଟିଏ ଯାତ୍ରାଦଳ ଗଠନ କରିଥିଲେ । ତେବେଷି ସେ ନିରବଚ୍ଛିନ୍ନ ଭାବେ ଅତି ନିଷ୍ଠାପରତାର ସହ ନାଟ୍ୟଦଳକୁ ସଙ୍ଗଠିତ କରି ବହୁ ଯୁବକଙ୍କ ମନରେ ସାଂସ୍କୃତିକ ଚେତନା ଆଣିଦେଇଥିଲେ । ତାଙ୍କର ସମବୟସ୍କ ବଳଭଦ୍ର ଦାସ୍, ସୀମାଦ୍ରୀ ପଣ୍ଡା, ଦୟାନିଧି ପଟ୍ଟନାୟକ, କୃପାସିନ୍ଧୁ ପଟ୍ଟନାୟକ ପ୍ରଭୃତି କଳାକାର ମାନେ ତାହାଙ୍କ ଶିଷ୍ୟତ୍ୱ ଗ୍ରହଣ କରି, ନାଟ୍ୟଶାଳାରେ ପ୍ରସିଦ୍ଧି ଲାଭ କରିଥିଲେ ।

ଯୁବକମାନଙ୍କ ଚେତନାର ବିକାଶ ନିମନ୍ତେ, ଅପନ୍ନା ପରିଛାଙ୍କର ସହାନୁଭୂତିଶୀଳ ଏବଂ ଦୟାଳୁ ମନୋଭାବ ବର୍ତ୍ତମାନ ଯାଏ କେତେକଙ୍କ ମନରୁ ବିସ୍ମୃତି ହୋଇନାହିଁ । ସ୍ଥାନୀୟ ସ୍କୁଲ କଲେଜ୍‌ର ବହୁ ଗରୀବ ଛାତ୍ରଙ୍କ ପାଇଁ ତାଙ୍କ ମଠରେ ରହିବା ଏବଂ ଖାଇବା ବ୍ୟବସ୍ଥା କରି, ସେମାନଙ୍କ ଅଧ୍ୟୟନ ପ୍ରତି ସେ ବିଶେଷ ଦୃଷ୍ଟି ଦେଉଥିଲେ । ଏତଦ୍‌ବ୍ୟତୀତ, ସେ ବହୁ ସଙ୍ଗୀତପ୍ରେମୀଙ୍କୁ ସ୍ୱଆଶ୍ରିତରେ ରଖି ଶିକ୍ଷାର ବ୍ୟବସ୍ଥା କରିଥିଲେ । ଓଡ଼ିଶାର ପ୍ରସିଦ୍ଧ ଗାୟକ ଏବଂ ସଙ୍ଗୀତଜ୍ଞ ନାରାୟଣ ସଦେଇ ତାହାଙ୍କ ସାହାଯ୍ୟ ପାଇ ସଙ୍ଗୀତ ଶିକ୍ଷା କରିଥିବା ଜଣାଯାଏ । ତାଙ୍କ ଶିକ୍ଷା ପାଇଁ ସୁପ୍ରସିଦ୍ଧ ଗାୟକ ଅପନ୍ନା ପାଣିଗ୍ରାହୀଙ୍କୁ ପରିଛା ମଠରେ ନିଯୁକ୍ତି କରାଯାଇଥିଲା ।

ପରିଛା ମଠ ଓଡ଼ିଶାର ସାହିତ୍ୟିକ ଏବଂ ନେତୃବୃନ୍ଦଙ୍କ ଗୋଟିଏ ପ୍ରଧାନ ପୀଠସ୍ଥଳ ଥିଲା । ବଙ୍ଗଳାର ପ୍ରସିଦ୍ଧ ଲେଖକ ବଙ୍କିମଚନ୍ଦ୍ରଙ୍କ ଆନନ୍ଦ ମଠ ନାମକ ଉପନ୍ୟାସର ଆଦର୍ଶରେ ପାରଳାଖେମୁଣ୍ଡିର ରସିକରାଜ ମଠ ଓଡ଼ିଶାରେ ପ୍ରସିଦ୍ଧି ଲାଭ କରିଥିଲା କହିଲେ ଅତ୍ୟୁକ୍ତି ହେବନାହିଁ

। ଏହି ମଠର ପାର୍ଶ୍ୱକୁ ଲାଗି ଯେଉଁ ଦୋତାଲା ଘରଟି ରହିଛି, ସେଥିର ଉପରମହଲା ହିଁ ଅପର୍ଣ୍ଣା ପରିଡ଼ାଙ୍କ ବୈଠକ ଖାନା ଏବଂ ଲାଇବ୍ରେରୀ । ସେହି ଗ୍ରନ୍ଥାଗାରରେ ବହୁ ବଙ୍ଗଳା ନାଟକ, ଉପନ୍ୟାସ ଏବଂ ପୁରାଣ ସଞ୍ଚିତ ଥିଲା । ସେଥିରୁ ପୁସ୍ତକ ଗୁଡ଼ିକ ପାଠ କରି ଅନେକ ସାହିତ୍ୟପ୍ରେମୀ ନାଟକ ଏବଂ କାବ୍ୟ ଲେଖିବାକୁ ଉତ୍ସାହିତ ହୋଇଥିଲେ। ମଠରେ ପ୍ରତ୍ୟହ ସନ୍ଧ୍ୟା ସମୟରେ ଶିକ୍ଷିତ ଓଡ଼ିଆ ମାନଙ୍କ ସମାବେଶରେ ଓଡ଼ିଆ ସାହିତ୍ୟ, ସଂସ୍କୃତି, ସଙ୍ଗୀତ, ରାଜନୀତି ଏବଂ ସମାଜ ସମ୍ବନ୍ଧରେ ଚର୍ଚ୍ଚା ହେଉଥାଏ । ଏହି ମଠକୁ ପଣ୍ଡିତ ଗୋପବନ୍ଧୁ ଦାସ୍ ଓଡ଼ିଆ ଜାତୀୟତା ଏବଂ ଜ୍ଞାନଚର୍ଚ୍ଚାର ପୀଠ ବୋଲି ଭାବିଥିଲେ । ଏହି ଅଞ୍ଚଳର ଓଡ଼ିଆ ଜାତିକୁ ଉଦ୍‌ବୁଦ୍ଧ କରିବାପାଇଁ ପାରଳାଖେମୁଣ୍ଡି ଆସିଲେ, ସେ ରସିକରାଜ ମଠରେ ହିଁ ରହୁଥିଲେ । ପଣ୍ଡିତ ନୀଳକଣ୍ଠ ଦାସ୍, ଗୋଦାବରୀଶ ଏବଂ ପ୍ରଚାରକ ଅନନ୍ତ ମିଶ୍ର ମଧ୍ୟ ସେଥିରୁ ବାଦ୍ ଯାଇନଥିଲେ । ଏସବୁର ମୂଳରେ ଅପର୍ଣ୍ଣା ପରିଡ଼ାଙ୍କ ବଳିଷ୍ଠ ବ୍ୟକ୍ତିତ୍ୱହିଁ ସମ୍ଭବ ହୋଇପାରିଥିଲା । ସେ ମିଷ୍ଟଭାଷୀ, ସୁଶୀଳ, ବନ୍ଧୁବତ୍ସଳ, ସାହିତ୍ୟାନୁରାଗୀ, ଦେଶପ୍ରେମୀ, ଉନ୍ନତ କଳାକାର ଏବଂ ସାମାଜିକ କ୍ଷେତ୍ରରେ ଜଣେ ଉଚ୍ଚକୋଟୀର ଗଣ୍ୟମାନ୍ୟ ବ୍ୟକ୍ତି ଭାବେ ସମସ୍ତଙ୍କ ଠାରେ ପରିଚିତ ଥିଲେ ।

ମୁଖ୍ୟତଃ ଜଣେ ଶ୍ରେଷ୍ଠ ସାହିତ୍ୟିକ ଭାବେ ଅପର୍ଣ୍ଣା ପରିଡ଼ାଙ୍କ ଅବଦାନ ଅତୁଳନୀୟ । ସେ ଉତ୍କଳ ସାହିତ୍ୟରେ ହସ୍ତକ୍ଷେପ କରି ବହୁ କାବ୍ୟକବିତା ଏବଂ ନାଟକ ରଚନା କରିଛନ୍ତି । ତାହାଙ୍କ କୃତ "ଚନ୍ଦ୍ରହାସ" ନାଟକ ସମ୍ବନ୍ଧରେ ଏଥି ପୂର୍ବେ ସୂଚନା ଦିଆଯାଇଛି । ଏତଦ୍‌ବ୍ୟତୀତ, ସେ "ଚଞ୍ଚଳକୁମାରୀ", "ହେମଚନ୍ଦ୍ର", "କନୌଜକୁମାରୀ", "ସ୍ୱର୍ଣ୍ଣଲତା", "ହେମଲତା" ଏବଂ "ବିଜୟବସନ୍ତ" ନାଟକ ରଚନା କରିଥିବା ଜଣାଯାଏ । ପରିଡ଼ା ମହୋଦୟଙ୍କ ପଦ୍ୟକୃତି ଗୁଡ଼ିକ ମଧ୍ୟରେ ନବାନୁରାଗ, ଗୋଷ୍ଠମିଳନ, ନବରହସ୍ୟ, କାଳୀୟଦଳନ, ନବଲୀଳା ବିଳାସ ଏବଂ ସୀତା ବନବାସ ଅନ୍ୟତମ । କିନ୍ତୁ ଉପରୋକ୍ତ ପ୍ରଣୀତ କାବ୍ୟକବିତା ଏବଂ ନାଟକାଦି ମଧ୍ୟରୁ କେବଳ "ବିଜୟବସନ୍ତ" ନାଟକ ଏବଂ "ନବାନୁରାଗ" ପ୍ରକାଶ ପାଇଥିବା ଜଣାଯାଏ । ଏସବୁ କୃତି ଅପର୍ଣ୍ଣା ପରିଡ଼ାଙ୍କ ଅସୀମ ପାଣ୍ଡିତ୍ୟ ଏବଂ ଐଶ୍ୱରିକ ପ୍ରତିଭାର ପ୍ରମାଣ ଦେବା ସଙ୍ଗେ ସଙ୍ଗେ, ରାଜପୁତ ବୀରବୀରାଙ୍କ ସମ୍ବନ୍ଧୀୟ ତାଙ୍କର କେତୋଟି ଐତିହାସିକ ନାଟକ, ତାହାଙ୍କ ଦେଶାତ୍ମବୋଧର ସ୍ପଷ୍ଟ ପରିଚୟ ପ୍ରଦାନ କରେ । ଏହିପରି ଭାବେ, ସାହିତ୍ୟ ସାଧନା ରୂପକ ପରମ ମାନବିକ କର୍ତ୍ତବ୍ୟ ମାଧ୍ୟମରେ ସେ ଅହରହ ଅସୀମ ଆନନ୍ଦ ଅନୁଭବ କରିପାରିଥିବା ଜଣାଯାଏ ।

କିନ୍ତୁ ଅପର୍ଣ୍ଣା ପରିଡ଼ାଙ୍କ ଶେଷ ଜୀବନ ସୁଖରେ କଟିନଥିଲା । ପାରିବାରିକ କଳହ ଏବଂ ମାଲି ମକଦ୍ଦମା ହେତୁ ମଠର ସୁପରିଚାଳନାରେ ତ୍ରୁଟି ଘଟିଥିଲା । ତାହାଙ୍କ ଜ୍ୟେଷ୍ଠ ଭ୍ରାତ

ନୀଳମଣି ପରିଛା ଜେଠେଙ୍କ ସମ୍ପତ୍ତି, ତାଙ୍କ କନ୍ୟାଙ୍କୁ ବିତରଣ କରିବା ହେତୁ, ପାରିବାରିକ କଳହ ବିରାଟ ଆକାର ଧାରଣ କରିଥିଲା । ସମ୍ଭବତଃ ଏହାହିଁ ଚିନ୍ତାରେ ପରିଣତ ହୋଇ, ଅକାଳରେ ତାହାଙ୍କ ମୃତ୍ୟୁ ହୋଇଥିଲା । ଅପ୍ରତ୍ୟାଶିତ ଭାବେ ଅଧିକ ରକ୍ତଚାପରେ ଆକ୍ରାନ୍ତ ହୋଇ ୧୯୩୯ ଖ୍ରୀଷ୍ଟାବ୍ଦ ଜୁଲାଇ ମାସ ୨୪ ତାରିଖରେ ସେ ମହାପ୍ରୟାଣ କରିଥିଲେ ।

ଆଜି ପରିଛା ମହୋଦୟ ଆଉ ଇହ ସଂସାରରେ ନାହାନ୍ତି ସତ, ତଥାପି ତାହାଙ୍କ ଜୀବନର ଅମ୍ଳାନ ସ୍ମୃତି କଦାପି ବିସ୍ମୃତ ହେବ ନାହିଁ । ତାହାଙ୍କ ଅପ୍ରକାଶିତ ଏବଂ ପ୍ରକାଶିତ ପୁସ୍ତକଦ୍ୱୟ ମଧ୍ୟ ଆଜି ଅବହେଳିତ ଏବଂ ଏକାନ୍ତ ଦୁଷ୍ପ୍ରାପ୍ୟ । ତଥାପି ଓଡ଼ିଆ ସାହିତ୍ୟ ଏବଂ ସଂସ୍କୃତିର ଦିଗ୍‌ଦ୍ରଷ୍ଟା ଭାବେ ସେ ଅବିସ୍ମରଣୀୟ ହୋଇ ରହିବେ । ଆଜି ତାହାଙ୍କ ଯଶ ଯଦ୍ୱିଞ୍ଚିତ ଅପହୃତ ହୋଇଥିଲେବି, ଅପନ୍ନା ପରିଛାଙ୍କ ପ୍ରତି ତାହା ଏକ ଅଭିଶାପ ଭାବେ ଗ୍ରହଣ କରାଯାଇନପାରେ । ଓଡ଼ିଶାର ବହୁ ପ୍ରତିଭାବାନ୍ ସାହିତ୍ୟିକଙ୍କ ଭାଗ୍ୟରେ ଏତାଦୃଶ ଅବସ୍ଥାହିଁ ପରିଲକ୍ଷିତ ହୋଇଥାଏ । ତେଣୁ ଏହା ଅଭିଶପ୍ତ ଓଡ଼ିଆ ଜାତି ପ୍ରତି ଏକ ଅଭିଶାପ କହିଲେ ଭୁଲ ହେବନାହିଁ । ତଥାପି ଓଡ଼ିଆ ସାହିତ୍ୟର ଧାରାବାହିକ ଇତିହାସ ଲେଖିବା ବେଳେ ତାହାଙ୍କ ନାମ ବାସ୍ତବିକ ସ୍ମରଣୀୟ । ଓଡ଼ିଆ ସାହିତ୍ୟ, ସଂସ୍କୃତି ଏବଂ ଜାତୀୟ ଏକତା ବଜାୟ ରଖିବା ନିମନ୍ତେ ସ୍ୱର୍ଗତ ପରିଛାଙ୍କ ଯେଉଁ ଅଦମ୍ୟ ଚେଷ୍ଟା, ଓଡ଼ିଶାବାସୀଙ୍କୁ ତାହା ସବୁଦିନ ପାଇଁ ଯେ ପ୍ରେରଣା ଯୋଗାଇବ, ଏଥିରେ ଟିକେହେଁ ସନ୍ଦେହ ନାହିଁ ।



# ସ୍ୱନାମଧନ୍ୟ ଅନ୍ଧଗାୟକ ଅପନ୍ନା ପାଣିଗ୍ରାହୀ

ଅପନ୍ନା ପାଣିଗ୍ରାହୀ - ଏହି ନାମଟି କେହି ବୋଧେ ଶ୍ରବଣ କରିନଥିବେ । ଯଦିବା ଶ୍ରବଣ କରିଥିବେ, ସେ କିଏ ଏହା କେହି ବୋଧେ କାହାକୁ ପ୍ରଶ୍ନ କରିନଥିବେ । କିନ୍ତୁ ଅନ୍ଧ ଅପନ୍ନା - ଏହି ନାମର ସଂସ୍ପର୍ଶରେ ଯଦି କେହି ଆସନ୍ତି, ସେମାନଙ୍କ ମସ୍ତକ ସ୍ୱତଃନତ ହୋଇଯାଏ । କାରଣ, ସେ ଥିଲେ ସମଗ୍ର ଭାରତବର୍ଷର ଜଣେ ସର୍ବଶ୍ରେଷ୍ଠ ସଙ୍ଗୀତଜ୍ଞ ଏବଂ ଅଦ୍ୱିତୀୟ ଗାୟକ ।

ଏହାଙ୍କ ବଂଶଧର ମାନେ ପୂର୍ବପୁରୁଷରୁ ପାରଳାଖେମୁଣ୍ଡି ନିକଟସ୍ଥ ନାଡ଼ସନ୍ଦରା ଗ୍ରାମରେ ବାସ କରୁଥିଲେ । କିନ୍ତୁ ଅପନ୍ନା ପାଣିଗ୍ରାହୀଙ୍କ ପିତା ଗୋପାଳ ପାଣିଗ୍ରାହୀ, ରୂପମଞ୍ଜରୀ ନାମ୍ନୀ କନ୍ୟା ସହ ବିବାହ ପରେ ପାରଳାଖେମୁଣ୍ଡି ଚାଲି ଆସିଥିଲେ । ୧୮୯୩ ଖ୍ରୀଷ୍ଟାବ୍ଦ ମାର୍ଗଶୀର ମାସ ଶୁକ୍ଳପକ୍ଷ ରବିବାର ଦିନ ଅପନ୍ନା ପାଣିଗ୍ରାହୀ ପାରଳାଖେମୁଣ୍ଡିର କରଣ ସାହିରେ ଜନ୍ମଗ୍ରହଣ କରିଥିଲେ । କିନ୍ତୁ, ପିତାମାତାଙ୍କର ଏକମାତ୍ର ସନ୍ତାନ ଏବଂ ବଂଶର ସର୍ବଶେଷ ଉଜ୍ଜ୍ୱଳ ପ୍ରଦୀପ ଭାବେ ସେ ଯେ ଓଡ଼ିଆ ଜାତିର ପ୍ରତିନିଧି ହୋଇ ଭାରତବର୍ଷରେ କୀର୍ତ୍ତିର ଧ୍ୱଜା ଉଡ଼ାଇବେ, ଏହା କେହି ସ୍ୱପ୍ନରେ ସୁଦ୍ଧା ଭାବିନଥିଲେ ।

ତୁଳସୀ ଦୁଇପତ୍ରରୁ ବାସିଲା ପରି ବାଲ୍ୟାବସ୍ଥାରୁହିଁ ତାଙ୍କ ଭବିଷ୍ୟତର ସୂଚନା ମିଳିଥିଲା । ତାଙ୍କ ଅଜା ମଧୁସୂଦନ ପାଣିଗ୍ରାହୀ ଜଣେ କବି ଓ ସଙ୍ଗୀତଜ୍ଞ ଅଟନ୍ତି । ଶିଶୁ ସମୟରେ ତାଙ୍କ ପାର୍ଶ୍ୱରେ ବସି ଅପନ୍ନା ପାଣିଗ୍ରାହୀ ପ୍ରଥମେ ସଙ୍ଗୀତ ଗାନ କରିବା ଅଭ୍ୟାସ କରିଥିଲେ । କିନ୍ତୁ ବିଧିର ବିଧାନକୁ କେହି କଦାପି ମନା କରିପାରିବ ନାହିଁ । ଭଗବାନଙ୍କ ଇଙ୍ଗିତରେ ଯେପରି ଘୋଟି ଆସିଥିଲା ଏକ କଳାହାଣ୍ଡିଆ ମେଘ । ହଠାତ୍ ଦିନେ ପ୍ରାୟ ଆଠ ବର୍ଷ ବୟସରେ ସେ ବସନ୍ତ ରୋଗ ଦ୍ୱାରା ଆକ୍ରାନ୍ତ ହୋଇ ଚକ୍ଷୁଦ୍ୱୟର ଦୃଷ୍ଟିଶକ୍ତି ହରାଇଥିଲେ । କିନ୍ତୁ ସେହି କଣ୍ଟକାକୀର୍ଣ୍ଣ ଜୀବନପଥରେ ମଧ ଅପନ୍ନା ପାଣିଗ୍ରାହୀ ଜଣେ ଦକ୍ଷ ବାଟୋଇ ପରି ଆଗେଇ ଚାଲିଥିଲେ । କୌଣସି ବାଧାବିଘ୍ନ ତାଙ୍କ ପଥରୁଦ୍ଧ କରିବାପାଇଁ ସକ୍ଷମ ହୋଇପାରିନଥିଲା । ଚକ୍ଷୁ ହରାଇ ଥିଲେହେଁ ତାଙ୍କ ସଙ୍ଗୀତାଗ୍ରହ ବୈଶାଖ ମାସର ସୂର୍ଯ୍ୟଙ୍କ କିରଣ ପରି ପ୍ରଖରରୁ ପ୍ରଖରତର ହେଉଥିବା ଲକ୍ଷ୍ୟ କରାଯାଇଥିଲା । ତେଣୁ ସ୍ଥାନୀୟ ଚୈତନ୍ୟ ମଠର ମହନ୍ତ ସଙ୍ଗୀତଜ୍ଞ ଅଦ୍ୱୈତ ଦାସ ଗୋସ୍ୱାମୀଙ୍କୁ ତାଙ୍କ ସଙ୍ଗୀତ ଶିକ୍ଷାର ଭାର ବହନ କରାଯାଇଥିଲା । ଦୈବ ନିର୍ଦ୍ଦେଶରେ ଯେପରି କିଛି ମାସ ପରେ ସଙ୍ଗୀତଜ୍ଞ ଲୋକନାଥ ସାହୁ ଅପନ୍ନା ପାଣିଗ୍ରାହୀଙ୍କ ସଙ୍ଗୀତାଗ୍ରହ ସମ୍ବନ୍ଧରେ ଶୁଣିପାରିଥିଲେ । ସେ ତତ୍କାଳୀନ ସଙ୍ଗୀତପ୍ରେମୀ ମାନଙ୍କୁ ସ୍ୱଆଶ୍ରିତରେ ରଖି ଶିକ୍ଷା ଦେଉଥାନ୍ତି

। ଅପର୍ଣ୍ଣା ପାଣିଗ୍ରାହୀଙ୍କ ପରି ଜଣେ ପ୍ରତିଭାସମ୍ପନ୍ନ ବ୍ୟକ୍ତି କିପରି ବା ତାଙ୍କ ଚକ୍ଷୁ ଅନ୍ତରାଳରେ ରହିଥାନ୍ତେ । ସେ ଅପର୍ଣ୍ଣାଙ୍କ ସମ୍ପୂର୍ଣ୍ଣ ସଙ୍ଗୀତ ଶିକ୍ଷା ନିମନ୍ତେ ବର୍ଷକୁ ପନ୍ଦର ପୁଟି ଧାନ ଦେବା ସର୍ତ୍ତରେ ସଙ୍ଗୀତଜ୍ଞ ସୂରିନାରାୟଣଙ୍କୁ ନିଯୁକ୍ତ କରିଥିଲେ । ଅପର୍ଣ୍ଣା ପାଣିଗ୍ରାହୀଙ୍କ ଦୃଷ୍ଟିଶକ୍ତି ନଷ୍ଟ ହୋଇଯାଇଥିଲା ସତ, କିନ୍ତୁ ତାଙ୍କ ସ୍ମୃତିଶକ୍ତି ଥିଲା ଅତି ପ୍ରଖର । ତେଣୁ ଯେକୌଣସି ସଙ୍ଗୀତ ସୂରିନାରାୟଣଙ୍କ ଦ୍ୱାରା ଥରେ ବା ଦୁଇଥର ଆବୃତ୍ତି ହେବା ସଙ୍ଗେ ସଙ୍ଗେ ମନେ ରଖି ସେ ସଙ୍ଗୀତ କ୍ଷେତ୍ରରେ ସମ୍ପୂର୍ଣ୍ଣ ପ୍ରସିଦ୍ଧି ଲାଭ କରିଥିଲେ । ତାପରେ ପାରଳାଖେମୁଣ୍ଡି ରାଜ ସମସ୍ଥାନରେ ରାଜା, ପ୍ରଜା, କର୍ମଚାରୀ, କବି ଏବଂ ସଙ୍ଗୀତଜ୍ଞ ମାନଙ୍କ ଦ୍ୱାରା ପ୍ରଶଂସାଭାଜନ ହୋଇ ସର୍ବଶ୍ରେଷ୍ଠ ଗାୟକର ସମ୍ମାନରେ ମଧ୍ୟ ଭୂଷିତ ହୋଇଥିଲେ । ରାଜ ସମସ୍ଥାନର ସର୍ବଶ୍ରେଷ୍ଠ ଗାୟକ ଭାବେ ସେ ମାସକୁ ଛଅଟଙ୍କା ଲେଖାଏ ବେତନ ପାଉଥିଲେ ।

ଅପର୍ଣ୍ଣା ପାଣିଗ୍ରାହୀ ଗୌଡ଼ୀୟ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇ ରାଧାକୃଷ୍ଣଙ୍କ ଭକ୍ତିସଙ୍ଗୀତ ଗାନ କରିବାକୁ ଦୈନେନ୍ଦିନ କର୍ତ୍ତବ୍ୟ ରୂପେ ଗ୍ରହଣ କରିଥିଲେ । ନିଜ ଗୃହର ରାଧାକୃଷ୍ଣ ବିଗ୍ରହ ସମ୍ମୁଖରେ ପ୍ରିୟ ବୀଣାଯନ୍ତ୍ରଟି ଧରି ଅଶ୍ରୁ ବିଗଳିତ ମୁଖ ଏବଂ ରୋମାଞ୍ଚିତ ଶରୀରରେ ଜୟଦେବଙ୍କ ରଚିତ ଗୀତଗୋବିନ୍ଦର କେତୋଟି ନିର୍ଦ୍ଦିଷ୍ଟ ସଙ୍ଗୀତ ଗାନ କରିବା ତାଙ୍କ ନିତ୍ୟ ନିୟମିତ କର୍ମ ଥିଲା ।

ସେ ଜଣେ ନୈଷ୍ଠିକ ହିନ୍ଦୁ ଥିଲେ । ହିନ୍ଦୁଧର୍ମ ପ୍ରଥାନୁଯାୟୀ ସେ ଏପରିକି ମାଘ ମାସର ଭୀଷଣ ଶୀତରେ ମଧ୍ୟ ରାତ୍ରି ତିନି-ଚାରି ଘଣ୍ଟା ସମୟରେ ସ୍ନାନ ସକାଶେ ନଦୀ କିମ୍ବା ପୋଖରୀ ତଟ ଦେଶକୁ ଯାଉଥିଲେ । ତାପରେ ଜଳ ମଧ୍ୟରେ ଭଗବାନଙ୍କ ନାମ କୀର୍ତ୍ତନ କରି ସ୍ୱର କମ୍ପନ ଅଭ୍ୟାସ ଦ୍ୱାରା ଧର୍ମ ମାଧ୍ୟମରେ ନିଜ ଗାନର ମଧ୍ୟ ଉନ୍ନତି ସାଧନ କରୁଥିଲେ ।

ଦୈନେନ୍ଦିନ ଜୀବନଯାପନ ମଧ୍ୟରେ ଏପରିକି ସ୍ୱଳ୍ପ ସମୟ ପାଇଲେବି ଗୃହ ଛାତରୁ ଚୂଟାଚାଏ କାଢ଼ି ଦୁଇଖଣ୍ଡ କରି ସେଥିରେ ସା.ରି.ଗା.ମା ବଜାଇବା ତାଙ୍କ ଅଭ୍ୟାସରେ ପରିଣତ ହୋଇଥିଲା । ଏଥିରୁ ତାଙ୍କ ସଙ୍ଗୀତାଗ୍ରହର ଯଥେଷ୍ଟ ଆଭାସ ମିଳେ । ମନେ ହୁଏ, ସତେ ଯେପରି ପ୍ରତି ମୁହୂର୍ତ୍ତରେ ତାଙ୍କ ରକ୍ତ, ଅସ୍ଥି ଏବଂ ଶିରା ପ୍ରଶିରା ମଧ୍ୟରେ ସଙ୍ଗୀତର ଲହରୀ ଛୁଟି ଚାଲିଥିଲା ।

ପ୍ରତିଭା ଜନ୍ମଗତ । ଦୀପାବଳୀର ଆଲୋକମାଳା ପରି ଜାଜ୍ୱଲ୍ୟମାନ ଥିଲା ତାଙ୍କ ପ୍ରତିଭା । ସେ କୋଡ଼ରେ ଅତି ଦକ୍ଷତାର ସହ ହାର୍‌ମୋନିୟମ୍ ବଜାଇ ପାରୁଥିଲେ । ତାହା ଲକ୍ଷ୍ୟ କରି ଲୋକେ ଚିତ୍ର ପିତୁଳା ପରି ଅବାକ୍ ହୋଇ ତାଙ୍କୁ ଚାହିଁ ରହୁଥିଲେ ।

ଥରେ ଆଲ୍ଲାହାବାଦ୍ ଠାରେ ନିଖିଳ ଭାରତ ସଙ୍ଗୀତ ମହା ସମ୍ମିଳନୀ ଅନୁଷ୍ଠିତ ହେଉଥାଏ । ପ୍ରତି ରାଜ୍ୟରୁ ବିଶିଷ୍ଟ ସଙ୍ଗୀତଜ୍ଞ ମାନେ ସେଥିରେ ପ୍ରତିନିଧିତ୍ୱ କରୁଥାନ୍ତି । ଓଡ଼ିଶାରୁ କିଏ ସେଥିରେ ପ୍ରତିନିଧିତ୍ୱ କରିବେ, ତାହା କଟକର ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ବିଚାର ହୋଇ ଶେଷରେ ସୁନାମଧନ୍ୟ ଅନ୍ଧଗାୟକ ଅପନ୍ନା ପାଣିଗ୍ରାହୀଙ୍କୁ ପଠାଇବା ନିମନ୍ତେ ସ୍ଥିର କରାଯାଇଥିଲା। ତେଣୁ ରେଭେନ୍ସା କଲେଜର ଓଡ଼ିଆ ପ୍ରଫେସର୍ ଶ୍ରୀଯୁକ୍ତ ଲକ୍ଷ୍ମୀକାନ୍ତ ଚୌଧୁରୀଙ୍କ ପ୍ରସ୍ତାବ କ୍ରମେ ଅପନ୍ନା ପାଣିଗ୍ରାହୀଙ୍କୁ ଏଥି ନିମନ୍ତେ ପ୍ରସ୍ତୁତ କରିବାପାଇଁ ଡ଼କ୍ଟର୍ ସତ୍ୟନାରାୟଣ ରାଜଗୁରୁଙ୍କୁ ଅନୁରୋଧ କରାଯାଇଥିଲା । ଶ୍ରୀରାଜଗୁରୁ ମହୋଦୟ ପାରଳାଖେମୁଣ୍ଡି ଫେରି ତାଙ୍କ ପିତୃବ୍ୟ ଶ୍ରୀ ରାଧାଗୋବିନ୍ଦ ରାଜଗୁରୁଙ୍କୁ ତାହା ଜଣାଇଥିଲେ । ଶ୍ରୀରାଧାଗୋବିନ୍ଦ ରାଜଗୁରୁ,ଅପନ୍ନା ପାଣିଗ୍ରାହୀଙ୍କର ଜଣେ ଅତି ଆତ୍ମୀୟ ସହଯୋଗୀ ଥିଲେ । ସେ ଉତ୍କଳସାହିତ୍ୟସମାଜର ପ୍ରସ୍ତାବ ତାଙ୍କୁ କହିଥିଲେ । ଗାଈ ଦୁହାଁ ଏବଂ କ୍ଷୀର ପିଆ ଏକା ଥରକେ ହୋଇପାରିବ, ଏଥିରେ ସେ ଦ୍ୱିମତ ହୁଅନ୍ତେ ବା କାହିଁକି ? ଅର୍ଥାତ୍ ତ୍ରିବେଣୀ ସ୍ନାନ ଏବଂ ସଙ୍ଗୀତ ମହା ସମ୍ମିଳନୀରେ ଯୋଗଦାନ ଉଭୟ ଖର୍ଚ୍ଚ ବିନାରେ ହୋଇପାରିବ, ତାହା ସେ କିପରି ମନା କରନ୍ତେ । ତେଣୁ ନିଜର ସ୍ୱୀକୃତି ପ୍ରଦାନ କରିବାପାଇଁ ସେ କୌଣସି ବିଳମ୍ବ କରିନଥିଲେ ।

ନିର୍ଦ୍ଦିଷ୍ଟ ସମୟରେ ଅପନ୍ନା ପାଣିଗ୍ରାହୀ ଆଲ୍ଲାହାବାଦ୍ ସଙ୍ଗୀତ ମହା ସମ୍ମିଳନୀରେ ଯୋଗ ଦେଇଥିଲେ । ଓଡ଼ିଶାର ଗାୟକଙ୍କ ପାଇଁ ଅର୍ଥାତ୍ ତାଙ୍କ ନିମନ୍ତେ ମାତ୍ର ଦଶମିନିଟ୍ ସମୟ ଧାର୍ଯ୍ୟ କରାଯାଇଥିଲା । ଓଡ଼ିଶାର ଗାୟକଙ୍କ ନିମନ୍ତେ ସେ ଯେଉଁ ଧାର୍ଯ୍ୟ ସମୟ, ତାହା ଅନ୍ୟାନ୍ୟ ଗାୟକଙ୍କ ନିମନ୍ତେ ଥିବା ଧାର୍ଯ୍ୟ ସମୟ ଅପେକ୍ଷା ଥିଲା ଢ଼େର୍ କମ୍ । ପୁଣି ଯେତେବେଳେ ଶ୍ରୋତା ମହଲକୁ ଶୁଣାଗଲା, ଓଡ଼ିଶାର ଜଣେ ଅନ୍ଧଗାୟକ ସଙ୍ଗୀତ ପରିବେଷଣ କରିବେ, ବହୁ ଶ୍ରୋତା ମଞ୍ଚ ମଧ୍ୟରୁ ଚାଲିଯାଉଥିବା ଲକ୍ଷ୍ୟ କରାଯାଇଥିଲା । କିନ୍ତୁ ସୁନାମଧନ୍ୟ ଅନ୍ଧଗାୟକ ଯେଉଁ ସମୟରେ କବିଶ୍ରେଷ୍ଠ ଜୟଦେବଙ୍କ "ଗୀତଗୋବିନ୍ଦ"ର -'ଲଳିତ ଲବଙ୍ଗଲତା ପରିଶୀଳନ ମଳୟ କୋମଳ ସମୀରେ' ଗାନ କଲେ, ସେହି ସମୟରେ ଚାଲିଯାଉଥିବା ଶ୍ରୋତା ମାନେ ପୁଣି ଫେରି ଆସୁଥିବା ଲକ୍ଷ୍ୟ କରାଯାଇଥିଲା । ଭାବ ଗଦ୍‌ଗଦ୍‌କଣ୍ଠରେ ସେ ସ୍ୱରଲହରୀ ଏତେ ହୃଦୟସ୍ପର୍ଶୀ ହୋଇପାରିଥିଲା ଯେ, ଶ୍ରୋତାମଣ୍ଡଳୀ କେବଳ ଆତ୍ମବିସ୍ମୃତି ହୋଇନଥିଲେ, ନିଖିଳ ଭାରତ ସଙ୍ଗୀତଜ୍ଞ ମଣ୍ଡଳୀକୁ ମଧ୍ୟ ସମୟ ବିସ୍ମୃତି ହୋଇଥିଲା । ସେହି ଗାନ ଶେଷ କରିବାକୁ ତାଙ୍କୁ ପ୍ରାୟ ଚାଳିଶି ମିନିଟ୍ ସମୟ ଲାଗିଥିଲା । ଠିକ୍ ବିଶ୍ୱ ଧର୍ମ ସମ୍ମେଳନରେ ବିବେକାନନ୍ଦଙ୍କ ପରି ଅନ୍ଧଗାୟକ ଅପନ୍ନା ପାଣିଗ୍ରାହୀ ଯେପରି ଜାତି, ଧର୍ମ, ବର୍ଣ୍ଣ ଏବଂ ଭାଷା ନିର୍ବିଶେଷରେ ସମସ୍ତ ଶ୍ରୋତାଙ୍କ ହୃଦୟକୁ ସ୍ପର୍ଶ କରିପାରିଥିଲେ । ମନେ ହୁଏ, ଅନ୍ଧଗାୟକଙ୍କ ପ୍ରତିଭା ଯେପରିକି ଚନ୍ଦ୍ରର

ସ୍ନିଗ୍ଧତା ତୋଳି, ସେ ଜ୍ୟୋତ୍ସ୍ନାର ଦୁଆରରେ ସମସ୍ତଙ୍କୁ ପ୍ଲାବିତ କରିଥିଲା । ପୁଣି, ସେଦିନ ଅପନ୍ନା ପାଣିଗ୍ରାହୀଙ୍କ ପ୍ରତିଭା ପୁଷ୍ପର ଯେ ସୌରଭ ସ୍ଫୁରଣ ହୋଇଥିଲା, ତାହାର ବାସ ଚହଟି ଦିଗ୍‌ବିଦିଗକୁ ସୁରଭିତ କଲା ।

ନିଖିଳ ଭାରତ ସଙ୍ଗୀତ ମହା ସମ୍ମିଳନୀ ପରେ ବମ୍ବେ ଏବଂ କଲିକତାର ଗ୍ରାମ୍‌ଫୋନ୍ କମ୍ପାନୀ ବାଲା ତାଙ୍କ ବସାରେ ସମବେତ ହୋଇଥିଲେ । ସେମାନେ ଅନ୍ଧଗାୟକଙ୍କ କୋକିଳ କଣ୍ଠରୁ ରେକର୍ଡ ନେବାପାଇଁ ପ୍ରତିଯୋଗିତା ମୂଳକ ମନୋଭାବ ସ୍ଥାପନ କରିଥିଲେ । କଲିକତା ଗ୍ରାମ୍‌ଫୋନ୍ କମ୍ପାନୀ ପ୍ରତି ରେକର୍ଡ ପାଇଁ ଚାରିଶହ ଟଙ୍କା ପର୍ଯ୍ୟନ୍ତ ନିଲାମ ଉଠାଇବାରୁ ତାହାହିଁ ଶେଷରେ ଧାର୍ଯ୍ୟ ହୋଇଥିଲା । କିନ୍ତୁ ରେକର୍ଡରେ ଗାଇବା ପାଇଁ ସମ୍ପୂର୍ଣ୍ଣ ଅନିଚ୍ଛା ପ୍ରକାଶ କରି, ସେ ପାରଳାଖେମୁଣ୍ଡି ଫେରି ଆସିଥିଲେ । ପାରଳାଖେମୁଣ୍ଡିର କେତେକ ନେତୃସ୍ଥାନୀୟ ବ୍ୟକ୍ତି, ରେକର୍ଡରେ ଗାଇବା ନିମନ୍ତେ ତାଙ୍କୁ ଉତ୍ସାହିତ କରି ବହୁତ ବୁଝାଇଥିଲେ । ସେ ପ୍ରତିବାଦ କରି କହିଥିଲେ, "ବାବୁ, ତୁମେ ସବୁ ପିଲା ଲୋକ । କଲିକତା ଲୋକଙ୍କ ଠକ କଥା ଜାଣନି, ସେମାନେ ଆମ କଣ୍ଠର ସ୍ୱର କାଢ଼ି ନେବେ । ପଇସା ଲୋଭରେ ଯଦି ମୁଁ ତାଙ୍କ କଥାରେ ପଡ଼ି ସ୍ୱରଟା ବିକ୍ରି କରିଦେବି, ତାହା ହେଲେ, ଆମ ଗାଁର ଲୋକେ ମତେ ପରିହାସ କରିବେନିକି । କହିବେ, ଲୋଭରେ ପଡ଼ି ଅନ୍ଧଟା ତାର ବିଦ୍ୟା ବିକିଦେଲା ।" କିନ୍ତୁ ସମସ୍ତଙ୍କ ବାରମ୍ବାର ଅନୁରୋଧ ସତ୍ତ୍ୱେ କୌଣସି ମତେ ବହୁ କଷ୍ଟରେ ସେ ତାଙ୍କ ସ୍ୱୀକୃତି ପ୍ରଦାନ କରିଥିଲେ ।

ଭକ୍ତକବି ଗୋପାଳକୃଷ୍ଣଙ୍କ ଦ୍ୱାରା ରଚିତ - ବ୍ରଜରାଜ ତନୟ ଗୁଣ ଗାରେ , ମୋହନ ମାଧୁରୀ ଦେଖିଥିଲା ନାରୀ, ନିଦକେଣେ ଦେଲୁ ଭାଙ୍ଗିରେ, ବୃନ୍ଦାବନଚନ୍ଦ୍ର ପାଣିଗ୍ରାହୀଙ୍କ ଦ୍ୱାରା ରଚିତ - ରାଧାଧର ସୁମଧୁର, ମନ ଯାଉନାହିଁ ମା, ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ଦ୍ୱାରା ରଚିତ - ରାଧା ଧରି ସଖୀ କର, ପ୍ରଣୟେ ଦୁଃଖୀ ହୋଇ ଏବଂ ଗୌରହରି ପରିଚ୍ଛାଙ୍କ ରଚିତ - ହୋଇଥାରେ ବେଣ କୁଞ୍ଜକୁ ଯିବୁ ପରା ..... ଏହି ଆଠ ଗୋଟି ସଙ୍ଗୀତ ରେକର୍ଡରେ ଗାନ କରାଯାଇଥିଲା । ସେଥିରେ ଓଡ଼ିଆ ସଙ୍ଗୀତର ଗୀତିମୟତା ଏବଂ ମୌଳିକତ୍ୱ ଉପସ୍ଥାପନ କରି, ତାହାଯେ, ଅନ୍ୟାନ୍ୟ ସଙ୍ଗୀତର ସମକକ୍ଷ, ତାହା ସେ ପ୍ରମାଣ କରିଦେଇଥିଲେ । ଆଜିଯାଏ ଅନ୍ଧ ଅପନ୍ନାଙ୍କ ସେହି ଆଠ ଗୋଟି ରେକର୍ଡ ସଙ୍ଗୀତ ଓଡ଼ିଶାର ସମସ୍ତ ପ୍ରାସାଦ ଏବଂ ଜୀର୍ଣ୍ଣ କୁଟୀରରେ ମଧ୍ୟ ସମାନ ପ୍ରଶଂସା ପାଇଆସୁଛି ।

ଉପରୋକ୍ତ ଆଠଟି ସଙ୍ଗୀତ ରେକର୍ଡ ହେବାପରେ ନୀଳଗିରି ମହାରାଜା ଅତି ଆଦରର ସହ ତାଙ୍କୁ ସ୍ୱରାଜ୍ୟକୁ ଆମନ୍ତ୍ରଣ କରିଥିଲେ । ସେଠାରୁ ଅପନ୍ନା ପାଣିଗ୍ରାହୀ ପାରଳାଖେମୁଣ୍ଡି

ଫେରି ଆସିଥିଲେ । କିନ୍ତୁ ଆସିବା କିଛିଦିନ ପରେ ହଠାତ୍ ଟାଇଫେଡ୍ ଜ୍ୱରରେ ଆକ୍ରାନ୍ତ ହୋଇ ୧୯୪୦ ଖ୍ରୀଷ୍ଟାବ୍ଦ ମାର୍ଗଶୀର ମାସ କୃଷ୍ଣପକ୍ଷ ରବିବାରରେ ରାତ୍ର ନଅଘଣ୍ଟ ସମୟରେ ଇହସଂସାରରୁ ସେ ବିଦାୟ ନେଇଥିଲେ । ତାଙ୍କର ଅକାଳ ବିୟୋଗ ଯୋଗୁଁ ସମଗ୍ର ଭାରତବର୍ଷର ଅପୂରଣୀୟ କ୍ଷତି ହୋଇଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବିଷ୍ଣୁଶର୍ମାଙ୍କ ଭାଷାରେ -    ପରିବର୍ତ୍ତିନୀ ସଂସାରେ
                                         ମୃତଃ କୋଅବା ନଜାୟତେ ॥

ଅର୍ଥାତ୍ ରକ୍ତମାଂସର ଦେହ ଧରି ଏ ସଂସାରକୁ ଆସିଲେ ଦିନେ ନା ଦିନେ ସମସ୍ତଙ୍କୁ ମରିବାକୁ ହୁଏ । ଅପନ୍ନା ପାଣିଗ୍ରାହୀ ମଧ୍ୟ ସେହି କାଳଚକ୍ର ଦ୍ୱାରା କବଳିତ ହୋଇ ବହୁବର୍ଷ ହେଲା ଚାଲିଗଲେଣି ସତ, ତଥାପି ସେ ଯଶୋଦେହେ ଚିରଦିନ ଆୟୁଷ୍ମାନ ହୋଇ ରହିବେ । ଆଲ୍ଲାହାବାଦ୍ ଠାରେ ନିଖିଳ ଭାରତ ସଙ୍ଗୀତ ମହା ସମ୍ମିଳନୀରେ ତାଙ୍କର ଯେଉଁ ବିଜୟ ହୋଇଥିଲା, ସେହି ବିଜୟ ପତାକା ଓଡ଼ିଶା ବକ୍ଷରେ ସବୁଦିନ ପାଇଁ ଉଡ୍ଡୀୟମାନ ହେଉଥିବ । ପୁଣି ସ୍ୱନାମଧନ୍ୟ ଅନ୍ଧଗାୟକଙ୍କ ଆଠ ଗୋଟି ସଙ୍ଗୀତ ରେକର୍ଡ ସେହି ସ୍ମୃତିକୁ ସବୁଦିନ ପାଇଁ ଆମ ମଧ୍ୟରେ ଉଜ୍ଜୀବିତ କରାଉଥିବ ।



# ସାହିତ୍ୟିକ ସୀମାଦ୍ରି ପଟ୍ଟନାୟକ

ସୀମାଦ୍ରି ପଟ୍ଟନାୟକ ଏକାଧାରରେ ଥିଲେ କବିତାର ସ୍ୱର ଏବଂ ନାଟକର ଆତ୍ମା । ତାଙ୍କ ମଧ୍ୟରେ କବି ଏବଂ ସମାଲୋଚକର ଏକ ଦାର୍ଶନିକ ଚିନ୍ତା ସୁସ୍ପଷ୍ଟ ହୋଇଥାଏ । ସେ ବାସ୍ତବରେ କଳା, ସାହିତ୍ୟ ଏବଂ ଦର୍ଶନର ଏକ ପ୍ରମାଣ ପୁରୁଷ ଥିଲେ । ତାଙ୍କ ମସ୍ତିଷ୍କ ମଧ୍ୟରେ ଯେପରି ଭରି ରହିଥିଲା ଉପନିଷଦ୍‌ର ଅସରନ୍ତି ଜ୍ଞାନ ସମୁଦ୍ର । ଜଣେ ପବିତ୍ର ବିପ୍ଳବବାଦୀ ଭାବେ ଆଧୁନିକ ଭାରତରେ କୃତ୍ରିମତା, ମିଥ୍ୟା ଏବଂ କପଟତା ବିରୋଧରେ ନିଜ ସାହିତ୍ୟ ମାଧ୍ୟମରେ ସେ ସ୍ୱର ଉତ୍ତୋଳନ କରିଛନ୍ତି । ଜଣେ ଶିକ୍ଷାବିତ୍ ଭାବେ ଭାରତର ସଂକୀର୍ଣ୍ଣ, ଅପରିବର୍ତ୍ତନୀୟ ଏବଂ ରକ୍ଷଣଶୀଳ ଶିକ୍ଷାନୀତିକୁ ମଧ୍ୟ ସେ ସମାଲୋଚନା କରିଛନ୍ତି । ମୁଖ୍ୟତଃ ଉତ୍କଳୀୟ ଚିନ୍ତାଧାରାରେ ଉଦ୍‌ବୋଧିତ ହୋଇ, ନିଜ କାବ୍ୟ କବିତା ନାଟକାଦି ମାଧ୍ୟମରେ ସେ ଯେପରି ଭାବେ ପ୍ରାଚୀନ ଉତ୍କଳ ଇତିହାସର ଅବତାରଣା କରିଛନ୍ତି, ତାହା ଅବିସ୍ମରଣୀୟ । ପ୍ରାଚୀନ ଭାରତବର୍ଷର ଗୌରବମୟ ଗାଥା ସେ ଯେଉଁପରି ଭାବେ ବିଶ୍ଳେଷଣ କରିଛନ୍ତି, ତାହା ତାଙ୍କ ଦେଶାତ୍ମବୋଧର ଏକ ସ୍ପଷ୍ଟ ପ୍ରତିଫଳନ । ଏତଦ୍‌ବ୍ୟତୀତ ଆଧ୍ୟାତ୍ମିକ ଚିନ୍ତାଧାରା ତାଙ୍କ କାବ୍ୟକବିତାଦିର ଥିଲା ଏକ ଅବିଚ୍ଛେଦ୍ୟ ଅଙ୍ଗ । ଏପରି ଅସୀମ ଜ୍ଞାନର ଅଧିକାରୀ ହୋଇ ସୁଦ୍ଧା, ଖଣ୍ଡିଏ ଧୋତି ଏବଂ ଗୋଟିଏ ସାର୍ଟ କେବଳ ନିତ୍ୟ ପରିହିତ ବସନ ଭାବେ ସେ ବ୍ୟବହାର କରୁଥିଲେ । ସୀମାଦ୍ରି ପଟ୍ଟନାୟକଙ୍କ ଏପରି ସରଳତା ମଧ୍ୟରେ ତାଙ୍କ ଜ୍ଞାନର ପରିସୀମା ପ୍ରତି ଦୃଷ୍ଟିପାତ କଲେ ନାରିକେଳ ଫଳ ସମ୍ବନ୍ଧରେ ବର୍ଣ୍ଣିତ ଗୋଟିଏ ଶ୍ଳୋକ ଉଲ୍ଲେଖଯୋଗ୍ୟ ମନେ ହୁଏ -

ବୃକ୍ଷାଗ୍ରବାସୀ ନଚ ପକ୍ଷୀରାଜଃ<br>
ଅମ୍ବୁ ବହନ୍ତି ନଚ ମେଘମାଳଃ<br>
ତ୍ରିନେତ୍ରଧାରୀ ନଚ ଶୂଳପାଣୀଃ<br>
ବଲ୍କଳଧାରୀ ନଚ ରାମଚନ୍ଦ୍ରଃ ॥

ଏହି ପଙ୍କ୍ତିଟି ସାହିତ୍ୟିକ ସୀମାଦ୍ରି ପଟ୍ଟନାୟକଙ୍କ ପ୍ରତି ମଧ୍ୟ ପ୍ରଯୁଜ୍ୟ । ସାହିତ୍ୟରୂପକ ବୃକ୍ଷର ଶୀର୍ଷସ୍ଥାନରେ ଅଧିଷ୍ଠିତ ହୋଇଥିବା, ଜ୍ଞାନରୂପକ ଜଳ ନିଜ ମସ୍ତିଷ୍କରେ ବହନ କରିଥିବା, କବିତା,ନାଟକ ଓ ସଙ୍ଗୀତରୂପକ ତ୍ରିନେତ୍ର ଧାରଣ କରିଥିବା ଏବଂ ସରଳତା ରୂପକ ବଲ୍କଳ ଧାରଣ କରିଥିବା ଅସାଧାରଣ ପ୍ରତିଭାର ଅଧିକାରୀ ଥିଲେ ସେ । ତାଙ୍କର ସାଧନା ଅର୍ଦ୍ଧ ଶତାଧିକ ବର୍ଷ ଧରି ସାହିତ୍ୟକୁ ଏକ ନୂତନ ଦିଗ ଦେଖାଇ ପାରିଥିଲା । ବାସ୍ତବରେ ତାଙ୍କ ଜୀବନୀ ବିଂଶ ଶତାବ୍ଦୀର ସାହିତ୍ୟ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ଏକ ଅଧ୍ୟାୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସାମାଦ୍ରି ପଟ୍ଟନାୟକ, ୧୮୯୫ ଖ୍ରୀଷ୍ଟାବ୍ଦରେ ପାରଳାଖେମୁଣ୍ଡିର କରଣ ସାହିରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ନୀଳମଣିପଟ୍ଟନାୟକ । ସେ ୧୯୧୩ ଖ୍ରୀଷ୍ଟାବ୍ଦରେ ପାରଳାଖେମୁଣ୍ଡିର ମହାରାଜାସ୍ କଲେଜରୁ ଏଫ୍.ଏ. ପାସ୍ କରିଥିଲେ । କିନ୍ତୁ ଦୁଃଭାଗ୍ୟବଶତଃ ସେହି ବର୍ଷହିଁ ପିତୃ ବିୟୋଗ ଘଟିବାରୁ, ବିଦ୍ୟାଶିକ୍ଷାରେ ତାଙ୍କୁ ଡୋରି ବାନ୍ଧିବାକୁ ପଡ଼ିଥିଲା । ତାପରେ ଅର୍ଥ ଉପାର୍ଜନାର୍ଥେ ପାରଳା ମହାରାଜାଙ୍କ ଧର୍ମଶାଳାରେ ଗୁମାସ୍ତା କାର୍ଯ୍ୟ ସେ ପ୍ରାୟ ଦୁଇବର୍ଷ ବହନ କରିଥିଲେ। ମାତ୍ର ସେହି କାର୍ଯ୍ୟରୁ କୌଣସି ମତେ ଅବ୍ୟାହତି ନେଇ, ନିଜ ଜୀବନ କାଳ ମଧ୍ୟରେ ପାରଳାଖେମୁଣ୍ଡି ନିକଟସ୍ଥ ଗୁଣ୍ଡା,ସେରଙ୍ଗ, ନରଣପୁର, ରାୟଗଡ଼ ପ୍ରଭୃତି ସ୍ଥାନରେ ସେ ଶିକ୍ଷକ ଭାବେ କାର୍ଯ୍ୟ କରିଛନ୍ତି । କିନ୍ତୁ ପରବର୍ତ୍ତୀ ସମୟରେ ଜୀବନର ଭଙ୍ଗୁରତା ଉପଲବ୍ଧି କରି, ସ୍ୱକୃତ ନାଟକ, କାବ୍ୟ ଏବଂ ସଙ୍ଗୀତାଦିର ସଂରକ୍ଷାର୍ଥେ, ୧୯୪୫ ଖ୍ରୀଷ୍ଟାବ୍ଦରେ ସେ ଶିକ୍ଷକତା ତ୍ୟାଗ କରିଥିଲେ ।

ସାମାଦ୍ରି ପଟ୍ଟନାୟକ ଶିକ୍ଷକତାକରି ଏବଂ ନାନାବିଧ କାର୍ଯ୍ୟରେ ବ୍ୟାପୃତ ଥାଇ ସୁଦ୍ଧା ସାହିତ୍ୟସାଧନାରୁ ବିରତ ହୋଇନଥିଲେ। "କାବ୍ୟଶାସ୍ତ୍ର ବିନୋଦେନ କାଳୋଗଚ୍ଛତି ଧୀମତା" - ଏହି ସଦୁପଦେଶର ଅନୁକରଣରେ ସେ ସାହିତ୍ୟସାଧନାକୁ ପରମ ମାନବିକ କର୍ତ୍ତବ୍ୟ ବୋଲି ଗ୍ରହଣ କରିଥିଲେ । ଶ୍ରୀରାଧାକୃଷ୍ଣଙ୍କ ଭକ୍ତି ରସାତ୍ମକ ଭାରତୀ ରଚନା କରିବାରେ ତାଙ୍କର ଅସାଧାରଣ ପାଣ୍ଡିତ୍ୟ ରହିଥିଲା । ଗୋପାଳକୃଷ୍ଣ ଏବଂ ଅନ୍ୟାନ୍ୟ ଓଡ଼ିଆକବିଙ୍କ ଗୀତର ପ୍ରତିରେ ସେ କବିତା ରଚନା କରିବା ବ୍ୟତୀତ, ତେଲୁଗୁ ଭାଷାର ପ୍ରତିଷ୍ଠିତ କବି ଏବଂ ସଙ୍ଗୀତଜ୍ଞ ତ୍ୟାଗରାଜୁଙ୍କ କୃତି ଗୁଡ଼ିକର ପ୍ରତିରେ ମଧ୍ୟ ସେ ବହୁ କବିତା ରଚନା କରିଛନ୍ତି । ଏହି ପରିପ୍ରେକ୍ଷୀରେ ଦୃଷ୍ଟାନ୍ତ ସ୍ୱରୂପ କବିଙ୍କ ଗୋଟିଏ କବିତାନିମ୍ନରେ ଉଲ୍ଲେଖ କରୁଛି -

### ରାଗ-ସରସ୍ୱତୀ, ତାଳ-ରୂପକ

*(ଅନୁରାଗମୁଲେନି ମାନସୁଲାଲୁ ସୁଜ୍ଞାନମୁ ରାଦୁ - ପ୍ରତିରେ ଲିଖିତ)*

| | |
|---|---|
| ପଲ୍ଲବି- | ନବ ନୀରଦ ନୀଳ ମଧୁର ଗୋକୁଳେନ୍ଦୁକୁମାର<br>ଚରଣାବ୍ଜ ଦୁର୍ଲ୍ଲଭ ମାନସ ହେ ଭବେ ସାର ॥ |
| ଅନୁପଲ୍ଲବି- | ପରମ ପଦ ମୋକ୍ଷ ଛାର ନୀରସ ବାସନା ତେଜି ॥ |
| ଚରଣ - | ଭଜ ସଂକୀର୍ତ୍ତନେ ନାମ ଅମୃତ ପାରାବାରେ ରସ ॥ |

କିନ୍ତୁ ତାଙ୍କ ପ୍ରଣିତ ଗୀତ ଗୁଡ଼ିକରେ ଭଣିତି ପଦ ଲକ୍ଷିତ ହୁଏ ନାହିଁ । ଜନମତ ହୁଏ, ଆତ୍ମପ୍ରୌଢ଼ି ସୂଚିତ ହେବ, ଏହି ଭୟରେ ସେ ରଚିତ ଗୀତିକା ଗୁଡ଼ିକରେ ଭଣିତି ପଦ ନଲେଖି ସୌଜନ୍ୟର ପରାକାଷ୍ଠା ଦେଖାଇଛନ୍ତି ।

ସୀମାଦ୍ରି ପଟ୍ଟନାୟକ ସ୍ଥାନୀୟ ହାଇସ୍କୁଲରେ ଅଷ୍ଟମ ଶ୍ରେଣୀ ପଢୁଥିବା ବେଳେ ପ୍ରଥମ ଇଂରାଜୀ କବିତା ରଚନା କରିଥିବା ଶୁଣାଯାଏ । ପରବର୍ତ୍ତୀ ସମୟରେ ଇଂରାଜି ସାହିତ୍ୟରେ ସେ ଅସାଧାରଣ ପାଣ୍ଡିତ୍ୟ ଲାଭ କରିଥିଲେ । ଓଡ଼ିଆ ଭାଷାରେ ତାଙ୍କର ଜ୍ଞାନ ପ୍ରକାଶ କରି କହିବା କେବଳ ବାହୁଲ୍ୟମାତ୍ର । ତାଙ୍କ ରଚିତ କାବ୍ୟ, କବିତା ଏବଂ ନାଟକାଦିରୁ ସୀମାଦ୍ରିଙ୍କ ଓଡ଼ିଆ ସାହିତ୍ୟ ପ୍ରତି ଅବଦାନ ସହଜରେ ହୃଦୟଙ୍ଗମ କରିହୁଏ। କାବ୍ୟକବିତାଦିରେ ନୂତନତ୍ୱ ଭାବ, ପାଣ୍ଡିତ୍ୟପୂର୍ଣ୍ଣ ଭାଷା ଏବଂ ଅଭିନବ ଶବ୍ଦ ସଂଯୋଜନା ତାଙ୍କ ପ୍ରତିଭାର ପ୍ରକୃତ ପରିଚୟ ପ୍ରଦାନ କରେ । ତଦ୍ରୂପ ନାଟକାଦିରେ ଐତିହାସିକ ତଥ୍ୟ ସହ ସଂଳାପ ଶୈଳୀରେ ନୂତନତ୍ୱ ଏବଂ ରାଜକୀୟ ଗାମ୍ଭିର୍ଯ୍ୟ ଭାଷାଡ଼ମ୍ବର ତାହାଙ୍କ ଶ୍ରେଷ୍ଠତା ପ୍ରତିପାଦିତ କରିଥାଏ ।

ଓଡ଼ିଆ କବିତା ଲେଖିବାରେ ସୀମାଦ୍ରି ପଟ୍ଟନାୟକଙ୍କ ଦକ୍ଷତା ସନ୍ଦେହ କରାଯାଇନପାରେ । ପ୍ରତିବର୍ଷ ନନ୍ଦୋତ୍ସବ ବା ଦୋଳଯାତ୍ରା ଦିନ ଶ୍ରୀକରଣ ସାହିର ଶ୍ରୀରାଧାମୋହନଙ୍କ ମୂର୍ତ୍ତି, କୁଞ୍ଜମଧ୍ୟରେ ଅବସ୍ଥାପିତ ହୋଇ ସହର ପରିକ୍ରମାକରନ୍ତି । ଦୂରରୁ ଶ୍ରୀପ୍ରଭୁଙ୍କ ଆଗମ ଲକ୍ଷ୍ୟ କରି, ପିଣ୍ଡାରେ ବସି ସଙ୍ଗେ ସଙ୍ଗେ ଗୋଟିଏ କବିତା ରଚନା କରିବା ତାଙ୍କର ପ୍ରତିବର୍ଷର ଏକ ଅଭ୍ୟାସଥିଲା। ସେହି ଗୀତଟିକୁ ତାଙ୍କ ଗୃହ ସମ୍ମୁଖରେ ଶ୍ରୀରାଧାମୋହନଙ୍କ ଉଦ୍ଦେଶ୍ୟରେ ସେ ଅର୍ପଣ କରୁଥିଲେ । ଏଥିରୁ ସୀମାଦ୍ରି ପଟ୍ଟନାୟକଙ୍କ ଭାବ ପ୍ରବଣତା, ଭକ୍ତିପ୍ରାଣତା ଏବଂ ପାଣ୍ଡିତ୍ୟର ସ୍ପଷ୍ଟ ପରିଚୟ ମିଳେ ।

ସେ ନରଣପୁରର ଉଚ୍ଚ ପ୍ରାଥମିକ ସ୍କୁଲରେ ଶିକ୍ଷକତା କରୁଥିବା ସମୟରେ ସ୍କୁଲରେ ବସି ମଧ୍ୟ କାବ୍ୟକବିତା ଏବଂ ନାଟକାଦି ରଚନା କରୁଥାନ୍ତି । କିନ୍ତୁ ସୀମାଦ୍ରିଙ୍କ ଏତାଦୃଶ ପାଣ୍ଡିତ୍ୟକୁ ସହ୍ୟ କରିନପାରି, କେତେକ ସ୍ୱାର୍ଥାନ୍ୱେଷୀ ବ୍ୟକ୍ତି, ଶିକ୍ଷାଦାନରେ ଅବହେଳା ପ୍ରଦର୍ଶନ କରୁଥିବା ଦର୍ଶାଇ, ଢେଙ୍କାନାଳ ଡେପୁଟି ଇନ୍‌ସ୍‌ପେକ୍ଟର ଅଫ୍ ସ୍କୁଲ୍‌ସ୍‌ଙ୍କ ନିକଟକୁ ଏକ ରିପୋର୍ଟ ଲେଖି ପଠାଇଥିଲେ । ତାପରେ ଏହାର ଏକ ଲିଖିତ ଉତ୍ତର ଦେବାନିମନ୍ତେ ଡେପୁଟି ଇନ୍‌ସ୍‌ପେକ୍ଟର ଅଫ୍ ସ୍କୁଲ୍‌ସ୍‌ଙ୍କ ଆଦେଶ ହୋଇଥିଲା। ସୀମାଦ୍ରି ପଟ୍ଟନାୟକ, ସେଥିର ଉତ୍ତର ଗୋଟିଏ ଇଂରାଜୀ କବିତା ମାଧ୍ୟମରେ ଦେଇଥିଲେ । କବିଙ୍କର ଉଚ୍ଚକୋଟୀର ଭାଷା ଏବଂ ପଦବିନ୍ୟାସରେ ମୁଗ୍ଧ ହୋଇ,ସେ ଏହାଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣକରିବା ପରିବର୍ତ୍ତେ ତାଙ୍କୁ ସାକ୍ଷାତ କରିବାକୁ ଆସିଥିଲେ ।

ଓଡ଼ିଶାର ପ୍ରଥମ କଥାଚିତ୍ର 'ସୀତାବିବାହ'ର ନିର୍ମାଣକର୍ତ୍ତା, ଲେଖକ ଏବଂ ନିର୍ଦ୍ଦେଶକ ସର୍ବଶ୍ରୀ ମୋହନ ଗୋସ୍ୱାମୀ, ସୀମାଦ୍ରି ପଟ୍ଟନାୟକଙ୍କୁ ଅସୀମ ଶ୍ରଦ୍ଧା କରୁଥିଲେ । ଥରେ ସେ ତାଙ୍କ ଅପେରା ପାର୍ଟି ସହ ଆସି ପାରଳାଖେମୁଣ୍ଡିର ଢେଙ୍କାନାଳ କ୍ଲବ ପେଣ୍ଡାଲରେ ମାନଭଞ୍ଜନ ନାଟକ ପ୍ରଦର୍ଶନ କରିଥିଲେ । ସେ ପ୍ରାୟ ଏକମାସ ସ୍ଥାନୀୟ କରଣ ସାହିର ନୃସିଂହନାଥ ମଠରେ

ରହିଥିଲେ । ଏହି ସମୟ ମଧ୍ୟରେ ସେ ସୀମାଦ୍ରି ପଟ୍ଟନାୟକଙ୍କ କାବ୍ୟକବିତା ଏବଂ ନାଟକାଦିର ସଂସ୍ପର୍ଶରେ ଆସିଥିଲେ । ସୀମାଦ୍ରି ପଟ୍ଟନାୟକ, ସେହି ସମୟରେ ବୟସରେ ତାଙ୍କ ଠାରୁ ବେଶ୍ କମ୍ ଥିଲେବି, ସ୍ୱର୍ଗତ ଗୋସ୍ୱାମୀ ତାଙ୍କୁ ବହୁତ ଆଦର କରୁଥିଲେ ।

ମହାରାଜାଙ୍କ ଅମଳରେ ପାରଳାଖେମୁଣ୍ଡିର ଶିକ୍ଷାଦାନ ପଦ୍ଧତି, ବର୍ତ୍ତମାନ କଲେଜ୍ ମାନଙ୍କରେ ଦିଆଯାଉଥିବା ଶିକ୍ଷାଦାନ ପଦ୍ଧତି ଠାରୁ ବହୁ ଉଚ୍ଚକୋଟୀର ଥିଲା । ସେହି ସମୟରେ ଟ୍ୟୁଟେରିୟଲ୍ କମ୍ ଲାଇବ୍ରେରୀ କ୍ଲାସ୍ ମାନ ରହିଥାଏ । ପ୍ରଥମ ସପ୍ତାହର କ୍ଲାସ୍‌ରେ ଶିକ୍ଷାର୍ଥୀମାନଙ୍କୁ ପ୍ରଶ୍ନ ଦିଆଯାଏ, ଏବଂ ସେଥିପାଇଁ ଲାଇବ୍ରେରୀରୁ ସେମାନଙ୍କୁ ବହି ମଧ୍ୟ ଯୋଗାଇ ଦିଆଯାଇଥାଏ। ଦ୍ୱିତୀୟ ସପ୍ତାହର କ୍ଲାସ୍‌କୁ ଶିକ୍ଷାର୍ଥୀମାନେ ସେଥିର ଉତ୍ତର ଲେଖି ଆଣୁଥିଲେ । ସେହି କ୍ଲାସ୍ ପାଇଁ ନିୟୋଜିତ ଅଧ୍ୟାପକ ମହୋଦୟ, ଶିକ୍ଷାର୍ଥୀମାନଙ୍କର ଉତ୍ତରାନୁଯାୟୀ ମୂଲ୍ୟ ନିରୂପଣ କରୁଥିଲେ ।ଏହି ପରିପ୍ରେକ୍ଷୀରେ, ସୀମାଦ୍ରି ପଟ୍ଟନାୟକଙ୍କ ପାଣ୍ଡିତ୍ୟ ସହ ସଂଶ୍ଳିଷ୍ଟ ଗୋଟିଏ ଘଟଣା ଉଲ୍ଲେଖଯୋଗ୍ୟ ମନେ ହୁଏ ।

ଥରେ ତୋନିବନ ମହାରାଜାସ୍ କଲେଜ୍‌ର ଛାତ୍ର ଥିବା ପାରଳାର ଅନ୍ୟତମ କବି, ଶିଳ୍ପୀ ଏବଂ ନାଟ୍ୟକାର ଶ୍ରୀଯୁକ୍ତ ରଘୁନାଥ ପଟ୍ଟନାୟକଙ୍କ ଠାରୁ ଶୁଣିଥିବା ଗୋଟିଏ ଘଟଣା ଏଠାରେ ଉଲ୍ଲେଖ କରୁଛି । ଶ୍ରୀଯୁକ୍ତ ପଟ୍ଟନାୟକ ଛାତ୍ର ଥିବା ସମୟରେ, ଇଙ୍ଗଲିସ୍ ଟ୍ୟୁଟେରିଆଲ୍ କମ୍ ଲାଇବ୍ରେରୀ କ୍ଲାସ୍‌ର ଅଧ୍ୟାପନା ଦାୟିତ୍ୱରେ ଥାନ୍ତି - ତତ୍କାଳିନ ପ୍ରିନ୍ସିପାଲ୍ ସାର୍ ଏସ୍.ପି. ରେଗ୍‌ଲାଣ୍ଡ୍ । ଇଂରାଜୀ ସାହିତ୍ୟରେ ତାଙ୍କର ଅସାଧାରଣ ଜ୍ଞାନ ରହିଥିବାରୁ, ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ତାଙ୍କୁ ନିଜ କଲେଜ୍‌ରେ ନିଯୁକ୍ତି ଦେଇଥାନ୍ତି । ଦିନେ ପ୍ରୋକ୍ତ କ୍ଲାସ୍ ପାଇଁ ବିଷୟବସ୍ତୁ ଥାଏ - "SHEKSPERIAN TRAGEDY IN ENGLISH DRAMA'.। ଏହି ସନ୍ଦର୍ଭରେ ଶ୍ରୀଯୁକ୍ତ ପଟ୍ଟନାୟକ, ସୀମାଦ୍ରି ପଟ୍ଟନାୟକଙ୍କ ଠାରୁ ଶୁଣେଲିଖନ ବା ଡ଼ିକ୍ଟେସନ୍ ଲେଖି ନେଇଥିଲେ । ତାହା ଏତେ ହୃଦୟସ୍ପର୍ଶୀ ଏବଂ ଉଚ୍ଚକୋଟୀର ହୋଇଥିଲାଯେ, ପ୍ରିନ୍ସିପାଲ୍ ସାର୍ ଏସ୍.ପି. ରେଗ୍‌ଲାଣ୍ଡ୍ ତାହା ଦେଖି ବିସ୍ମିତ ହୋଇଯାଇଥିଲେ । ସେ ଛାତ୍ର ଶ୍ରୀଯୁକ୍ତ ପଟ୍ଟନାୟକଙ୍କୁ ପଚାରିଥିଲେ - "Where from you get this criticism?" ଛାତ୍ର ଶ୍ରୀଯୁକ୍ତ ପଟ୍ଟନାୟକ, ସମସ୍ତ ଘଟଣା ତାଙ୍କୁ ଜଣାଇଥିଲେ । ତାପରେ ପ୍ରିନ୍ସିପାଲ୍ ମହୋଦୟ ସ୍ୱୟଂ ସୀମାଦ୍ରି ପଟ୍ଟନାୟକଙ୍କ ସହ ସାକ୍ଷାତ କରିବାକୁ ଇଚ୍ଛା ପ୍ରକାଶ କରିଥିଲେ । ଏଠାରେ ମୋତେ ଗୋଟିଏ ଶ୍ଳୋକ ମନେ ପଡ଼େ -

ବିଦ୍ୟାନେ୍ୱବ ବିଜାନାତି ବିଦ୍ୱଜ୍ଜନ ପରିଶ୍ରମମ୍
ନହି ବନ୍ଧ୍ୟା ବିଜାନାତି ଗୁର୍ବୀ ପ୍ରସବ ବେଦନାମ୍ ।।

ଅର୍ଥାତ୍ ଯେ ବନ୍ଧ୍ୟା ନୁହଁ, ସେହିଁ ପ୍ରସବ ବେଦନାର କଷ୍ଟ ଜାଣି ପାରିଥାଏ । ସେହିପରି ଯେ ଗୁଣୀ ଲୋକ, ସେହିଁ ବିଦ୍ୱାନ ଲୋକଙ୍କର ପରିଶ୍ରମକୁ ଉପଲବ୍ଧି କରିଥାଏ । ପ୍ରିନ୍ସିପାଲ୍ ଶ୍ରୀଯୁକ୍ତ ରେବ୍ଲାଣ୍ଡ୍ ଏବଂ ସୀମାଦ୍ରି ପଟ୍ଟନାୟକଙ୍କ ମଧ୍ୟରେ ସେହିପରି ଏକ ସମ୍ପର୍କ ସ୍ଥାପିତ ହୋଇଥିଲା, ଯାହାକି ସେ ଦୁହିଁଙ୍କୁ ନିକଟତର କରିପାରିଥିଲା ।

ଏହାର ପରବର୍ତ୍ତୀ ସମୟରେ ସ୍ଥାନୀୟ କଲେଜ୍‌ର ଇଂରାଜୀ ବିଭାଗ ପକ୍ଷରୁ "SHEKSPERIAN TRAGEDY IN ENGLISH DRAMA' ବିଷୟରେ ଏକ ଆଲୋଚନା ଚକ୍ର ଅନୁଷ୍ଠିତ ହୋଇଥିଲା । ଏଥିପାଇଁ ପ୍ରିନ୍ସିପାଲ୍ ସାର୍ ଏସ୍.ପି. ରେବ୍ଲାଣ୍ଡ୍ ସୀମାଦ୍ରି ପଟ୍ଟନାୟକଙ୍କୁ ମୁଖ୍ୟବକ୍ତା ଭାବେ ଆମନ୍ତ୍ରଣ କରିଥିଲେ । ଶ୍ରୀଯୁକ୍ତ ପଟ୍ଟନାୟକ, ପ୍ରିନ୍ସିପାଲ୍‌ଙ୍କ ନିମନ୍ତ୍ରଣ ରକ୍ଷା କରି ସେଦିନ ଯେଉଁ ଉଦ୍‌ବୋଧନ ଦେଇଥିଲେ, ତାହା ଅତୀବ ହୃଦୟସ୍ପର୍ଶୀ ଏବଂ ପାଣ୍ଡିତ୍ୟପୂର୍ଣ୍ଣ ବିବେଚିତ ହୋଇଥିଲା । କିନ୍ତୁ ସେ ଭାଷଣର ଶେଷରେ କହିଥିଲେ - "But unfortunately I am a plucked Intermedite." ଏହା କହିବା କ୍ଷଣି ଶ୍ରୋତାମଣ୍ଡଳୀ କରତାଳିରେ ସଭାମଞ୍ଚ ମୁଖରିତ କରିଥିଲେ । ଶ୍ରୋତାମଣ୍ଡଳି ଅଭିନନ୍ଦନ ଜଣାଇ, ତାଙ୍କ ପାଣ୍ଡିତ୍ୟକୁ ସେଦିନ ଯେପରି ବାରମ୍ବାର ସ୍ୱାଗତ କରିଥିଲେ । ତାପରେ ଅଧ୍ୟାପକ ଗୋଲୋକନାଥ ରଥ (ପରବର୍ତ୍ତୀ ସମୟରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର କୁଳପତି), ଅଧ୍ୟାପକ ପି.ଜୟରମନ୍ ଏବଂ ଅଧ୍ୟାପକ ଟାଟା କୃଷ୍ଣମୂର୍ତ୍ତୀ ନିଜ ନିଜର ବକ୍ତବ୍ୟ ପ୍ରଦାନ କରିଥିଲେ । ଅଧ୍ୟାପକ ଟାଟା କୃଷ୍ଣମୂର୍ତ୍ତୀ, ସୀମାଦ୍ରି ପଟ୍ଟନାୟକଙ୍କ ଇଂରାଜୀ ସାହିତ୍ୟରେ ଅସାଧାରଣ ପାଣ୍ଡିତ୍ୟକୁ ସେଦିନ ବହୁତ ପ୍ରଶଂସା କରିଥିଲେ । ତାଙ୍କର ଅସୀମ ଜ୍ଞାନ ସନ୍ଦର୍ଭରେ ସୂଚନା ଦେବାକୁ ଯାଇ, ସେ ଗୋଟିଏ ଅମରବାଣୀ ଉଦ୍ଧାର କରି କହିଥିଲେ -

ସତ୍ୟଂ ତପୋଜ୍ଞାନ ମହିଂସତାଚ ବିଦ୍ୱଦ୍ ପ୍ରଣାମଂଚ ସୁଶୀଳତାଚ
ଏତାନି ଯୋ ଧାରୟତେ ସ ବିଦ୍ୱାନ୍, ନ କେବଳଂ ଯଃ ପଠତେ ସ ବିଦ୍ୱାନ୍ ॥

ଅର୍ଥାତ୍ ସତ୍ୟସାଧନା, ଜ୍ଞାନ, ଅହିଂସା, ନମ୍ରତା ଓ ଭଦ୍ର ବ୍ୟବହାର ଭଳି ଗୁଣର ଅଧିକାରୀ ହିଁ ବିଦ୍ୱାନ୍ , ଖାଲି ପାଠ ପଢ଼ିଥିବା ଲୋକ ବିଦ୍ୱାନ୍ ନୁହେଁ । ସେହିପରି ସୀମାଦ୍ରିଙ୍କ ଯାହା ଶିକ୍ଷାଗତ ଯୋଗ୍ୟତା ଥାଉନା କାହିଁକି, ତାଙ୍କ ଜ୍ଞାନର ପରିସୀମାହିଁ ତାହାଙ୍କ ବ୍ୟକ୍ତିତ୍ୱର ପରିଚୟ ପ୍ରଦାନ କରିଥିବା ସେ ସୂଚନା ଦେଇଥିଲେ । ଏହିପରି ଭାବେ ବହୁ ଉତ୍ସାହ ଏବଂ ଉଦ୍ଦୀପନାର ସହ ପରସ୍ପର ପ୍ରତି ସ୍ନେହ ସମ୍ଭାଷଣ ମଧ୍ୟରେ ପରିଶେଷରେ ସଭାକାର୍ଯ୍ୟ ଶେଷ ହୋଇଥିଲା ।

ସ୍ଥାନୀୟ କଲେଜ୍‌ରେ ଅଟିବେଢ଼ି ଜଗନ୍ନାଥ ଦାସଙ୍କ ଜୟନ୍ତୀ ଉତ୍ସବ ପାଳନ ଅବସରରେ ମଧ୍ୟ ସେ ମୁଖ୍ୟବକ୍ତା ଭାବେ ଯୋଗ ଦେଇଥିଲେ । ଏହିପରି ଭାବେ ସ୍ଥାନୀୟ କଲେଜ୍‌ର ବହୁ ଉତ୍ସବ ସହ ସଂଶ୍ଲିଷ୍ଟ ରହି, ସେ ନିଜର ଅସାଧାରଣ ପାଣ୍ଡିତ୍ୟ ପ୍ରକାଶ କରିଥିଲେ ।

ସ୍ଥାନୀୟ ଉଦୀୟମାନ ଉତ୍କଳ ସାହିତ୍ୟ ସଂଘର ଜଣେ ସକ୍ରୀୟ ଉଦ୍ୟୋକ୍ତା ଏବଂ ପ୍ରବୀଣ ବକ୍ତା ଭାବେ ସୀମାଦ୍ରି ପଟ୍ଟନାୟକ, ଗୋପାଳକୃଷ୍ଣଙ୍କ ସ୍ମୃତି ଉଦ୍ଦେଶ୍ୟରେ ପ୍ରତିବର୍ଷ ସପ୍ତାହ ବ୍ୟାପି ଉତ୍ସବର ଆୟୋଜନ କରୁଥିଲେ । ମୁଖ୍ୟତଃ ତାହାଙ୍କ ତତ୍ତ୍ୱାବଧାନରେ, ସ୍ଥାନୀୟ ସଙ୍ଗୀତ ସ୍କୁଲର ଛାତ୍ରୀମାନଙ୍କ ଦ୍ୱାରା "ବୃନ୍ଦାବନ ବିନୋଦ"ନାମକ ଏକ ଅପେରା ପ୍ରତିବର୍ଷ ଅତି ଉପଭୋଗ୍ୟ ହୋଇଥାଏ । ୧୯୫୪ ବା ୧୯୫୫ ଖ୍ରୀଷ୍ଟାବ୍ଦର ଏକ ଘଟଣା । ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଏହି ଉତ୍ସବ ନିମନ୍ତେ ନିମନ୍ତ୍ରିତ ହୋଇଥାନ୍ତି । ସଭାକାର୍ଯ୍ୟ ଶେଷରେ ପ୍ରତିବର୍ଷ ପରି ସ୍ଥାନୀୟ ସଙ୍ଗୀତ ସ୍କୁଲର ଛାତ୍ରୀମାନଙ୍କ ଦ୍ୱାରା "ବୃନ୍ଦାବନ ବିନୋଦ" ଅଭିନୀତ ହୋଇଥିଲା । । ପ୍ରୋକ୍ତ ଅପେରାର ସଙ୍ଗୀତ, ନୃତ୍ୟ ଏବଂ ଅଭିନୟ ଏତେ ଚିତ୍ତାକର୍ଷକ ହୋଇଥିଲାଯେ, ମୁଖ୍ୟମନ୍ତ୍ରୀ ମହୋଦୟ ନିଜେ ସେଥିରୁ କିୟଦଂଶ ଉପଭୋଗ କରିଥିଲେ । ପରିଶେଷରେ, ପାରଳାର ସାଂସ୍କୃତିକ ପରମ୍ପରାର ବିକାଶ ପାଇଁ, ଅପେରାର ମୁଖ୍ୟ ଉଦ୍ୟୋକ୍ତା ସୀମାଦ୍ରି ପଟ୍ଟନାୟକଙ୍କ କାର୍ଯ୍ୟାବଳୀକୁ ସେ ବହୁ ପ୍ରଶଂସା କରି, ସ୍ଥାନୀୟ ସଙ୍ଗୀତ ସ୍କୁଲର ଅଭିବୃଦ୍ଧି ନିମନ୍ତେ ଚାରିଶତ ଟଙ୍କା ମଞ୍ଜୁର କରିଥିଲେ ।

ସୀମାଦ୍ରି ପଟ୍ଟନାୟକଙ୍କ କୃତ ନାଟକ ଗୁଡ଼ିକ ବିଭିନ୍ନ ଉତ୍ସବାନୁଷ୍ଠାନ ମାନଙ୍କରେ ଏବଂ ଓଡ଼ିଶାର ବିଭିନ୍ନ ସ୍ଥାନରେ ମଧ୍ୟ ବହୁବାର ଅଭିନୀତ ହୋଇଛି । କିନ୍ତୁ ପାରଳାର ବୃନ୍ଦାବନ ପେଲେସ୍‌ରେ ଅଭିନୀତ ହୋଇଥିବା, ତାହାଙ୍କ ପ୍ରଣୀତ "ଚୋଡ଼ଗଙ୍ଗଦେବ" ନାଟକର ମଧୁର ସ୍ମୃତି ବର୍ତ୍ତମାନ ସୁଦ୍ଧା କେତେକଙ୍କ ମନରୁ ଅନ୍ତର ହୋଇନାହିଁ ।

୧୯୪୨ ଖ୍ରୀଷ୍ଟାବ୍ଦର ଏକ ଘଟଣା । ମହାରାଜା କୃଷ୍ଣଚନ୍ଦ୍ର ଗଜପତି ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାନ୍ତି । ସାର୍. ହେଥର୍ଣ୍ଣ ଲିଉସ୍ ଓଡ଼ିଶାର ଗଭର୍ଣ୍ଣର୍ ପଦବୀରେ ରହିଥାନ୍ତି । ଥରେ ମହାରାଜା, ଗଭର୍ଣ୍ଣର୍‌କୁ ଧରି ପାରଳା ଆସିବା ପୋଗ୍ରାମ୍ ରହିଥାଏ । ମହାରାଜା, ତାର କିଛି ଦିନ ପୂର୍ବରୁ ଏହି ବିଷୟ ଫୋନ୍ କରି ତାଙ୍କ ଦେୱାନ୍‌କୁ ଜଣାଇଥିଲେ । ତେଣୁ ଗଭର୍ଣ୍ଣର୍‌ଙ୍କ ରହଣି ନିମନ୍ତେ ବୃନ୍ଦାବନ ପେଲେସ୍‌ରେ ସମସ୍ତ ଆୟୋଜନ କରାଯାଇଥାଏ । ଏହି ସମୟରେ ମହାରାଜାଙ୍କ ନିକଟରୁ ପୁଣି ଏକ ଫୋନ୍ ଆସିଥିଲା । ଫୋନ୍‌ରେ ସେଦିନ ମହାରାଜା କହିଥିଲେ - "Ask simhadri Patnaik of Karan Sahi to enact his drama in B.N. Palace, on this occassion." ସଙ୍ଗେ ସଙ୍ଗେ ସୀମାଦ୍ରି ପଟ୍ଟନାୟକଙ୍କୁ ଏହି ବିଷୟ ଜଣାଇ ଦିଆଯାଇଥିଲା । ସୀମାଦ୍ରି ପଟ୍ଟନାୟକ, ଏହି ଉତ୍ସବ ନିମନ୍ତେ ସ୍ୱଲିଖିତ ନାଟକ "ଚୋଡ଼ଗଙ୍ଗଦେବ" ଅଭିନୟ କରାଇବା ନିମନ୍ତେ ଉପଯୁକ୍ତ ବିବେଚନା କରିଥିଲେ । କାରଣ,

ଅନ୍ୟତମ ପୂର୍ବପୁରୁଷ ତ୍ରିକଳିଙ୍ଗାଧିପତି ବୀରଶ୍ରୀ ଚୋଡ଼ଗଙ୍ଗଦେବଙ୍କ ସମ୍ବନ୍ଧୀୟ ନାଟକ, ମହାରାଜାଙ୍କ ହୃଦୟକୁ ଗଭୀର ପ୍ରଭାବିତ କରିପାରିବ, ଏହା ସେ ଯଥାର୍ଥରେ ଉପଲବ୍ଧି କରିପାରିଥିଲେ । ମହାରାଜାଙ୍କ ସ୍ୱତନ୍ତ୍ର ଆଦେଶ ହେବା ଫଳରେ, ଏହି ଡ୍ରାମା ନିମନ୍ତେ ଆବଶ୍ୟକ ସମସ୍ତ ପୋଷାକ, ଶାଢ଼ୀ ଏବଂ ବେଶଭୂଷା ରାଜନବରରୁ ଯୋଗାଇ ଦିଆଯାଇଥିଲା । ଡ୍ରାମା ନିମନ୍ତେ ରାଜା ଏବଂ ରାଣୀଙ୍କ ପୋଷାକ, ଶାଢ଼ୀ ଏବଂ ବେଶଭୂଷା ଯୋଗାଇବା ଏହାହିଁ ସର୍ବପ୍ରଥମ ଏବଂ ସର୍ବଶେଷ ଘଟଣା ଭାବେ ଲୋକମୁଖରୁ ଶୁଣାଯାଏ । ପାଶ୍ଚାତ୍ୟ ସଂସ୍କୃତିରେ ବଢ଼ିଥିବା ଜଣେ ବନ୍ଧୁଙ୍କୁ, ଓଡ଼ିଶାର ସାହିତ୍ୟ ଏବଂ ସଂସ୍କୃତି ପ୍ରତି ପ୍ରଭାବିତ କରିବା ପାଇଁ ମହାରାଜାଙ୍କ ଏତାଦୃଶ ଉତ୍ସାହ ଏବଂ ପ୍ରେରଣା ଭାବିଲେ ପ୍ରକୃତରେ ଆଶ୍ଚର୍ଯ୍ୟ ଲାଗେ ।

ନାଟ୍ୟକାର ସୀମାଦ୍ରିଙ୍କ କୃତ ନାଟକ "ଚୋଡ଼ଗଙ୍ଗଦେବ" ବୃନ୍ଦାବନ ପେଲେସ୍‌ରେ ଅଭିନୀତ ହୋଇଥିଲା । ନାଟକଟି ନିର୍ଦ୍ଦେଶନା ଦେଇଥିଲେ ସ୍ୱୟଂ ନାଟ୍ୟକାର । ନାଟକରେ ଚୋଡ଼ଗଙ୍ଗ ଭୂମିକା ଗ୍ରହଣ କରିଥିଲେ ଶ୍ରୀ ଶରତ କୁମାର ବେବର୍ତ୍ତା ଏବଂ ନନ୍ଦିକେଶ୍ୱରୀ ଭୂମିକାରେ ଅଭିନୟ କରିଥିଲେ ଶ୍ରୀ ରଘୁନାଥ ପଟ୍ଟନାୟକ । ଅନ୍ୟ ସଙ୍ଗୀତଜ୍ଞଙ୍କ ଗହଣରେ ଶ୍ରୀଭକ୍ତବତ୍ସଳ ପାତ୍ର ମୃଦଙ୍ଗ ବାଦ୍ୟରେ ସହଯୋଗ କରିଥିଲେ । ମହାରାଜା, ଗଭର୍ଣ୍ଣର ସାହେବ୍ ଏବଂ ଅନ୍ୟାନ୍ୟ ମାନ୍ୟବ୍ୟକ୍ତିଙ୍କ ମଧ୍ୟରେ ସେହି ନାଟକଟି ଏତେ ଉପଭୋଗ୍ୟ ହୋଇପାରିଥିଲାଯେ, ଅଦ୍ୟାପି ସେହି ମଧୁର ସ୍ମୃତି ଅଦ୍ୱିତୀୟ ଭାବେ ଏହି ଅଞ୍ଚଳରେ ଗଣ୍ୟ ହୋଇଥାଏ । ନାଟକର ମଧ୍ୟ ଭାଗରେ ପୁଷ୍ପଶଯ୍ୟାର ଗୋଟିଏ ଦୃଶ୍ୟ ରହିଥାଏ । ସେହି ଦୃଶ୍ୟଟି ନିମନ୍ତେ, ମହାରାଜାଙ୍କ ଆଦେଶରେ ସ୍ଥାନୀୟ ସୀତାସାଗର ଏବଂ ରାମସାଗରରୁ ପ୍ରାୟ ୭-୮ ଶରଢ଼ ପଦ୍ମଫୁଲ ଅଣାଯାଇଥିଲା । ମହାରାଜାଙ୍କ ଏତାଦୃଶ ଉତ୍ସାହ ଏବଂ ଶ୍ରଦ୍ଧା, ନାଟ୍ୟକାରଙ୍କ ଅକ୍ଳାନ୍ତ ପରିଶ୍ରମ ଏବଂ ଅଭିନେତାମାନଙ୍କ ଦକ୍ଷତା ଯୋଗୁଁ, ନାଟକଟି ଅତୀବ ଚିତ୍ତାକର୍ଷକ ଏବଂ ହୃଦୟଗ୍ରାହୀ ହୋଇପାରିଥିଲା ।

"ଚୋଡ଼ଗଙ୍ଗଦେବ" ନାଟକ ଅଭିନୀତ ହେବା ପରଦିନ ମଧ୍ୟାହ୍ନ ଠିକ୍ ୧୧ ଘଣ୍ଟା ସମୟ ହୋଇଥାଏ । ମହାରାଜା, ଗଭର୍ଣ୍ଣର୍ ସାହେବ୍ ଏବଂ ଅନ୍ୟ ଭଦ୍ର ମଣ୍ଡଳୀ ସହ ରାଜ ଦରବାରରେ ବସିଥାନ୍ତି । ହଠାତ୍ ମହାରାଜା, ସୀମାଦ୍ରିଙ୍କୁ ଡ଼ାକି ଆଣିବା ପାଇଁ ତାଙ୍କ ସମସ୍ଥାନର ଟାଇପିଷ୍ଟ ଶ୍ରୀ ସାରଥି ପାତ୍ରଙ୍କୁ ଆଦେଶ ଦେଇଥିଲେ । ସଙ୍ଗେ ସଙ୍ଗେ ଶ୍ରୀ ସାରଥି ପାତ୍ର, ସୀମାଦ୍ରିଙ୍କ ଘରକୁ ଯାଇ ତାଙ୍କୁ ଡ଼ାକି ଆଣିଥିଲେ । ଅଭିନୀତ ହୋଇଥିବା ନାଟକର ସଙ୍ଗୀତଜ୍ଞ, ବାଦକ ଏବଂ ଅଭିନେତା ମାନଙ୍କୁ ଡ଼ାକି ଆଣିବାକୁ ମଧ୍ୟ ମହାରାଜାଙ୍କ ଆଦେଶ ହୋଇଥିଲା । ସେଦିନ ଦର୍ବାର ହାଲ୍‌ରେ ଗଭର୍ଣ୍ଣରଙ୍କ ଉପସ୍ଥିତିରେ ମହାରାଜା ସମସ୍ତଙ୍କୁ ସମ୍ମାନିତ କରିଥିଲେ ।

ଏସବୁର ଫଳସ୍ୱରୂପ, ସୀମାଦ୍ରି ପଟ୍ଟନାୟକଙ୍କ ଐକ୍ୟ ପ୍ରତିଭା ଏବଂ ପାଣ୍ଡିତ୍ୟ ଯୋଗୁଁହିଁ ସମ୍ଭବ ହୋଇପାରିଥିଲା । ସେ ନିଜେ ନାଟ୍ୟକଳାର ଯେପରି ଏକ କେନ୍ଦ୍ର ବିନ୍ଦୁ ଥିଲେ, ତାଙ୍କ ଗୃହ ସେହିପରି, ବହୁ ନାଟ୍ୟପ୍ରେମୀଙ୍କ କେନ୍ଦ୍ରସ୍ଥଳ ରୂପେ ସେହି ସମୟରେ ପରିଗଣିତ ହେଉଥିଲା । ସେ ଶିକ୍ଷକତା କରି, ସେହି ସମୟରେ ମାତ୍ର ୬୦ ଟଙ୍କା ଦରମା ପାଉଥିଲେ ମଧ୍ୟ, ଦରମାର ଅଧିକାଂଶ ନାଟକ ଗୁଡ଼ିକର ରିହର୍ସଲ୍ ନିମନ୍ତେ ଖର୍ଚ୍ଚ କରିଦେଉଥିଲେ । ବହୁ ସ୍ଥାନୀୟ ଅଭିନେତା, ତାଙ୍କ ଠାରୁ ଯେଉଁପରି ଭାବେ ଉତ୍ସାହ ଏବଂ ପ୍ରେରଣା ପାଉଥିଲେ, ସେହିପରି ଏକ ଦୃଷ୍ଟାନ୍ତ କ୍ୱଚିତ୍ ଦେଖାଯାଇଥାଏ ।

ସୀମାଦ୍ରି ପଟ୍ଟନାୟକ ଓଡ଼ିଆ ଭାଷାରେ ବହୁ କାବ୍ୟକବିତା ଏବଂ ନାଟକାଦି ରଚନା କରିଛନ୍ତି । ଇଂରାଜୀ ଭାଷାରେ ମଧ୍ୟ ସେ ବହୁ କାବ୍ୟକବିତାଦି ରଚନା କରିଛନ୍ତି । ବର୍ତ୍ତମାନ ସେ ସବୁ ପ୍ରଣୀତ ଗ୍ରନ୍ଥ ଗ୍ରନ୍ଥ ଗୁଡ଼ିକ ସମ୍ବନ୍ଧରେ କିଛି ସୂଚନା ଦେବା ଯଥାର୍ଥ ମନେ ହୁଏ ।

(କ) ୧. <u>ପୃଥ୍ୱୀରାଜ</u> - ଏହି ନାଟକଟି ପ୍ରକାଶ ପାଇଛି । ଏହାର ପ୍ରକାଶ କାର୍ଯ୍ୟ ବଡ଼ଖେମୁଣ୍ଡି ରାଜାସାହେବ ରାମଚନ୍ଦ୍ରଦେବଙ୍କ ଆନୁକୂଲ୍ୟରେ ଆରମ୍ଭ ହୋଇ, ପାରଳାଖେମୁଣ୍ଡି ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ କୃପା ଯୋଗୁଁ ପୂର୍ଣ୍ଣତା ଲାଭ କରିଥିଲା । ଏହି ନାଟକଟି ରାଜପୁତ ବୀର ପୃଥ୍ୱୀରାଜଙ୍କ ବୀରତ୍ୱ କାହାଣୀ ଉପରେ ଆଧାରିତ, ଯେକି ଭାରତବର୍ଷର ପ୍ରଥମ ସ୍ୱାଧୀନତା ସଂଗ୍ରାମୀ ଭାବେ, ବିଦେଶୀଙ୍କ ସହ ଲଢ଼ି ଶେଷରେ ଶହୀଦ୍ ହୋଇଛନ୍ତି । ଏହା ଓଡ଼ିଶାର ପ୍ରାୟ ସମସ୍ତ ସହରରେ, ମୁଖ୍ୟତଃ ସୀମା ନିର୍ଦ୍ଦେଶ ବିଧାନାର୍ଥେ ବଙ୍ଗଳାର ନିରପେକ୍ଷ ଦେଶନେତା ପ୍ରଫୁଲଚନ୍ଦ୍ର ରାୟଙ୍କ ନେତୃତ୍ୱରେ ଓଡ଼ିଶାର ପ୍ରାଦେଶିକ ସମ୍ମିଳନ ବେଳେ, ୧୯୨୪ ଖ୍ରୀଷ୍ଟାବ୍ଦରେ କଟକ ସହରରେ ଅଭିନୀତ ହୋଇଥିଲା । ନାଟ୍ୟକାର ନିଜେ ସେଥିରେ ପୃଥ୍ୱୀରାଜ ଭୂମିକା ଗ୍ରହଣକରି ଦର୍ଶକ ବୃନ୍ଦଙ୍କୁ ଚକିତ କରିଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ, ସୀମାଦ୍ରି ପଟ୍ଟନାୟକଙ୍କ ନେତୃତ୍ୱରେ ପାରଳାର ଉଦୀୟମାନ ଉତ୍କଳ ସାହିତ୍ୟସଂଘ, ସ୍ଥାନୀୟ କଳା, ସଙ୍ଗୀତ ଏବଂ ସାହିତ୍ୟର ଉତ୍କର୍ଷତା ଏହି ସମ୍ମିଳନୀରେ ଉପସ୍ଥାପିତ କରିଥିଲେ ।

୧୯୧୭ ଖ୍ରୀଷ୍ଟାବ୍ଦରେ "ପୃଥ୍ୱୀରାଜ" ନାଟକ ରଚିତ ହୋଇଥିବା ଜଣାଯାଏ । ଏହା ନାଟ୍ୟକାରଙ୍କ ସର୍ବପ୍ରଥମ ନାଟକ ରଚନା । ଅମିତ୍ରାକ୍ଷର ଶବ୍ଦ ସଂଯୋଜନା, ଏହି ନାଟକର ଏକ ମୁଖ୍ୟ ବିଶେଷତ୍ୱ । ଅର୍ଥାତ୍ ନାଟକର ମୁଖ୍ୟ ଚରିତ୍ର ମାନଙ୍କର ସଂଳାପ ପଦ୍ୟଶୈଳୀରେ ରଚିତ ହୋଇଥାଏ । ଅନ୍ୟପକ୍ଷରେ ଗୌଣ ଚରିତ୍ର ଗୁଡ଼ିକର ସଂଳାପ ସମ୍ପୂର୍ଣ୍ଣ ରୂପେ ଗଦ୍ୟଶୈଳୀ ଉପରେ ଆଧାରିତ ହୋଇଥାଏ । ଦର୍ଶକ ମାନଙ୍କ ଚିତ୍ତ ବିନୋଦାନାର୍ଥେ ଏପରି ଶୈଳୀରେ ନାଟକ ରଚନା ହେବା ଦୃଷ୍ଟାନ୍ତ, ବହୁ ପାଶ୍ଚାତ୍ୟ ନାଟ୍ୟକାରମାନଙ୍କ ଲେଖାରେ ଦେଖିବାକୁ ମିଳିଥାଏ । ମୁଖ୍ୟତଃ

ସେକ୍ସପିଏର୍‌ଙ୍କ ଡ୍ରାମା ଗୁଡ଼ିକରେ ଏପରି ଶୈଳୀ ବ୍ୟବହୃତ ହୋଇଥିବା ଦୃଷ୍ଟିଗୋଚର ହୁଏ । ଆଲୋଚ୍ୟ ନାଟ୍ୟକାରଙ୍କର "ପୃଥ୍ୱୀରାଜ" ନାଟକରେ ଏପରି ଶୈଳୀହିଁ ବ୍ୟବହୃତ ହୋଇଅଛି ।

୨. ଅନଙ୍ଗଭୀମଦେବ - ଏହି ଦ୍ୱିତୀୟ ପ୍ରକାଶିତ ନାଟକଟି ଗଙ୍ଗବଂଶାବତଂଷ ମହାରାଜା ଶ୍ରୀ ଅନଙ୍ଗଭୀମଦେବ ଏବଂ ଗୀତଗୋବିନ୍ଦର ରଚୟିତା ଜୟଦେବଙ୍କ ଜୀବନୀ ଉପରେ ଆଧାରିତ । ଏହା ୧୯୨୯ ଖ୍ରୀଷ୍ଟାବ୍ଦରେ ପର୍ଯ୍ୟାୟକ୍ରମେ ଓଡ଼ିଶାର ବହୁ ସ୍ଥାନରେ ଅଭିନୀତ ହୋଇ ପ୍ରଶଂସିତ ହୋଇପାରିଛି । ଏହି ନାଟକଟି ୧୯୩୬ ଖ୍ରୀଷ୍ଟାବ୍ଦରେ ଯନ୍ତ୍ରସ୍ଥ ହୋଇଥିଲେହେଁ, ବହୁ ଦୁର୍ଘଟଣା ଓ ଦୁର୍ଭାଗ୍ୟର କଶାଘାତ ମଧ୍ୟରେ ପଡ଼ି, ନାଟ୍ୟକାର ଜୀବନ ନିର୍ବାହ କରୁଥିବା ଯୋଗୁଁ ତାହା ଅର୍ଦ୍ଧ ପ୍ରକାଶିତ ହୋଇ ରହିଥିଲା । କିନ୍ତୁ ୧୯୫୪ ଖ୍ରୀଷ୍ଟାବ୍ଦରେ ପ୍ରାଦେଶିକ ଲୋକ ମଙ୍ଗଳ ବିଭାଗର ଆନୁକୂଲ୍ୟରେ ଅପରାର୍ଦ୍ଧଟିର ଯୋଗାଡ଼ ଚାଲି ୧୯୫୨ ଖ୍ରୀଷ୍ଟାବ୍ଦରେ ତାହା ପୂର୍ଣ୍ଣତାଲାଭ କରିଥିଲା । ଏହି ନାଟକଟିର ଐତିହାସିକ ଏବଂ ସାହିତ୍ୟିକ ମୂଲ୍ୟ ହୃଦୟଙ୍ଗମକରି ୧୯୫୪ ଖ୍ରୀଷ୍ଟାବ୍ଦରେ, ପ୍ରାଦେଶିକ ଲୋକମଙ୍ଗଳ ବିଭାଗ ଦ୍ୱାରା ଭୁବନେଶ୍ୱର ଠାରେ ନାଟ୍ୟକାରଙ୍କୁ ପୁରସ୍କୃତ କରାଯାଇଥିଲା । ପ୍ରୋକ୍ତ ନାଟକଟି ସେ ମାତ୍ର ତିନି ଅଳିରେ ରଚନା କରିଥିବା, ତାଙ୍କ ପତ୍ନୀ ପଦ୍ମାବତୀଙ୍କ ଠାରୁ ଶୁଣାଯାଏ ।

୩. ପ୍ରତାପରୁଦ୍ର ସଂସ୍ଥାତା - ଏହି ନାଟକଟିରେ, ଷୋଡ଼ଶ ଶତାବ୍ଦୀରେ ଗୌରାଙ୍ଗଦେବ ଏବଂ ପ୍ରତାପରୁଦ୍ରଦେବ କିପରି ଭାବେ ହିନ୍ଦୁଧର୍ମରେ ସଂସ୍କାର ଆଣିଥିଲେ, ତାହା ବର୍ଣ୍ଣିତ ହୋଇଅଛି । ଜଗନ୍ନାଥଙ୍କ ଧର୍ମ, ଜୟଦେବଙ୍କ ଗୀତଗୋବିନ୍ଦ ଏବଂ ମୁକ୍ତିମଣ୍ଡପର ନୀତି ଭାରତୀୟ ସଂସ୍କୃତିର ମୂଳଦୁଆ ପକାଇଥିବା ଏଥିରୁ ସୂଚିତ ହୁଏ । ଭାରତର ବହୁବିଧ ଭିନ୍ନତା ମଧ୍ୟରେ ଏକତ୍ୱର ପ୍ରତିଷ୍ଠା ପାଇଁ ଏବଂ 'ବସୁଧୈବଂ କୁଟୁମ୍ବକମ୍' ନ୍ୟାୟରେ ବିଶ୍ୱ ଭାତୃତ୍ୱର ବନ୍ଧନରେ ବାନ୍ଧି ହେବା ପାଇଁ ଏହା ଏକ ମୂଲ୍ୟବାନ କୃତି । ନାଟ୍ୟକାର ସୀମାଦ୍ରି ପଟ୍ଟନାୟକ, ଏହି ନାଟକର ଲେଖକ ଏବଂ ଅଭିନେତା ଭାବରେ ୧୯୨୯ ଖ୍ରୀଷ୍ଟାବ୍ଦରେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଠାରୁ ମାନପତ୍ର ପାଇ ସମ୍ମାନିତ ହୋଇଥିଲେ । ଏହି ନାଟକଟି ୧୯୨୯ ଖ୍ରୀଷ୍ଟାବ୍ଦରେ ପାରଳାର ରାଜନଗର ମଧ୍ୟରେ ଅଭିନୀତ ହୋଇଥିଲା । ଓଡ଼ିଶାର ଅନ୍ୟ କେତେକ ସ୍ଥାନରେ ମଧ୍ୟ ଏହା ଅଭିନୀତ ହୋଇଛି ।

୪. ଚୋଡ଼ଗଙ୍ଗଦେବ - ଏହି ନାଟକଟି, ମହାରାଜା ଚୋଡ଼ଗଙ୍ଗଦେବଙ୍କ ଜୀବନୀ ଉପରେ ଆଧାରିତ, ଯେକି ସର୍ବଦା ଯୁଦ୍ଧର ପକ୍ଷପାତୀ ଥିଲେ । ଐତିହାସିକ ହାଣ୍ଟରଙ୍କ ଭାଷାରେ - "He won Orissa by diplomacy, rather than by War." ୧୬୮୮ ଖ୍ରୀଷ୍ଟାବ୍ଦରେ, ରକ୍ତଶୂନ୍ୟ ବିପ୍ଳବ ବ୍ରିଟେନ୍‌ରେ ଅନୁଷ୍ଠିତ ହେବା ବହୁ ପୂର୍ବରୁ ଓଡ଼ିଶାରେ ସେହି ଭାବଧାରାର

ଉଦୟ ଘଟିଥିବା ଚୋଡ଼ଗଙ୍ଗଦେବଙ୍କ ଜୀବନକୁ ହୃଦୟଙ୍ଗମ କରିହୁଏ ।

୫. ଉତ୍କଳ ଚନ୍ଦ୍ରୋଦୟ ନାଟକ - ଏହି ନାଟକଟିରେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଦେଶମିଶ୍ରଣ ଆନ୍ଦୋଳନ ସମ୍ବନ୍ଧରେ ସୂଚନା ଦିଆଯାଇଛି । ଗୋଲ୍‌ଟେବୁଲ୍ ବୈଠକରେ ମହାରାଜାଙ୍କ ଯୋଗଦାନ ଏବଂ ସେଠାରେ ଓଡ଼ିଆମାନଙ୍କ ଜାତୀୟ ଦାବୀ ଉପସ୍ଥାପନ ଏଥିରେ ସ୍ଥାନ ପାଇଛି । ଏହି ନାଟକ ମାଧ୍ୟମରେ ପ୍ରାଚୀନ ଉତ୍କଳର ଗୌରବମୟ ଅଧ୍ୟାୟ ଅତି ନିଖୁଣ ଭାବରେ ଚିତ୍ରଣ କରାଯାଇଛି । ୧୯୫୨ ଖ୍ରୀଷ୍ଟାବ୍ଦରେ, ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ରଜତ ଜୟନ୍ତୀ ଉପଲକ୍ଷେ, ପାରଳାଖେମୁଣ୍ଡି ଠାରେ ଆୟୋଜିତ ଏକ ସ୍ୱତନ୍ତ୍ର ଉତ୍ସବରେ, ଏହି ନାଟକଟି ତତ୍କାଳୀନ ମନ୍ତ୍ରୀ ଶ୍ରୀଯୁକ୍ତ ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ହସ୍ତରେ ଅର୍ପଣ କରାଯାଇଥିଲା ।

୬. ସ୍ୱାଲ୍‌ସିଙ୍ଗ୍ - ଏହି ନାଟକଟି ସୀମାଦ୍ରି ପଟ୍ଟନାୟକଙ୍କ ଦ୍ୱାରା ଲିଖିତ ସର୍ବଶେଷ ନାଟକ । ଏଥିରେ ସେ ନିଜ ଅନୁଭୂତିରେ ଆସିଥିବା ଆଦିବାସୀ ସମ୍ପ୍ରଦାୟଙ୍କ ଜୀବନଧାରା ସମ୍ବନ୍ଧରେ ସୂଚନା ଦେଇଛନ୍ତି । ସେ ପାରଳାର ମାଳ ଅଞ୍ଚଳରେ ଶିକ୍ଷକତା କରୁଥିବା ସମୟରେ ଆଦିବାସୀମାନଙ୍କ ଜୀବନଧାରାର ବିକାଶ ନିମନ୍ତେ ବହୁ ଶ୍ରମ ସ୍ୱୀକାର କରିଛନ୍ତି । ଏଠାରେ ଉଲ୍ଲେଖଯୋଗ୍ୟ, ସେ ମାଳ ଅଞ୍ଚଳର ଲୋକଙ୍କ ମଧ୍ୟରେ ବହୁ ଉତ୍ସାହ ଏବଂ ପ୍ରେରଣା ଯୋଗାଇ, ଆଦିବାସୀ ଛାତ୍ରମାନଙ୍କୁ ଶିକ୍ଷାପ୍ରତି ପ୍ରଭାବିତ କରିପାରିଥିଲେ । ଗଞ୍ଜାମ ଜିଲ୍ଲାର ରାୟଗଡ଼ାରେ ଅବସ୍ଥାପିତ ଆଶ୍ରମ ସ୍କୁଲର ବିକାଶ ନିମନ୍ତେ ତାଙ୍କର ବହୁ ଅବଦାନ ରହିଥିବା ଲୋକମୁଖରୁ ଶୁଣାଯାଏ ।

ଏତଦ୍‌ବ୍ୟତୀତ ସେ ଖାରବେଳ ଔର, ଯଯାତିକେଶରୀ,କପିଳେନ୍ଦ୍ରଦେବ, ମଙ୍ଗୁରୀପଟନେ, ଅଟେଗୀ ଏବଂ ଚୋରଚୂଡ଼ାମଣି ନାଟକ ରଚନା କରିଛନ୍ତି । ଚୋରଚୂଡ଼ାମଣି ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ସମ୍ବଳିତ ଏକ ନାଟକ । ଅଟେଗୀ ଏବଂ ସ୍ୱାଲ୍‌ସିଙ୍ଗ୍ ସୀମାଦ୍ରି ପଟ୍ଟନାୟକଙ୍କ ରଚିତ ସାମାଜିକ ନାଟକ । କିନ୍ତୁ ନାଟ୍ୟକାରଙ୍କ ଅନ୍ୟସମସ୍ତ ନାଟକ ଐତିହାସିକ ତଥ୍ୟ ଉପରେହିଁ ପର୍ଯ୍ୟବେକ୍ଷିତ ହୋଇ ଲିଖିତ । ମୁଖ୍ୟତଃ ଐତିହାସିକ ନାଟକର ରଚୟିତା ଭାବେ ସେ ସର୍ବଦା ସ୍ମରଣୀୟ ହୋଇ ରହିବେ । କିନ୍ତୁ ଅତ୍ୟନ୍ତ ପରିତାପର ବିଷୟ ଏହିଯେ, ନାଟ୍ୟକାରଙ୍କର ମାତ୍ର ଦୁଇଟି ନାଟକ ପୃଥ୍ୱୀରାଜ ଏବଂ ଅନଙ୍ଗଭୀମଦେବ ପ୍ରକାଶ ପାଇଛି । ଅନ୍ୟ ସମସ୍ତ ନାଟକ ଆଜିଯାଏ ପ୍ରକାଶ ପାଇନାହିଁ ।

(ଖ) ନାଟ୍ୟକାର ସୀମାଦ୍ରି ପଟ୍ଟନାୟକ ବହୁ କାବ୍ୟକବିତାଦି ରଚନା କରି ମଧ୍ୟ ନିଜର ଶ୍ରେଷ୍ଠତା ପ୍ରତିପାଦନ କରିଛନ୍ତି ।

୧. ସୀତାବିରହିଣୀ - ଏହି କାବ୍ୟଟି ବୀର ହନୁମାନଙ୍କ ଲଙ୍କାଗଡ଼ ଯାତ୍ରା ଏବଂ ସୀତାଙ୍କୁ ରାମଚନ୍ଦ୍ରଙ୍କ ମୁଦି ପ୍ରଦାନ ପ୍ରସଙ୍ଗଟି ଉପରେ ଲିଖିତ ।

୨. ଗଙ୍ଗାବତାରଣା - ଏହା ମଧ୍ୟ ଏକ ପୌରାଣିକ ଆଖ୍ୟାନ ଉପରେ ପ୍ରତିଷ୍ଠିତ । ଏହି କାବ୍ୟରେ ସ୍ୱାର୍ଥପରତାର ପ୍ରତୀକ ଥିବା ସଗର ମହାରାଜା ଏବଂ ଅସୀମ ପାର୍ଥିବ ସୁଖର ପ୍ରତୀକ

ଥିବା ତାଙ୍କର ଅସଂଖ୍ୟ ପୁତ୍ର କିପରି ବାବେ ଆଧ୍ୟାମିକତାର ପ୍ରତୀକ କପିଳ ମହାମୁନୀଙ୍କ ଚକ୍ଷୁରୁ ନିର୍ଗତ ଅଗ୍ନିଶିଖା ଦ୍ୱାରା ଧ୍ୱଂସପ୍ରାପ୍ତ ହୋଇଥିଲେ, ତାହା ବର୍ଣ୍ଣିତ ହୋଇଛି । ପରିଶେଷରେ, ନିଃସ୍ୱାର୍ଥପରତାର ପ୍ରତୀକ ଭାଗିରଥ, ଗଙ୍ଗା, ଯମୁନା ଏବଂ ସରସ୍ୱତୀଙ୍କୁ ଭୂପୃଷ୍ଠକୁ ଆଣି ସଗର ବଂଶ ଉଦ୍ଧାର କରିଥିବା ମଧ୍ୟ ଏଥିରେ ଉଲ୍ଲେଖ କରାଯାଇଛି । ଗଙ୍ଗାନଦୀ, ଯମୁନା ନଦୀ ଏବଂ ସରସ୍ୱତୀ ନଦୀ ମାଧ୍ୟମରେ ହିନ୍ଦୁ, ମୁସଲମାନ୍ ଏବଂ ଖ୍ରୀଷ୍ଟିୟାନ୍ ସଭ୍ୟତାର ପରୋକ୍ଷ ଭାବରେ ସୂଚନାଦେଇ, ସମଗ୍ର ମାନବ ସଭ୍ୟତାର ଏକ ସମୀକ୍ଷା ଏଥିରେ କରାଯାଇଛି ବୋଲି କହିଲେ କିଛି ଅତ୍ୟୁକ୍ତି ହେବ ନାହିଁ ।

୩. କୃପାମୃତ -ଏହି କୃତିଟି ପ୍ରକାଶ ପାଇଛି । ଏହା ଶ୍ରୀକୃଷ୍ଣଙ୍କ ଲୀଳା ସମ୍ବନ୍ଧୀୟ ଏକ ରଚନା ।

୪. ରାଧାନନ୍ଦ ମାଳା - ଏହା ଶ୍ରୀରାଧାକୃଷ୍ଣଙ୍କ ଦୈନନ୍ଦିନ ଜୀବନ ଉପରେ ଆଧାରିତ ଅନ୍ୟ ଏକ କୃତି । ଏଥିରେ ଆଧ୍ୟାତ୍ମିକ ଭାବ ଗ୍ରାମ୍ୟରସ ମାଧ୍ୟମରେ ଚିତ୍ରିତ ହୋଇଛି । ସ୍ୱଲିଖିତ ଏବଂ ସମ୍ପୂର୍ଣ୍ଣ ରୂପେ ନିଜସ୍ୱ ଏହି କୃତିଟି ସହିତ୍ୟିକ ସୀମାଦ୍ରି ପଟ୍ଟନାୟକ "The Rosery of Joy" ନାମରେ ଇଂରାଜୀ ଭାଷାରେ ଅନୁବାଦ କରିଛନ୍ତି ।

୫. ରାସକ୍ରୀଡ଼ା - ଏହା ଶ୍ରୀକୃଷ୍ଣ ରାଧାରାଣୀଙ୍କ ରାସକ୍ରୀଡ଼ା ଉପରେ ଆଧାରିତ ଏକ କାବ୍ୟ । ଏହା ୧୯୮ଟି ପଦରେ ପୂର୍ଣ୍ଣତା ଲାଭ କରିଛି ।

୬. ସରଳ ଲୀଳା ଲହରୀ -ଏହା ସୀମାଦ୍ରି ପଟ୍ଟନାୟକଙ୍କ ବିରଚିତ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ଏବଂ ରାସଲୀଳା ସମ୍ବନ୍ଧୀୟ ଏକ କାବ୍ୟ । ଏଥିରେ ଶ୍ରୀକୃଷ୍ଣଙ୍କ ବନ ବିହାର, ଶ୍ରୀକୃଷ୍ଣଙ୍କ ବେଣୁ ମହାତ୍ମ୍ୟ, ଶ୍ରୀକୃଷ୍ଣଙ୍କ ମଧ୍ୟାହ୍ନ ମଣୋହି, ଚନ୍ଦନ ଯାତ୍ରା, ପଶାକ୍ରୀଡ଼ା, ଲୁଚକାଳି, ଝୁଲଦୋଳା, ନୌକାବିହାର ପ୍ରଭୃତି ସମ୍ବନ୍ଧରେ ବର୍ଣ୍ଣିତ ହୋଇଅଛି । ଏହାର ଭାଷା ଅତି ସରଳ ଏବଂ ଭାବୋଦ୍ଦୀପକ ।

୭. ପାରଳାପ୍ରଳାପ - ୧୯୫୪ ଖ୍ରୀଷ୍ଟାବ୍ଦ ନଭେମ୍ବର ମାସରେ ପାରଳାରେ ହୋଇଥିବା ଓଡ଼ିଆ ଏବଂ ତେଲୁଗୁ ମାନଙ୍କର ଅନ୍ତଃବିବାଦକୁ କେନ୍ଦ୍ର କରି ଏହା ରଚିତ ହୋଇଛି । ଏହି ଅନ୍ତଃବିବାଦ ଫଳରେ ବହୁ ଓଡ଼ିଆ ପରିବାର ସର୍ବସ୍ୱାନ୍ତ ହୋଇଥିଲେ । ଯିମିତି ଖେଳରୁ ମହାଭାରତ ଯୁଦ୍ଧ ସୃଷ୍ଟି ହେଲାପରି, ପାରଳାର ଭାଷା ବିବର୍ଦ୍ଧିନୀ ସମାଜ ପକ୍ଷରୁ ସୀମାଦ୍ରିଙ୍କ "ଅଟବୀ" ନାଟକ ଗରୀବ ଛାତ୍ରଙ୍କ ସାହାଯ୍ୟାର୍ଥେ ଅଭିନୀତ ହେଉଥିବା ସମୟରେ ପ୍ରଥମେ ତେଲେଙ୍ଗା ଛାତ୍ରମାନଙ୍କ ଦ୍ୱାରା ଏହି ସଂଘର୍ଷର ସୂତ୍ରପାତ ହୋଇଥିଲା । ଏହି ଘଟଣାଟି ଅତି ପ୍ରାଞ୍ଜଳ ଭାବରେ ଏହି କାବ୍ୟଟିରେ ବର୍ଣ୍ଣିତ ହୋଇଛି । ଏହି କାବ୍ୟଟି ସର୍ବମୋଟ ସାତ ଗୋଟି ଲହରୀରେ ରଚିତ ।

୮. ଶ୍ରୀଲକ୍ଷ୍ମୀନୃସିଂହ କୃପାମୃତ ଲହରୀ -ଏହା ସୀମାଦ୍ରି ପଟ୍ଟନାୟକଙ୍କ ରଚିତ ଦୁଇଖଣ୍ଡାର ଗୀତି କବିତାର ଏକ ସମାହାର । ଆଧ୍ୟାମିକତା ଏବଂ ସଙ୍ଗୀତମୟତାରେ ଏହା କବିଙ୍କ ପାଣ୍ଡିତ୍ୟର ଏକ ସ୍ପଷ୍ଟ ପରିଚୟ ।

୯. ବିଜୟମାଲ୍ୟ - ଏହା ପ୍ରାୟ ୩୦ ଗୋଟି ଦେଶାତ୍ମବୋଧ ଗୀତର ଏକ ସମାହାର । ଏଥିରୁ କବିଙ୍କ ଉତ୍କଳୀୟବୋଧର ସୂଚନା ମିଳିବା ସଙ୍ଗେ ସଙ୍ଗେ ସର୍ବ ଭାରତୀୟ ଦେଶାତ୍ମବୋଧର ସ୍ୱଷ୍ଟତା ପ୍ରତିପାଦିତ ହୋଇଥାଏ ।

ଏସବୁ ବାଦ୍ ସେ କବିତାବଳୀ, ଭାରତ କୋଇଲି ଏବଂ ସରଦ ରାସ ନାମକ ତିନୋଟି କାବ୍ୟ ଏବଂ ସଙ୍ଗୀତରୋସ, ବିଜୟମାଲ୍ୟ ଏବଂ କ୍ରୀଡ଼ା କୌମୁଦୀ ନାମକ ତିନୋଟି କବିତାଗୁଚ୍ଛ ମଧ୍ୟ ରଚନା କରିଛନ୍ତି । କିନ୍ତୁ ସୀମାଦ୍ରି ପଟ୍ଟନାୟକଙ୍କ ରଚିତ କାବ୍ୟକବିତାଦି ମଧ୍ୟରୁ "ବ୍ରହ୍ମାମୃତ" କୃତିଟି ପ୍ରକାଶ ପାଇଛି । ଅନ୍ୟ ସମସ୍ତ କାବ୍ୟକବିତା ଅବହେଳିତ ପ୍ରାୟ ପଡ଼ିରହିଛି ।

(ଖ) ସୀମାଦ୍ରି ପଟ୍ଟନାୟକଙ୍କର ଇଂରାଜୀ ଭାଷାରେ ମଧ୍ୟ ଅସାଧାରଣ ପାଣ୍ଡିତ୍ୟ ରହିଥିବା ଏଥି ପୂର୍ବେ ସୂଚନା ଦିଆଯାଇଛି । ବର୍ତ୍ତମାନ ଇଂରାଜୀ ଭାଷାରେ ଲିଖିତ ତାଙ୍କର କାବ୍ୟକବିତାଦି ସମ୍ବନ୍ଧରେ ସୂଚନା ଦେବା ଯଥାର୍ଥ ମନେ ହୁଏ । କିନ୍ତୁ ଅତ୍ୟନ୍ତ ପରିତାପର ବିଷୟ ଏହିଯେ, ସୀମାଦ୍ରି ପଟ୍ଟନାୟକଙ୍କ କୌଣସି ଇଂରାଜୀ କୃତି ବର୍ତ୍ତମାନ ସୁଦ୍ଧା ପ୍ରକାଶ ପାଇନାହିଁ ।

୧. **LAURELS OF PEACE**:-ଏଥିରେ କବିଙ୍କ ରଚିତ ୩୨ଟି ଗୀତ ସ୍ଥାନ ପାଇଛି । ସେଥିମଧ୍ୟରୁ 'On Doctor Rabindranath Tagor', 'On Kalinga', 'On Liberted India' ଏବଂ 'On Subas Chandra Bose' ଅନ୍ୟତମ । 'No Hope' ନାମକ ଏଥିର ଗୋଟିଏ ପଦ୍ୟାଂଶରେ ସେ ନିଜ ଜୀବନର ଚିତ୍ର ଦେବାକୁ ଯାଇ ଲେଖିଛନ୍ତି -

"For weary decades two I rot and rot,
Against disease and death I fought and fought.
To cross the stormy sea as on a pot,
A feather in hand my lot in iron wrought."

ଦୁଇ ଦଶନ୍ଧି ଧରି ରୋଗ ଏବଂ ମୃତ୍ୟୁ ସହ ସଂଗ୍ରାମ କରି ଶେଷରେ ଆର୍ଥିକ ଦୃଷ୍ଟିରୁ ସର୍ବସ୍ୱାନ୍ତ ହୋଇଥିବା ଏଥିରୁ ପ୍ରମାଣ ମିଳେ।

୨.**THE GARLAND OF LOVE** :- ଏଥିରେ ସୀମାଦ୍ରି ପଟ୍ଟନାୟକଙ୍କ ସର୍ବମୋଟ ୧୧୪ଟି କବିତା ସନ୍ନିବେଶିତ ହୋଇଛି । ଏହା ମୁଖ୍ୟତଃ ଭଗବାନ ଶ୍ରୀକୃଷ୍ଣଙ୍କ ସମ୍ବନ୍ଧୀୟ ଏକ ରଚନା । ଏଥିର ଗୋଟିଏ କବିତାଂଶରେ କବି ଲେଖିଛନ୍ତି -

"Is it a fact or fancy, let me know,
My dear - that grace of sapphire picture show -
He wears a gorgeous garland on his breast
upon his head a princely peacock-crest
His silk as yellow as the molten gold,
A pipe upon his face, the feast for eyes behold."

ଏପରି ଭାବେ ସୀମାଦ୍ରି ପଟନାୟକ, ଏଥିର କବିତା ମାଧ୍ୟମରେ ନିଜର ଅସୀମ ଭକ୍ତିପ୍ରାଣତା ସୂଚାଇଛନ୍ତି ।

୩. **THE WREATHS OF JOY** :- ଏହା ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ଏବଂ ରାସଲୀଳା ସମ୍ବନ୍ଧୀୟ ଏକ କୃତି । ଏହା ସର୍ବମୋଟ ୪୯ଟି କବିତାର ଏକ ସମାହାର । ଯଶୋଦାଙ୍କ ବାତ୍ସଲ୍ୟଭାବ ବର୍ଣ୍ଣନା କରିବାକୁ ଯାଇ, ସୀମାଦ୍ରି ପଟନାୟକ ଏଥିର ଗୋଟିଏ ପଦ୍ୟାଂଶରେ ଲେଖିଛନ୍ତି -

"In sore bereavement of her son thee queen
Divinely made became dejected and lean,
Her seconds changed to ages without pale.
The honey drop of life as descent state,
She uttered broken words devoid of sense,
From time to time her state grew more intense."

ଏଥିର ଅନ୍ୟ ଏକ ପଦ୍ୟାଂଶରେ, ରାଧାକୃଷ୍ଣଙ୍କ ଯୁଗଳ ମୂର୍ତ୍ତି ଦର୍ଶନରେ ଭୋଳ ହୋଇ କବି ନିଜର ଭକ୍ତିଭାବ ପ୍ରଦର୍ଶନ କରି ଲେଖିଛନ୍ତି -

"The Union of Radha and the Lord
Beyond the art of speech of any bard;
The birth of crores of moons of molten gold
In face of as many sapphire suns behold,
Let human eye drink deep on seeing both
The forms of spotless love of cresent youth."

୪. **THE SONGS OF BLISS**:- ଏଥିରେ ଭକ୍ତକବି ଗୋପାଳକୃଷ୍ଣଙ୍କ ୩୪ଟି ଗୀତ ଇଂରାଜୀ ଭାଷାରେ ଅନୁବାଦ କରାଯାଇଛି । ଏସବୁ ୧୯୨୦ରୁ ୧୯୨୪ ଖ୍ରୀଷ୍ଟାବ୍ଦ ମଧ୍ୟରେ ରଚିତ ହୋଇଛି । ଏହା ସୀମାଦ୍ରି ପଟନାୟକଙ୍କ ରଚିତ ଅତ୍ୟନ୍ତ ମୂଲ୍ୟବାନ କୃତି । (୧) କବି ଗୋପାଳକୃଷ୍ଣଙ୍କ "ବଂଶୀ ବାଜୁଛି କାହାର କାନନରେ" କବିତାଟିକୁ ଇଂରାଜୀରେ ଅନୁବାଦ କରି କବି ଲେଖିଛନ୍ତି -

"Whose pipe resounds the grove, the airs alight
Amidst this lifeless, lonely, cloudy night."

(୨) ସେହିପରି "ନିଦ କେଣେ ଦେଲୁ ଭାଜି" କବିତାଟିକୁ ଅନୁବାଦ କରି ସେ ଲେଖିଛନ୍ତି -

"Said Gopal Krushna, beware oh sweet-eyed
Below the roof in darkness, waits thy Lord."

୪. <u>THE MESSENGER OF SPRING</u> :- ଏହା କବି ଗୋପାଳକୃଷ୍ଣଙ୍କ କୋଇଲି କବିତାର ଏକ ଭାଷାନ୍ତରିତ କୃତି । ୧୯୨୪ ଖ୍ରୀଷ୍ଟାବ୍ଦରେ ଏହା ରଚିତ ହୋଇଥିଲା । ଯଶୋଦାଙ୍କ ବାତ୍ସଲ୍ୟଭାବନା ଏଥିରେ ପ୍ରତିଫଳିତ ହୋଇଛି । ସୀମାଦ୍ରି ପଟ୍ଟନାୟକ ଏଥିର ଅନୁବାଦ କରିବାକୁ ଯାଇ ପ୍ରଥମ ପଦରେ ଲେଖିଛନ୍ତି -

"He listens me not, Oh cuckoo!
Alas I know not what to do.
Alone he makes his home in the wood,
Betimes he never takes his food.
Ah me, it is my worst mishap
In Joy he never graced my lap."

୬. <u>IMMORTAL INDIA</u> :-ଏହା ସୀମାଦ୍ରି ପଟ୍ଟନାୟକଙ୍କ ଦ୍ୱାରା ରଚିତ ଏକ ଦେଶାତ୍ମବୋଧ କାବ୍ୟ । ଏଥିରେ ଭାରତବର୍ଷର ସଭ୍ୟତା ଏବଂ ସଂସ୍କୃତି ସମ୍ବନ୍ଧରେ ସୂଚନା ଦେବାକୁ ଯାଇ ବହୁ ପୌରାଣିକ ଏବଂ ଐତିହାସିକ ପ୍ରସଙ୍ଗ ଉପରେ ଆଲୋଚନା କରାଯାଇଛି । ପୌରାଣିକ ଆଖ୍ୟାନ ଗୁଡ଼ିକ ସମ୍ବନ୍ଧରେ ଲେଖିବାକୁ ଯାଇ ସେ କୃଷ୍ଣ, ଭାଗିରଥ ପ୍ରଭୃତିଙ୍କ ଅଲୌକିକ ଜୀବନଚରିତ୍ର ଏବଂ ଐତିହାସିକ ପ୍ରସଙ୍ଗ ଗୁଡ଼ିକ ଉପରେ ଲେଖିବାକୁ ଯାଇ ପୃଥ୍ୱୀରାଜ, ଅଶୋକ, ହର୍ଷବର୍ଦ୍ଧନ, ଶଙ୍କରାଚାର୍ଯ୍ୟ, ବୁଦ୍ଧଦେବ ପ୍ରଭୃତିଙ୍କର ଜୀବନ କାହାଣୀର ମଧ୍ୟ ସୂଚନା ଦେଇଛନ୍ତି । କିନ୍ତୁ ସେହି କାବ୍ୟର ପ୍ରାରମ୍ଭରେ, ବର୍ତ୍ତମାନ ଭାରତୀୟ ମାନଙ୍କର ନୈତିକ ବଳ ହ୍ରାସ ପାଇଥିବାର ସୂଚନା ଦେଇ ସେ ଦୁଃଖ ପ୍ରକାଶ କରି ଲେଖିଛନ୍ତି -

"Decades have passed since the Motherland
Is freed from fetters on her hand.
Her sons have failed to look within
They beat abet the bush, resolve
The burning problems of life to solve.
By way so singular and odd
They straight defied both man and god.

Alas, they imitate the west
Shed every drop of blood, their best."

୭. <u>THE CALL OF INDIA</u> :- ଏଥିରେ ମଧ୍ୟ କବି ଭାରତର ନୈତିକ ମାନର ଅବନତି ହେଉଥିବା ଦେଖି, ଦୁଃଖପ୍ରକାଶ କରିଛନ୍ତି । ଭାରତର ସଂକୀର୍ଣ୍ଣ ଏବଂ ରକ୍ଷଣଶୀଳ ଶିକ୍ଷାନୀତିକୁ ସମାଲୋଚନା କରି ସେ ଲେଖିଛନ୍ତି -

"The models of our Universities
Have proved to be the hives of evil bees.
Producing forth a Peevish progeny
The hallowed machine-made commodity."

ଏହି କୃତିଟି ୧୯୪୭ ଖ୍ରୀଷ୍ଟାବ୍ଦରେ ପାରଳାଖେମୁଣ୍ଡି ଠାରେ ହୋଇଥିବା ଗଞ୍ଜାମ ଜିଲ୍ଲା ଶିକ୍ଷାର୍ଥୀ ସମ୍ମିଳନୀ ଅବସରରେ ରଚିତ ହୋଇଥିଲା ।

୮. <u>MY MOTHERLAND</u> :- ଏହି କାବ୍ୟରେ କବିଙ୍କ ଦେଶାତ୍ମବୋଧରେ ଭାବପ୍ରବଣତାର ମଧ୍ୟ ସୂଚନା ମିଳେ । ଏହି କୃତିଟି ମଧ୍ୟ ଭାରତର ଯୁବ ସମ୍ପ୍ରଦାୟଙ୍କ ପ୍ରତି ଏକ ପ୍ରେରଣାର ଉତ୍ସ । ଏଥିର ଏକ ଅଂଶରେ ସଂସ୍କାରକ କବୀର ଏବଂ ବୁଦ୍ଧଙ୍କ ପ୍ରତି, ସେ ଅତ୍ୟନ୍ତ ଭାବପ୍ରବଣତା ପ୍ରକାଶ କରିଛନ୍ତି -

"Awake Kabeer Prophetic bard of land
Unite the mighty Hindu Muslim faith,
Once more into one cosmic brotherhood
Merciful Buddha Oh hermit prince arise
The Mellow Moon shine of whose illustrious tooth."

୯. <u>AROTHI</u> :-ଏହା କବିଙ୍କ ଆଧ୍ୟାତ୍ମିକ ଚିନ୍ତାଧାରାର ଏକ ପରିପ୍ରକାଶ । ଏଥିରେ ସର୍ବମୋଟ ୩୫ଟି କବିତା ସନ୍ନିବେଶିତ ହୋଇଛି ।

୧୦. <u>THE HOLY LAKE</u> :- ଚିଲିକା ହ୍ରଦର ସନ୍ଦର୍ଶନରେ, ଏହାର ପ୍ରାକୃତିକ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ କବି ଏହି କାବ୍ୟଟି ରଚନା କରିଛନ୍ତି । କାବ୍ୟର ପ୍ରାରମ୍ଭରେ ସେ ଉଦ୍‌ବେଳିତ ପ୍ରାଣରେ ଗାଇଛନ୍ତି -

"Thou art the azure mirror or deep delight
Of Utkala, the home of Swans, snow-while.
The brightest jewels on my mother's heart
The mart of beauty of this land of art.
So vast thy blue expanse of water lies

In soothe, an endless source of joy to the wee."

୧୧.**THE WRATH OF FIRE**:-ଏହା ଜାତିର ପିତା ମହାତ୍ମାଗାନ୍ଧିଙ୍କ ମୃତ୍ୟୁରେ ତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଜଣାଇ ଲିଖିତ ହୋଇଛି ।

୧୨..ROSERY OF JOY :-ଏହା କବି ସୀମାଦ୍ରି ଙ୍କ କୃତ ଏବଂ ନିଜସ୍ୱ, ରାଧାନନ୍ଦମାଳାର ଏକ ଭାଷାନ୍ତର କୃତି । ଏହି କାବ୍ୟଟି, ୧୯୫୪ ଖ୍ରୀଷ୍ଟାବ୍ଦରେ ଆମେରିକାରେ ହୋଇଥିବା ସାହିତ୍ୟ ପ୍ରତିଯୋଗିତା ପାଇଁ, ସେଠାକାର Grove Press କୁ ପଠାଯାଇଥିଲା । ଏଥି ସନ୍ଦର୍ଭରେ Grove Press ପଠାଇଥିବା ଏକ ପତ୍ରର ଉପାଦେୟତା ଉପଲବ୍ଧି କରି ନିମ୍ନରେ ଉଲ୍ଲେଖ କରୁଛି -

795, Broadway, Newyork.3.N.Y.
Gramercy.3-7447.

Dear India contest Entrant -

Thank you very much for the manuscript you submitted for our contest for Indian writers.

We are very glad to have seen it. Your manuscript is enclosed, alongwith an very best wishes.

*Sincerely,*
**Grove Press.**

ଏଠାରେ ଉଲ୍ଲେଖଯୋଗ୍ୟ, ପରବର୍ତ୍ତୀ ସମୟରେ, ତତ୍କାଳିନ ଶିକ୍ଷାମନ୍ତ୍ରୀ ଏବଂ ସମାଜର ସମ୍ପାଦକ ଶ୍ରୀଯୁକ୍ତ ରାଧାନାଥ ରଥ, ଏହି କୃତିଟି ଉତ୍କଳ ୟୁନିଭରସିଟି ଦ୍ୱାରା ପ୍ରକାଶନ ନିମନ୍ତେ ନିଜର ସ୍ୱୀକୃତି ପ୍ରଦାନ କରିଥିଲେ । କିନ୍ତୁ ଦୁର୍ଭାଗ୍ୟବଶତଃ, ବର୍ତ୍ତମାନ ଯାଏ ଏହା ପ୍ରକାଶ ପାଇନାହିଁ । ଏହା ସୀମାଦ୍ରି ପଟ୍ଟନାୟକଙ୍କ ରଚିତ ଏକ ଅତି ମୂଲ୍ୟବାନ ଗ୍ରନ୍ଥ । ଏହା ପ୍ରକାଶ ପାଇଲେ ସାହିତ୍ୟଭଣ୍ଡାରର ଅଶେଷ ଉନ୍ନତି ସାଧିତ ହୁଅନ୍ତା ।

୧୩. HISTORICITY OF JAYADEV :- ବଙ୍ଗାଳି କବି ବନମାଳି ଦାସ, କେନ୍ଦୁବିଲ୍ୱ ଗ୍ରାମ, ବଙ୍ଗଳା ପ୍ରଦେଶର ବୀରଭୂମି ଜିଲ୍ଲାନ୍ତର୍ଗତ ଥିବା 'ଜୟଦେବ ଚରିତ୍ର'ରେ ଉଲ୍ଲେଖ କରିଛନ୍ତି । ଏହାକୁ ଆଧାର କରି ପରବର୍ତ୍ତି ସମୟରେ ବଙ୍ଗଳା ନାଟ୍ୟକାର ହରିପଦ ମୁଖାର୍ଜି, ଉକ୍ତକବି ଜୟଦେବଙ୍କ ଜୀବନ ବୃତ୍ତାନ୍ତର ବହୁଳ ଅପପ୍ରଚାର କରିଛନ୍ତି । ସେ ଉକ୍ତକବିଙ୍କ ଜୀବନୀ

ସହ ବଙ୍ଗଳାର ରାଜା ଲକ୍ଷ୍ମଣସେନଙ୍କୁ ଜଡ଼ିତ କରି ଏବଂ ବହୁ ଅଦ୍ଭୁତ କଳ୍ପନା ଦ୍ୱାରା ଐତିହାସିକ ତଥ୍ୟ ଗୁଡ଼ିକୁ ଅବମାନନା କରିଛନ୍ତି। ତେଣୁ ସୀମାଦ୍ରି ପଟ୍ଟନାୟକ, ଏସବୁ ଐତିହାସିକ ଅବମାନନାରେ ବିବ୍ରତ ହୋଇ ଏବଂ ଜୟଦେବଙ୍କୁ ଓଡ଼ିଶାର କବି ଭାବେ ପରିଚିତ କରାଇବା ପାଇଁ ଏହି ପ୍ରବନ୍ଧଟି ରଚନା କରିଥିଲେ । ଏହା ଐତିହାସିକ ତଥ୍ୟପୂର୍ଣ୍ଣ ଏବଂ ଅତୀବ ଉପାଦେୟ । ଏହି ପ୍ରବନ୍ଧଟି ରଚନା କରିବାରେ, ବଙ୍ଗଳାର ବିଶିଷ୍ଟ ଐତିହାସିକ ଏବଂ ବୈଜ୍ଞାନିକ ଡ଼କ୍ଟର ପ୍ରଫୁଲଚନ୍ଦ୍ର ରାୟଙ୍କ ଏକ ଉକ୍ତି, ଯାହା ତାଙ୍କୁ ବହୁ ପ୍ରେରଣା ଯୋଗାଇଥିଲା, ତାହା ଏଠାରେ ଉଲ୍ଲେଖ କରୁଛି -

"1199 is epoch marking on account of Lokhmono Sen, took shelter under the generous banner of Anongo Bheemo Deb of Orissa, the last temple of Hindu liberty against Moslem invasion."

(Extracts from the speech of Prafulla Chandra Ray).

ଏତଦ୍‌ବ୍ୟତୀତ The Holy Land, Trophies of Youth, The Divine Dream, The Divine Dance, The Brief Lotus ଏବଂ The Wreath of Eyre ସୀମାଦ୍ରି ପଟ୍ଟନାୟକଙ୍କ ଅନ୍ୟ ସମସ୍ତ କୃତି । ସେ Marriage and Maidenhood ନାମକ ଅନ୍ୟ ଏକ ପ୍ରବନ୍ଧ ମଧ୍ୟ ରଚନା କରିଛନ୍ତି ।

ସୀମାଦ୍ରି ପଟ୍ଟନାୟକ ୧୯୫୬ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସ ୧୦ ତାରିଖ ଦିନ ସ୍ୱରଚିତ ଗ୍ରନ୍ଥ ଗୁଡ଼ିକର ପାଣ୍ଡୁଲିପି ଓଡ଼ିଶା ସାହିତ୍ୟ ଏକାଡ଼େମୀକୁ ପଠାଇଥିବା, ଏକାଡ଼େମୀର ସମ୍ପାଦକ ରାଜକିଶୋର ରାୟଙ୍କ ଦ୍ୱାରା ୧୩.୧୧.୧୯୫୬ରେ ଲିଖିତ ଚିଠି ନମ୍ବର ୧୦୧ ରୁ ସୂଚିତ ହୁଏ । କିନ୍ତୁ ଦୁଃଖର ବିଷୟ ଏହିଯେ, ପ୍ରାୟ ଅର୍ଦ୍ଧ ଶତାବ୍ଦୀ ବିତିଯାଇଥିଲେ ମଧ୍ୟ, ତାଙ୍କର କୌଣସି କୃତି ବର୍ତ୍ତମାନ ଯାଏ ଏକାଡ଼େମୀ ଦ୍ୱାରା ପ୍ରକାଶ ପାଇନାହିଁ ।

ଟାଟା ଆଇରନ୍ ଏଣ୍ଡ୍ ଷ୍ଟିଲ୍ କମ୍ପାନୀର ସୁବର୍ଣ୍ଣ ଜୟନ୍ତୀ ଉପଲକ୍ଷେ, ସୀମାଦ୍ରି ପଟ୍ଟନାୟକ ୧୯୫୮ ଖ୍ରୀଷ୍ଟାବ୍ଦ ଫେବୃୟାରୀ ୨୬ ତାରିଖ ଦିନ ଇଂରାଜୀ ଭାଷାରେ ଲିଖିତ କେତେକ କବିତା, କମ୍ପାନୀର ଏଜେଣ୍ଟଙ୍କ ନିକଟକୁ ପଠାଇଥିବା ଜଣାଯାଏ । ସେହି କବିତା ଗୁଡ଼ିକ ଲେଖିବା ଉଦ୍ଦେଶ, ତାଙ୍କ ଦ୍ୱାରା ଲିଖିତ ୧୯୫୮ ଖ୍ରୀଷ୍ଟାବ୍ଦ ଏପ୍ରେଲ୍ ମାସର ଏକ ଚିଠିରୁ ସ୍ପଷ୍ଟ ସୂଚିତ ହୁଏ । ପୁରୀର ଶ୍ରୀଗୌରାଙ୍ଗ ବିଶ୍ୱପ୍ରେମ ପ୍ରଚାରିଣୀ ସଂଘ ଆନୁକୂଲ୍ୟରେ, ସେ ଥରେ ଐତିହାସିକ ସହର ଜାମ୍‌ସେଦ୍‌ପୁର ଦେଖିବା ସୁଯୋଗ ପାଇଥିଲେ । ସେଠାରେ ସେ ଦୁଇଟି ସଭାରେ ମଧ୍ୟ ଉଦ୍‌ବୋଧନ ଦେଇଥିଲେ । ଜାମ୍‌ସେଦ୍‌ପୁରରେ ରହଣୀ ସମୟରେ, ସହରର ବିଭିନ୍ନ ଦର୍ଶନୀୟ

ସ୍ଥାନ, ଅନୁଷ୍ଠାନ ଏବଂ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସଂସ୍ପର୍ଶରେ ମଧ୍ୟ ସେ ଆସିଥିଲେ । ତା ପରବର୍ତ୍ତୀ ସମୟରେ, ସୁବର୍ଣ୍ଣ ଜୟନ୍ତୀ ଉପଲକ୍ଷେ, ବିଶ୍ୱ ସୁନାମ ଅର୍ଜନ କରିଥିବା କମ୍ପାନୀର ପ୍ରତିଷ୍ଠାତାଙ୍କ ଅମ୍ଳାନ ସ୍ମୃତି ଉଦ୍ଦେଶରେ ସେ ଏହି କବିତା ଗୁଚ୍ଛ ଇଂରାଜୀ ଭାଷାରେ ରଚନା କରିଛନ୍ତି । ସେଥିର ଗୋଟିଏ ପଦ୍ୟାଂଶରେ ସେ ଲେଖିଛନ୍ତି -

"During a century or two
What British wisdom failed to do.
Tata alone achieved the same
And won abiding name and fame,
From day to day in leap and bound
The blessed city grows around."

୧୯୬୦ ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସ ୧୫ ତାରିଖ ଦିନ ଓଡ଼ିଶା ବିଧାନ ସଭାର ବାଚସ୍ପତି ପଣ୍ଡିତ ନୀଳକଣ୍ଠ ମିଶ୍ର ପାରଳାଖେମୁଣ୍ଡି ଆସିଥିବା ଗୋଟିଏ କବିତାରୁ ଜଣାଯାଏ । ଏହି ଅବସରରେ, ସୀମାଦ୍ରି ପଟ୍ଟନାୟକ, ପଣ୍ଡିତ ନୀଳକଣ୍ଠଙ୍କୁ ନିଜର ଅସୀମ ଭକ୍ତିପ୍ଲୁତ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ଗୋଟିଏ କବିତା ତାଙ୍କ ସ୍ୱହସ୍ତରେ ଅର୍ପଣ କରିଥିଲେ । ସେଥିର ଗୋଟିଏ ଅଂଶରେ ସେ ଲେଖିଛନ୍ତି -

"Amid this general merriment and mirth
Of India's thirteenth year of rebirth,
I offer thee the homage of my heart
Oh Nester of this divine land of art.
Because hast thou thy yeoman service done,
Towards thy Mother-land, as next to none."

୧୯୩୬ ଖ୍ରୀଷ୍ଟାବ୍ଦ ଏପ୍ରେଲ୍ ପହିଲା ଦିନ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠିତ ହେଲା । ଏହି ଉପଲକ୍ଷେ, ସେହି ମାସ ୨୧ ତାରିଖ ଦିନ, ସ୍ଥାନୀୟ ଜନସାଧାରଣଙ୍କ ପକ୍ଷରୁ, ନବ ଉତ୍କଳର ଅନ୍ୟତମ ନିର୍ମାତା ପାରଳା ମହାରାଜାଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜ୍ଞାପନ କରାଯାଇଥିଲା । ଏହି ଉପଲକ୍ଷେ ସୀମାଦ୍ରି ପଟ୍ଟନାୟକଙ୍କ ରଚିତ ଗୋଟିଏ କବିତା ଛାପାଯାଇ ସେଦିନ ବିତରଣ କରାଯାଇଥିଲା । ମହାରାଜାଙ୍କ ଗୁଣ କୀର୍ତ୍ତନ କରି, ଅତି ଉଦ୍‌ବେଳିତ ପ୍ରାଣରେ ସେ କବିତାର ପ୍ରଥମ ପାରାରେ ଲେଖିଛନ୍ତି -

"Arise heroic Utkala! To sing
Thee golden glories of this model king,
Sri Krushno Chandro Deb, the richest mine

Of regal virtues of the noblest line
Of holy Ganges, formed in ancient Ind.,
And all the lands, where blows the godly wind.
The Maharaja of sweet Probalopur
In fervid music let us all adore.
This hero, harmonized with the wisest sage,
Above the crooked cast and creed of age.
This unique day of universal Joy
The rich and poor, the high and low alloy."

ପାରଳା ମହାରାଜାଙ୍କ ସୁଦିନରେ କବି ଯେପରି ଭାବେ ହର୍ଷୋତ୍‌ଫୁଲ୍ଲ ହେଉଥିଲେ, ତାଙ୍କର ଦୁର୍ଦ୍ଦିନ ଗୁଡ଼ିକରେ ମଧ୍ୟ ସେ ସେହିପରି ଶୋକରେ ଅଭିଭୂତ ହୋଇପଡୁଥିଲେ । ୧୯୨୧ ଖ୍ରୀଷ୍ଟାବ୍ଦ ନଭେମ୍ବର ମାସରେ ପାରଳାଖେମୁଣ୍ଡି ମହାରାଣୀଙ୍କ ମୃତ୍ୟୁରେ, ସେ ଗୋଟିଏ ମୃତ୍ୟୁଲେଖ ରଚନା କରିଛନ୍ତି । ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ସେହି ଶୋକସନ୍ତପ୍ତ ହୃଦୟ ପ୍ରତି ସାନ୍ତ୍ୱନା ଜଣାଇ,ସୀମାଦ୍ରି ପଟ୍ଟନାୟକ ଲେଖିଥିବା ଏକ ଇଂରାଜୀ ପତ୍ର ମଧ୍ୟ ଐତିହାସିକ ଦୃଷ୍ଟିକୋଣରୁ ଅତି ମୂଲ୍ୟବାନ୍ ଥିବା ହୃଦୟଙ୍ଗମ କରି ନିମ୍ନରେ ସେଥିର ସାରାଂଶଟି ଓଡ଼ିଆ ଭାଷାରେ ଅନୁବାଦ କରି ଉଲ୍ଲେଖ କରିବା ଯଥାର୍ଥ ମନେ କରୁଛି -

ସ୍ୱଦେଶ ହିତୈଷୀ ସାହିତ୍ୟାନୁରାଗୀ ଶ୍ରୀଶ୍ରୀ ପାରଳାଧୀଶ୍ୱରଙ୍କର ଶ୍ରୀ କରକମଳେଷୁ ।

ଶ୍ରୀମାନ୍ ମହାରାଜା,

ଯାହାଙ୍କର ଜୀବନର ମୂଲ୍ୟବାନ୍ ସମୟ ଦୁଃଖ ଏବଂ ଦୁର୍ଦ୍ଦିନ ମଧ୍ୟରେ ବିଚଳିତରେ ସହ କ୍ଷତି କରିଛି, ତାହାଙ୍କୁ ସାନ୍ତ୍ୱନା ପ୍ରଦାନ କରିବା, ଏପରିକି କୌଣସି ଦର୍ଶନ ଶାସ୍ତ୍ରର ମଧ୍ୟ ଶକ୍ତି ବହିର୍ଭୂତ ।

ପ୍ରକୃତରେ ବିଧି ନିର୍ଦ୍ଦେଶିତ ଦୁଃଖ ଏବଂ ଦୁର୍ଦ୍ଦିନକୁ ଅନୁଭବ ନକଲେ ଜୀବନ ଅସମ୍ପୂର୍ଣ୍ଣ ହୋଇଥାଏ । ତେଣୁ ଦୁଃଖମୟ ଅବସ୍ଥା ଜୀବନକୁ ସୁଖମୟ କରିବା ଏକ ପୂର୍ବାବସ୍ଥା ମାତ୍ର । ତେଣୁ ଜ୍ଞାନୀ ଲୋକେ କହନ୍ତି, ଯେ ବହୁତ ଦୁଃଖ ଅନୁଭବ କରେ, ତାହାହିଁ ସୁଖ ଅନୁଭବ କରିବାକୁ ଏକ ବାଟ ଦେଖାଇଥାଏ ।

ସୂର୍ଯ୍ୟଙ୍କ କିରଣ ପରି, କୌଣସି ଲୋକର ଉତ୍ତମ ଗୁଣାବଳୀ ଅନ୍ୟମାନଙ୍କୁ ମଧ ଆଲୋକିତ କରି ଶେଷରେ ସେ ଅସ୍ତମିତ ହୋଇଥାଏ । ଭାରତବର୍ଷରେ ଜନ୍ମଗ୍ରହଣ କରିଥିବା ସୀତା, ସାବିତ୍ରୀ, ସଂଯୁକ୍ତା ଏବଂ ଅନ୍ୟ ସତୀସାଧ୍ୱୀ ନାରୀମାନଙ୍କ ପକ୍ଷେ, ଏହି ଉକ୍ତି ପ୍ରଯୁଜ୍ୟ । ସେହିପରି ସ୍ୱର୍ଗୀୟା

ମହାରାଣୀଙ୍କ ଅସାଧାରଣ ବ୍ୟକ୍ତିତ୍ୱ ମଧ୍ୟ ତାଙ୍କୁ ଏକ ଶୀର୍ଷ ସ୍ଥାନରେ ଅଧିଷ୍ଠିତ କରିପାରିଥିଲା ।

ସଂଯୁକ୍ତା, ଯାହାଙ୍କର ଅମର ସ୍ମୃତି, ପୁରାଣରେ ବର୍ଣ୍ଣିତ ସାବିତ୍ରୀ ଏବଂ ସୀତାଙ୍କ ଜୀବନ ସହ ତୁଳନୀୟ, ତାହା ସ୍ୱର୍ଗୀୟା ମହାରାଣୀଙ୍କ ପାଇଁ ମଧ୍ୟ ପ୍ରଯୁଜ୍ୟ । ତେଣୁ ପାରଳାର ସ୍ୱର୍ଗୀୟା ରାଣୀ, ଜଣେ ସତୀ ଭାବେ ସେମାନଙ୍କର ଯେ ସମକକ୍ଷ, ଏଥିରେ କୌଣସି ସନ୍ଦେହ ନାହିଁ । ଆର୍ଯ୍ୟାବର୍ତ୍ତର ଶେଷ ସ୍ୱାଧୀନ ରାଜା ପୃଥ୍ୱୀରାଜ୍ ଏବଂ ମହାରାଣୀ ସଂଯୁକ୍ତା, ଯେଉଁ ବୀର-ରକ୍ତବାହୀ ଚୌହାନ୍ ବା ଚନ୍ଦ୍ରବଂଶ ସହ ସମ୍ପୃକ୍ତ ଥିଲେ, ସେହି ଇତିହାସ ପ୍ରସିଦ୍ଧ ବଂଶ ସହ ମହାରାଜା ଏବଂ ସ୍ୱର୍ଗୀୟା ମହାରାଣୀ ମଧ୍ୟ ଅବିଚ୍ଛେଦ୍ୟ ଭାବେ ସଂଶ୍ଳିଷ୍ଟ । ଓଡ଼ିଶାର ଗଜପତି ରାଜା ମୁକୁନ୍ଦ ଦେବ, ସ୍ୱର୍ଗୀୟା ମହାରାଣୀଙ୍କ ମାତାଙ୍କ ଧାଡ଼ିରେ, ତାଙ୍କର ପିତାମହ ଥିବା ଉଲ୍ଲେଖଯୋଗ୍ୟ ।

ତେଣୁ ଉପରୋକ୍ତ ଐତିହାସିକ ତଥ୍ୟକୁ ହୃଦୟଙ୍ଗମ କରି, ପୃଥ୍ୱୀରାଜ ନାଟକ, ଯାହାକି ଶୁଦ୍ଧ ଓଡ଼ିଆ ଭାଷାରେ ପଦ୍ୟଶୈଳୀରେ ରଚିତ ହୋଇ, ଓଡ଼ିଶାର ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ଦ୍ୱାରା ପ୍ରଶଂସିତ, ତାହା ପ୍ରକାଶ କରିବା ନିମନ୍ତେ ଅତି ବିନମ୍ର ଏବଂ ସମ୍ମାନର ସହ, ଆପଣଙ୍କ ନିକଟରେ ଅର୍ପଣ କରୁଛି । କାରଣ, ଏହି ନାଟକରେ ସତୀ ସଂଯୁକ୍ତାଙ୍କ ଚରିତ୍ର ଏପରି ଭାବେ ପ୍ରତିଫଳିତ ହୋଇଛି, ଯାହାକି ସ୍ୱର୍ଗୀୟା ମହାରାଣୀଙ୍କ ବ୍ୟକ୍ତିତ୍ୱ ସହ ସମକକ୍ଷ । ଯଦି ଏହା ସ୍ୱର୍ଗୀୟା ରାଣୀଙ୍କ ଜୀବନ ଏବଂ ଚରିତ୍ରର ସ୍ମୃତି ଉଦ୍ଦେଶ୍ୟରେ ରଚିତ ହୋଇଛି ବୋଲି ମହାରାଜାଙ୍କ ହୃଦ୍‌ବୋଧ ହୁଏ, ତେବେ ମୁଁ ମୋର ଶ୍ରମ ସାର୍ଥକ ମନେ କରିବି ।

ଶ୍ରୀଛାମୁଙ୍କର ବଶମ୍ବଦ,
ସୀମାଦ୍ରି ପଟ୍ଟନାୟକ,
ପାରଳାଖେମୁଣ୍ଡି ।

ଏଠାରେ ଉଲ୍ଲେଖଯୋଗ୍ୟ, ପାରଳା ମହାରାଜାଙ୍କ ଅନୁମତି କ୍ରମେ, ସ୍ୱର୍ଗୀୟା ମହାରାଣୀଙ୍କ ପ୍ରଥମ ଶ୍ରାଦ୍ଧ ଉତ୍ସବ ଉପଲକ୍ଷେ ପୃଥ୍ୱୀରାଜ ନାଟକଟି, ସ୍ଥାନୀୟ ଉଦୀୟମାନ ଉତ୍କଳ ସାହିତ୍ୟ ସଂଘ ପକ୍ଷରୁ ସ୍ଥାନୀୟ ରଙ୍ଗାଳୟରେ ଅଭିନୀତ ହୋଇଥିଲା ।

ସୀମାଦ୍ରି ପଟ୍ଟନାୟକ, ୧୯୩୧ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସ ୨୦ ତାରିଖ ଦିନ, ମହୁରୀ ରାଜାଙ୍କ ନିକଟକୁ ଲେଖିଥିବା ଗୋଟିଏ ପତ୍ର ମଧ୍ୟ ଆମର ହସ୍ତଗତ ହୋଇଛି । ଉତ୍କଳୀୟ ମାନଙ୍କର ନିଜ ସାହିତ୍ୟ ପ୍ରତି ଅବହେଳିତ ଭାବ ରହିଥିବା ପ୍ରକାଶ କରି ଏବଂ ଏହା କୌଣସି ଲେଖକର କର୍ମକ୍ଷେତ୍ରରେ ଶକ୍ତି ଶୈଥିଲ୍ୟ କାରକ ହେବା ହୃଦୟଙ୍ଗମ କରି, ସେ ଏହି ପତ୍ରଟି ଲେଖିଥିଲେ । ଲେଖକଙ୍କର ଜୀବନ ସହ ସଂଶ୍ଳିଷ୍ଟ ଥିବା ଏହି ପତ୍ରର ଉପାଦେୟତାକୁ ଉପଲବ୍ଧି କରି, ନିମ୍ନରେ ସେହି ପତ୍ରର କିଛି ଅଂଶ ଉଲ୍ଲେଖ କରିବା ଯଥାର୍ଥ ମନେ କରୁଛି -

ସ୍ୱଦେଶ ହିତୈଷୀ, ସାହିତ୍ୟ ସଙ୍ଗୀତ ଶିଳ୍ପକଳା ବିଶାରଦ ଶ୍ରୀଶ୍ରୀ ସୁରଙ୍ଗୀଧରାଧୀଶ୍ୱରଙ୍କର ଶ୍ରୀକରକମଳେଷୁ ।

ଶ୍ରୀମାନ୍ ମହାରାଜ୍,

ପ୍ରାୟ ଦଶବର୍ଷରାବଧି ଉତ୍କଳ ସାହିତ୍ୟରେ ହସ୍ତକ୍ଷେପ କରି ନାଟକ, କାବ୍ୟ, ନବନ୍ୟାସ, ଖଣ୍ଡକବିତା, ସଙ୍ଗୀତ, ପ୍ରବନ୍ଧାଦି ଯାହା କିଛି ଲେଖି ଆସୁଅଛି, ଧନାଭାବରୁ ସେ ସମୁଦାୟ ଆଜି ପର୍ଯ୍ୟନ୍ତ ପ୍ରକାଶ ନପାଇ ରହିଅଛି । ତଥାପି, ଯେଉଁ ଦେଶ ସାହିତ୍ୟ ରସିକ ଉତ୍କଳୀୟ ମହାରାଜାମାନଙ୍କର ଉଦାରତା ହେତୁ ଇତିହାସ ପ୍ରସିଦ୍ଧ, ସେହି ଉତ୍କଳରେ କେବଳ ଧନାଭାବ ହେତୁ ମୋର ମୁଷ୍ଟିମେୟ ଗ୍ରନ୍ଥଚୟ ଅବହେଳିତ ହୋଇ କୀଟ କବଳିତ ହେବ, ଏହା ମୋର ଭୟ ନୁହେଁ, ତାହା ବୋଲି ଲିଖିତ ସାହିତ୍ୟ ପ୍ରକାଶ ନପାଇଲେ, ଲେଖକର ଉତ୍ସାହରେ ବ୍ୟାଘାତ ଘଟିବା ଅସମ୍ଭବ ନୁହେଁ ।

ବାସ୍ତବରେ ଉତ୍କଳପରି ଦରିଦ୍ର ଦେଶରେ, ଅଜ୍ଞାନତାର ଭୀଷଣ ଅନ୍ଧକାରରେ ନିଜ ସାହିତ୍ୟ ପ୍ରତି ଉତ୍କଳୀୟଙ୍କର ଯେଉଁ ଉଦାସୀନତା, ମୁଁ ଧୈର୍ଯ୍ୟ ସହକାରେ କହେ, ତାହା ମାରାତ୍ମକ ଅତ୍ୟାଚାର ବିନା ଅନ୍ୟ କିଛି ନୁହେଁ । ଭୋଗ ବିଳାସର କର୍ଦ୍ଦମରେ ଲିପ୍ତ ହୋଇ ଅଭିଶପ୍ତ ଉତ୍କଳୀୟ ଶିକ୍ଷିତ ସମାଜ ନିଜର ବିଚାରାଧ୍ୟ ସାହିତ୍ୟ ପ୍ରତି ଯେଉଁ ଅବହେଳା ପ୍ରକାଶ କରି ଆସୁଅଛନ୍ତି, ପୁଣି ସଙ୍ଗେ ସଙ୍ଗେ ଭବିଷ୍ୟତ ଉତ୍କଳର ଯେଉଁ ଦୁର୍ଦ୍ଦଶା ବରଣ କରିଅଛନ୍ତି, ତାହା ଭାବିଲେ କେଉଁ ମନୁଷ୍ୟର ହୃଦୟ ବିଦୀର୍ଣ୍ଣ ନହେବ ? ସ୍ୱଦେଶର ସର୍ବସ୍ୱ ସାହିତ୍ୟର ପ୍ରତି ଉଦାସୀନତା, ପ୍ରତିଭା ପ୍ରତି ଅବହେଳା ପ୍ରଦର୍ଶନ ଏଥିର ବିଷାକ୍ତ ଫଳ କି ? ମୁଁ ଜାଣେ ଉଚ୍ଛୃଙ୍ଖଳ ଭୋଗ ବିଳାସର ଭୌତିକ ତାଣ୍ଡବ-ବିଶ୍ୱର ଭୀମ ପ୍ରଭଞ୍ଜନ- ଏହି ଭୀମ ଶ୍ମଶାନର ବିକଟ ଶବାର ଶେୟ ବସି, ଶୃଗାଳ ଓ ପେଚକର ଶ୍ରବଣ ବ୍ୟାଧି କୋଳାହଳ ମଧ୍ୟେ ମୁଁ ଚିର ଜ୍ୟୋତ୍ସ୍ନା ବିଧୌତା, ଚିର କିଶଳୟ, ମଳୟମୟୀ ଭାରତୀର ଆରାଧନା କରିଅଛି - ଯୁଗର ଜୀବନ ସଂଗ୍ରାମ - ମହା ଜଳଧି କୂଳରେ, ତରଙ୍ଗର ଗର୍ଜନ ତର୍ଜନ ଓ ପ୍ରଳୟ ମେଘର ରଣବାଦ୍ୟ ବମକ ମଧ୍ୟେ ମୁକ୍ତିର ଶାନ୍ତି ସୁଧାସିକ୍ତ ବୀଣାବାଦନ କରିଛି । ଶ୍ରୋତା କେ ? ତଥାପି କାଳ ଅନନ୍ତ ସମାଜ ସୁଖ ଅସୀମ ଓ ରୁଚି ପରିବର୍ତ୍ତନଶୀଳ । ପ୍ରକୃତିର ରାଗିଣୀରେ ମାଧୁର୍ଯ୍ୟର ଅଭାବ ନାହିଁ - ଶ୍ରୋତା ହୃଦୟରେ ରସିକତାର ଅଭାବ ନାହିଁ - ପୁଣି ନିଜ ହୃଦୟରେ ରସିକତାର ଅଭାବ ନାହିଁ - ପୁଣି ନିଜ ହୃଦୟରେ ସ୍ୱର୍ଗୀୟ ଆନନ୍ଦର ଦୀପ, ଶାନ୍ତିର ଆଲୋକ ପ୍ରତିକୂଳ ପାପବାୟୁ ପ୍ରବାହରେ ନିର୍ବାପିତ ନହେଲେ ଯଥେଷ୍ଟ ।

ମହାରାଜ୍, ତଥାପି ମାନୁଷିକ ଦୌର୍ବଲ୍ୟ ରୂପ ରାକ୍ଷାସର ସନ୍ମୁଖେ ପ୍ରତିଭାର ପରାଜୟ ନହେଲେ ସୁଦ୍ଧା, କର୍ମକ୍ଷେତ୍ରରେ ଶକ୍ତି ଶୈଥିଲ୍ୟ ଏହି ଭୟ ପଦେ ପଦେ ମୋର କର୍ତ୍ତବ୍ୟ ପଥରୁ ମୋତେ ବିବ୍ରତ କରିଦେଉଅଛି । ଏହି ବିପଦ ସମୟେ ପ୍ରତିଭାର ପବିତ୍ର ନାମରେ ମୁଁ ମହାରାଜାଙ୍କର ଉଦାରତା ଓ କୃପାର ଦ୍ୱାରେ ସାହାଯ୍ୟ ଓ ସହାନୁଭୂତି ଭିକ୍ଷା କଲି - ତାହା କେବଳ ସ୍ୱଦେଶ ସାହିତ୍ୟ ସକାଶେ, ଯଦି ସେହି ଗୌରବ ରକ୍ଷା କରିବେ ଦେଶର ମଙ୍ଗଳ ।

ପୁଣି ଘଟଣା କ୍ରମେ ଉତ୍କଳରେ ନିଖିଳ ଭାରତ ଜାତୀୟ ମହାସଭାର ଅନୁଷ୍ଠାନ ସକାଶେ, ସୁବିପୁଳ ଆୟୋଜନ ଲାଗିଛି - ଉତ୍କଳର ଜୀବନ ମରଣ ସମସ୍ୟା -ଦେଶ ମିଶ୍ରଣର ନିଷ୍ପତ୍ତି ଲାଗିଛି । ଏହି ସନ୍ଧି ସମୟରେ ଶ୍ରୀମାନ୍ ମହାରାଜାଙ୍କର ଆନୁକୂଲ୍ୟରୁ ଯଦି ମୋର କେତୋଟି ଓଡ଼ିଆ ଓ ଇଂରାଜୀ ଲେଖା ପ୍ରକାଶ ପାଏ, ଶ୍ରମ ସାର୍ଥକ ହୁଅନ୍ତା

ଶ୍ରୀଛାମୁଙ୍କର ବଶମ୍ବଦ

ସୀମାଦ୍ରି ପଟ୍ଟନାୟକ,

ପାରଳାଖେମୁଣ୍ଡି ।

ସାହିତ୍ୟରଚନା ବ୍ୟତୀତ, ସୀମାଦ୍ରି ପଟ୍ଟନାୟକ ପଦ୍ମନାଭ ରଙ୍ଗାଳୟର ନାଟକ ଅଭିନେତା ଭାବରେ ପ୍ରଶଂସନୀୟ ହୋଇପାରିଥିଲେ । ଏହି ପ୍ରସଙ୍ଗରେ ଅନଙ୍ଗଭୀମଦେବ ନାଟକର ଭୂମିକାରେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ପ୍ରତି ସେ ଯାହା ଲେଖିଥିଲେ, ତାହା ଉଲ୍ଲେଖଯୋଗ୍ୟ ମନେ କରୁଛି । ସେ ଲେଖିଥିଲେ -"ଶ୍ରୀଶ୍ରୀଶ୍ରୀ ପଦ୍ମନାଭ ରଙ୍ଗାଳୟର ସଦସ୍ୟ ରୂପେ ମୋର ଯୁବକ ଜୀବନର ଅନେକ ସମୟରେ ନାଟ୍ୟାଭିନୟ ସାହିତ୍ୟ ରଚନାରେ ଶ୍ରୀଛାମୁ ମତ୍ ପ୍ରତି ଯେଉଁ ଦୂରଦର୍ଶୀ ଉତ୍ସାହ ଓ ଉଦାରତାର ପକ୍ଷ ପ୍ରସାରିତ କରିଅଛନ୍ତି, ତାହା ସେହି ଦିଗରେ ମୋର ଅଶେଷ କଲ୍ୟାଣ ସାଧନ କରିଅଛି ।" ସେ ନିଜେ ମଧ୍ୟ ଜଣେ ଉତ୍ତମ ଗାୟକ ଥିଲେ । ତାଙ୍କ କୋକିଳ କଣ୍ଠରେ କବି ଗୋପାଳକୃଷ୍ଣଙ୍କ ଗୀତାବଳୀ ସର୍ବଦା ଝଙ୍କୃତ ହେଉଥିଲା ।

ଗୋ-ସେବା, ସୀମାଦ୍ରି ପଟ୍ଟନାୟକଙ୍କ ଜୀବନର ଅନ୍ୟ ଏକ ବିଶିଷ୍ଟ ଦିଗ । ସେ କ୍ଷୀର ଦୁହିଁବା ଠାରୁ ଆରମ୍ଭ କରି ଗାଈକୁ ଗାଧେଇ ଦେବା ଏବଂ ତାହାର ଖୁରାରୁ ମଇଳା ସଫା କରିବା ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ସେ ନିଜେ କରୁଥିଲେ । ସେ ତାଙ୍କ ସ୍ୱରଚିତ "Messenger of Spring "ର ମୁଖବନ୍ଧରେ ଲେଖିଛନ୍ତି -"The cow being the symbol of religion it-self". ସେ ମଧ ଲେଖିଛନ୍ତି "The tending of cows is the great prelude to the divine mission." ଏହା ପ୍ରମାଣିତ କରେ, ଭାରତର ହିନ୍ଦୁଧର୍ମ ଏବଂ ସଂସ୍କୃତି,

ଗୋ-ସେବା ପାଇଁ ସୀମାଦ୍ରି ପଟ୍ଟନାୟକଙ୍କୁ କିପରି ଭାବେ ପ୍ରେରଣା ଦେଇଥିଲା ।

ସେ ମଧ୍ୟ ଜଣେ ତ୍ରିକାଳଦର୍ଶୀ ଜ୍ୟୋତିଷ ଥିଲେ । ସେହି କାରଣରୁ ତାଙ୍କ ଗୃହରେ ନିତ୍ୟ ବହୁ ଜନସମାବେଶ ହେଉଥିଲା । ଏପରିକି ସେ ନିଜର ମୃତ୍ୟୁ ଦିବସ ବର୍ଷକ ଆଗରୁ ନିରୂପଣ କରିଥିବା ଶୁଣାଯାଏ ।

ସାହିତ୍ୟସାଧନା ଜନିତ ଅତ୍ୟଧିକ ପରିଶ୍ରମ ହେତୁ ଅଜିର୍ଣ୍ଣ ରୋଗରେ ପୀଡ଼ିତ ହୋଇ, ସେ ନିଜ ସ୍ୱାସ୍ଥ୍ୟର ଉପଯୁକ୍ତ ଚିକିତ୍ସା ନିମନ୍ତେ କୌଣସି ବ୍ୟବସ୍ଥା କରିପାରିନଥିଲେ । ତାଙ୍କର ଦୃଷ୍ଟିଶକ୍ତି ମଧ୍ୟ ହ୍ରାସ ପାଇଥିଲା । କିନ୍ତୁ ଜୀବନ ଓ ମୃତ୍ୟୁର ସେହି ସନ୍ଧିକ୍ଷଣ ମୁହୂର୍ତ୍ତରେ, ସାହିତ୍ୟସାଧନାରୁ ସେ ବିରତ ହୋଇନଥିଲେ । ଯେ ନିଜର ଜୀବନ, ସାହିତ୍ୟର ବିକାଶ ପାଇଁ ଉତ୍ସର୍ଗ କରିଥିଲେ , କୌଣସି ବାଧାବିଘ୍ନ କିପରି ବା ତାଙ୍କର ଗତିରୋଧ କରିପାରନ୍ତା ? ରାତ୍ରର ଗଭୀର ଅନ୍ଧକାର ମଧ୍ୟରେ ଦ୍ୱିତୀୟ କ୍ଷୀଣପ୍ରଭା ସଦୃଶ୍ୟ, ସେହି ଅନ୍ତିମ ସମୟରେ ମଧ୍ୟ ସେ ନିଜ ହୃଦୟର ଭାବପୂର୍ଣ୍ଣ ଭାଷାକୁ ଲେଖନୀ ମାଧ୍ୟମରେ ପ୍ରକାଶ କରିପାରୁଥିଲେ । କିନ୍ତୁ ଆଉ ଅଧିକ କାଳ ତାଙ୍କର ସେହି ଜୀବନ ଦୀପଟି ଜଳି ପାରିନଥିଲା । ୧୯୬୨ ଖ୍ରୀଷ୍ଟାବ୍ଦ ପୌଷ ମାସ ଦ୍ୱାଦଶୀ ତିଥିରେ ମକର ସଂକ୍ରାନ୍ତି ଦିନ ସୀମାଦ୍ରି ପଟ୍ଟନାୟକ ଇହଧାମ ଛାଡ଼ି ଚାଲିଯାଇଥିଲେ ।

ସୀମାଦ୍ରି ପଟ୍ଟନାୟକ,ଜୀବନାବଧି ଶେଷ ମୁହୂର୍ତ୍ତ ଯାଏ, ସାହିତ୍ୟସାଧନାକୁ ଏକ ବ୍ରତ ବୋଲି ଭାବିଥିଲେ । ସେଥିରୁ ଅହରହ ସେ ଯେଉଁ ସ୍ୱର୍ଗୀୟ ଆନନ୍ଦ ଏବଂ ଶାନ୍ତି ଉପଲବ୍ଧି କର ପାରୁଥିଲେ, ତାହା କୌଣସି ଭାଷାରେ ବର୍ଣ୍ଣନା କରାଯାଇନପାରେ। ସେହିପରି ଏକ ବରପୁତ୍ରଙ୍କ ପ୍ରଣିତ ପ୍ରାୟ ସମସ୍ତ କାବ୍ୟକବିତା ଏବଂ ନାଟକ ଆଜି ସୁଦ୍ଧା ପ୍ରକାଶ ପାଇନାହିଁ । ଯେଉଁ ଦୁଇ-ତିନୋଟି ମାତ୍ର କୃତି ପ୍ରକାଶ ପାଇଛି, ତାହା ସାହିତ୍ୟିକଙ୍କ ଜୀବନାବସ୍ଥାରେ, ପାରଳା ମହାରାଜା, ବଡ଼ଖେମୁଣ୍ଡି ମହାରାଜା ଏବଂ ଅନ୍ୟ କେତେକଙ୍କ ପୃଷ୍ଠପୋଷକତା ଯୋଗୁଁହିଁ ସମ୍ଭବ ହୋଇପାରିଥିଲା । ସାହିତ୍ୟିକଙ୍କ ଆର୍ଥିକ ଅସ୍ୱଚ୍ଛଳତା ଯୋଗୁଁ ସେ ନିଜେ ମଧ୍ୟ କୌଣସି କୃତି ପ୍ରକାଶ କରିପାରିନଥିଲେ । ଆଜି ତାହାଙ୍କ ପ୍ରଣୀତ କାବ୍ୟ, କବିତା, ନାଟକ ଓ ପ୍ରବନ୍ଧାଦି ମଧ୍ୟରୁ କେତେକ କାଳଗର୍ଭରେ ଲୁକ୍କାୟିତ ହୋଇଗଲାଣି । ଆଉ କିଛି କାଳ ବିଳମ୍ବ ହେଲେ, ଅବଶିଷ୍ଟାଂଶ ମଧ୍ୟ କୀଟ କବଳିତ ହୋଇପାରେ । ଏହିପରି ସମୟରେ ଉତ୍କଳର ଶିକ୍ଷିତ ସମାଜ ସମୟୋପଯୋଗୀ ପଦକ୍ଷେପ ଗ୍ରହଣ କରିବା ଉଚିତ । ଉତ୍କଳର ଶିକ୍ଷିତ ସମାଜ, ନିଜର ସାହିତ୍ୟିକ ଏବଂ ନିଜ ସାହିତ୍ୟ ପ୍ରତି ଯଦି ଅବହେଳା ଏବଂ ଉଦାସୀନତା ପ୍ରଦର୍ଶନ କରେ, ସେମାନେ ପୂଜ୍ୟପୂଜାର ଆଦର୍ଶକୁ ହେୟ ଜ୍ଞାନ କରୁଛନ୍ତି ବୋଲି ଦୃଢ଼ ଭାବେ କୁହାଯାଇପାରେ । ଯିଏ, ସାହିତ୍ୟର ବିକାଶ ନିମନ୍ତେ ନିଜର ଜୀବନ ଉତ୍ସର୍ଗ କରିଛନ୍ତି, ତାଙ୍କର ସ୍ମୃତି ରକ୍ଷା ନିମନ୍ତେ ଆମର କଣ କର୍ତ୍ତବ୍ୟ ନାହିଁ ? ତାଙ୍କର ପ୍ରଣୀତ

ଗ୍ରନ୍ଥ ପ୍ରକାଶ ପାଇଲେ ଏହା କଣ ଆମ ଜାତିର ଏବଂ ଆମ ସାହିତ୍ୟର ଗୌରବ ନୁହେଁ ? ନିଶ୍ଚୟ , ସେ ଯଥାର୍ଥରେ, ଆମ ଜାତି, ଆମ ସାହିତ୍ୟ ଏବଂ ଆମ ଦେଶର ଗୌରବ । ସେ ଇହଧାମ ଛାଡ଼ି ଚାଲି ଯାଇଛନ୍ତି ସତ, ତଥାପି ଯଶୋଦେହେ ସେ ଅମର ହୋଇ ରହିଛନ୍ତି । ଇଂରେଜ୍ କବି James Shirleyଙ୍କ ଭାଷାରେ - "Only the actions of the just

Smell sweet, and blossom in their dust."

ଅର୍ଥାତ୍ କୌଣସି ବ୍ୟକ୍ତିର ଉତ୍ତମ କର୍ମ ରୂପକ ପୁଷ୍ପହିଁ ମୃତ୍ୟୁ ପରେ ମଧ୍ୟ ବିକଶିତ ହୋଇ, ଚତୁର୍ଦିଗକୁ ସୁବାସିତ କରିଥାଏ । ସାହିତ୍ୟିକ ସୀମାଦ୍ରୀ ପଟ୍ଟନାୟକ, ସେହିପରି ଗୋଟିଏ ପୁଷ୍ପ ଥିଲେ, ଯାହାଙ୍କ କବିତାର କଳ୍ପନା ବିଳାସ ଏବଂ ନାଟକର ଭାବ ଗାମ୍ଭିର୍ଯ୍ୟ ସ୍ୱର, ବର୍ତ୍ତମାନ ସୁଦ୍ଧା ପାଠକ ହୃଦୟକୁ ଅସୀମ ଆନନ୍ଦ, ଶାନ୍ତି ଏବଂ ପ୍ରେରଣା ଯୋଗାଇଥାଏ ।

## ସ୍ୱର୍ଗତ ସୀମାଦ୍ରି ପଟ୍ଟନାୟକଙ୍କ ପ୍ରକାଶିତ ଏବଂ ଅପ୍ରକାଶିତ ପ୍ରସିଦ୍ଧ ଓଡ଼ିଆ ଓ ଇଂରାଜୀ ଗ୍ରନ୍ଥାବଳୀ

ନାଟକ - (ପ୍ରକାଶିତ)- ପୃଥ୍ୱୀରାଜ, ବୀରଶ୍ରୀ ଅନଙ୍ଗଭୀମଦେବ ।

(ଅପ୍ରକାଶିତ)- ବୀରଶ୍ରୀ ବୁଢ଼ଙ୍ଗଦେବ, ବୀରଶ୍ରୀ କପିଳେନ୍ଦ୍ରଦେବ, ଶ୍ରୀ ପ୍ରତାପରୁଦ୍ର ସଂସ୍ଥାତା,ଖାରବେଳ ବୀର, ଯଯାତି କେଶରୀ, ନାରାୟଣ ଦେବ, ଉତ୍କଳ ଚନ୍ଦ୍ରୋଦୟ, ମୁକ୍ତି ପଥେ, ଅଟବୀ, ସ୍ୱାବ୍ଲସିଂ, ଚୋର ଚୂଡ଼ାମଣି ।

କାବ୍ୟ - (ପ୍ରକାଶିତ)- ବାଳ ବୁଦ୍ଧାମୃତ

(ଅପ୍ରକାଶିତ)- ଭାରତ ବୋଇଲି, ସରଦରାସ ବା ସାତପୋଇ, ସୀତା ବିରହିଣୀ, ସଙ୍ଗୀତାରଣ, କବିତାକଦମ୍ବ, ପାରଳା ପ୍ରକାଶ, ରାସକ୍ରୀଡ଼ା

ସଙ୍ଗୀତ-(ଅପ୍ରକାଶିତ)- ଶ୍ରୀରାଧାନନ୍ଦମାଳା, ସଙ୍ଗୀତରୋଷ, ଶ୍ରୀଲକ୍ଷ୍ମୀନୃସିଂହ କୃପାମୃତ ଲହରୀ ୨୦୦୦ ସଙ୍ଗୀତ ଖଣ୍ଡ, ବିଜୟବାଣୀ, ବିଜୟମାଲ୍ୟ, ସରଳ ଲୀଳା ଲହରୀ, କ୍ରୀଡ଼ା କୌମୁଦୀ

ଇଂରାଜୀ-(ଅପ୍ରକାଶିତ)- The Rosery of Joy, The Laurels of Peace, The Garland of Love, The Songs of Bliss & The Messenger of Spring (Translated from Gopalkrushna), The Holy Land, The Holy Lake, Trophies of Youth, The Divine Dream, The

Divine Dance, My Motherland, The Brief Lotus, the Call of India, The Wreath of Eyre, The Wreath of Joy, Immortal India, Arothi, The Wrath of Fire, the Historicity of Jayadev, Marriage & Maidenhood.



## ସହାୟକ ଗ୍ରନ୍ଥ


| | | |
|---|---|---|
| ୧. | ଗୋପାଳକୃଷ୍ଣ ପଦ୍ୟାବଳୀ | |
| ୨. | ହରିବନ୍ଧୁ ପଦ୍ୟାବଳୀ | |
| ୩. | ଶୁଶ୍ରୁତ ସଂହିତା | |
| ୪. | ଗୌରହରି ଗ୍ରନ୍ଥାବଳୀ | |
| ୫. | ସୃଷ୍ଟି ଓ ସମୀକ୍ଷା | ଡକ୍ଟର୍ କାହ୍ନୁଚରଣ ମିଶ୍ର |
| ୬. | ଆଲୋଚନାମାଳା | ଡକ୍ଟର୍ କାହ୍ନୁଚରଣ ମିଶ୍ର |
| ୭. | କବି ଜୀବନୀ | ଅପନ୍ନା ପଣ୍ଡା |
| ୮. | କବିତାକଳିକା | ଅପନ୍ନା ପଣ୍ଡା |
| ୯. | ଶ୍ରୀପଦ୍ମନାଭ ଗଡ଼ପତିଙ୍କ ଜୀବନୀ | ଅପନ୍ନା ପଣ୍ଡା |
| ୧୦. | ଭୃଗମାଳିକା ତତ୍ତ୍ୱବୋଧିନୀ | ଅପନ୍ନା ପଣ୍ଡା |
| ୧୧. | କଳାବତୀ ନାଟକ | ଅପନ୍ନା ପଣ୍ଡା |
| ୧୨. | ଛାନ୍ଦ ଚନ୍ଦ୍ରିକା | ଅପନ୍ନା ପଣ୍ଡା |
| ୧୩. | ଗୌରହରି ପ୍ରତିଭା | ପ୍ରତାପଚନ୍ଦ୍ର ପରିଛା |
| ୧୪. | ଗୋପୀନାଥବଲ୍ଲଭ ନାଟକ | ରଘୁନାଥ ପରିଛା |
| ୧୫. | ରାଧାମାଧବ ବିଳାସ | ରଘୁନାଥ ପରିଛା |
| ୧୬. | ଲକ୍ଷଣ ଚନ୍ଦ୍ରୋଦୟ ନାଟକ | ରଘୁନାଥ ପରିଛା |
| ୧୭. | ମୁକ୍ତାନାଟିକା (ଅପ୍ରକାଶିତ ପାଣ୍ଡୁଲିପି) - | ରଘୁନାଥ ପରିଛା |
| ୧୮. | ପୃଥ୍ୱୀରାଜ | ସୀମାଦ୍ରି ପଟ୍ଟନାୟକ |
| ୧୯. | ବୀରଶ୍ରୀ ଅନଙ୍ଗଭୀମଦେବ | ସୀମାଦ୍ରି ପଟ୍ଟନାୟକ |
| ୨୦. | ପାରଳା ପ୍ରଳାପ (ଅପ୍ରକାଶିତ ପାଣ୍ଡୁଲିପି) - | ସୀମାଦ୍ରି ପଟ୍ଟନାୟକ |
| ୨୧. | ପାରଳା ପ୍ରତିଭା | ବିଷ୍ଣୁଚରଣ ମହାନ୍ତି |
| ୨୨. | ପ୍ରବନ୍ଧାବଳୀ | ଶ୍ୟାମସୁନ୍ଦର ରାଜଗୁରୁ |
| ୨୩. | ଜାନକୀ ପରିଣୟ ନାଟକ | ପଣ୍ଡିତ ଗୋପୀନାଥ ନନ୍ଦ |
| ୨୪. | ଓଡ଼ିଆ ଭାଷାତତ୍ତ୍ୱ | ପଣ୍ଡିତ ଗୋପୀନାଥ ନନ୍ଦ |
| ୨୫. | ଓଡ଼ିଆ ଶବ୍ଦତତ୍ତ୍ୱବୋଧ ଅଭିଧାନ | ପଣ୍ଡିତ ଗୋପୀନାଥ ନନ୍ଦ |
| ୨୬. | ଭାରତ ଦର୍ପଣ | ପଣ୍ଡିତ ଗୋପୀନାଥ ନନ୍ଦ |

| | | |
|---|---|---|
| ୨୭. | ବିଦଗ୍ଧକୁମାର | ମହଁଶ୍ରୀ ସତ୍ୟନାରାୟଣ ପଣ୍ଡା |
| ୨୮. | ମେଘଦୂତ | ମହଁଶ୍ରୀ ସତ୍ୟନାରାୟଣ ପଣ୍ଡା |
| ୨୯. | ଓଡ଼ିଆ ସାହିତ୍ୟର ଇତିହାସ | ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ |
| ୩୦. | ଓଡ଼ିଆ ଲିପିର କ୍ରମବିକାଶ | ଡକ୍ଟର୍ ସତ୍ୟନାରାୟଣ ରାଜଗୁରୁ |
| ୩୧. | କଳିଙ୍ଗର ଆତ୍ମକଥା | ଡକ୍ଟର୍ ସତ୍ୟନାରାୟଣ ରାଜଗୁରୁ |
| ୩୨. | ମୋ ଜୀବନ ସଂଗ୍ରାମ | ଡକ୍ଟର୍ ସତ୍ୟନାରାୟଣ ରାଜଗୁରୁ |
| ୩୩. | ସୀତାଠାବ | ବିନୋଦିନୀ ଦେବୀ |
| ୩୪. | ଉତ୍କଳ ଭ୍ରମଣ | ବ୍ୟାସକବି ଫକିରମୋହନ ସେନାପତି |
| ୩୫. | ରାମଚରିତ (ପାଣ୍ଡୁଲିପି) | ମାଣିକ ଶବରୁଣୀ |
| ୩୬. | History of the Gangas - | Dr. S.N. Rajaguru |
| ୩୭. | Messenger of Spring & The Songs of Bliss (Unpublished) | Simhadri Patnaik |

(ଆହୁରି ଅନେକ ପୁସ୍ତକ ,ଅପ୍ରକାଶିତ ପାଣ୍ଡୁଲିପି, ପେପର୍ କ୍ଲିପ୍ସ୍ ଏବଂ ପାରଳାର ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସହ ବ୍ୟକ୍ତିଗତ ସମ୍ପର୍କରୁ ବହୁ ତଥ୍ୟ ସଂଗ୍ରହ କରାଯାଇଛି ।)

